






# ସରଳ
# ସାମାଜିକ ଜୀବନ

ଦ୍ୱିତୀୟ ଭାଗ





Approved as a Text Book by the Board of Secondary Education, Orissa.

# ସରଳ
# ସାମାଜିକ ଜୀବନ

## ଦ୍ୱିତୀୟ ଭାଗ

( ଦଶମ ଶ୍ରେଣୀ ନିମନ୍ତେ )

For H. S. C. Examination—1969

&

H. S. S. C. Examination—1970


ଲେଖକଗଣ

**ଶ୍ରୀ ଲଳିତ ମୋହନ ଘୋଷ, ବି. ଏସ୍‌ସି., ଡି. ଇଡି.**

ଅବସରପ୍ରାପ୍ତ ହେଡ଼ମାଷ୍ଟର, ରେଭେନ୍‌ସା କଲିଜିଏଟ୍ ସ୍କୁଲ, କଟକ

**ଶ୍ରୀ ଉପେନ୍ଦ୍ର ପ୍ରସାଦ ମହାନ୍ତି, ବି. ଏ., ଡି. ଇଡି.**

ହେଡ଼ମାଷ୍ଟର, ଭଦ୍ରଖ ହାଇସ୍କୁଲ, ଭଦ୍ରଖ

**ଶ୍ରୀ ଭାସ୍କର ଶତପଥୀ,** ସହକାରୀ ଶିକ୍ଷକ

ରେଭେନ୍‌ସା କଲିଜିଏଟ୍ ସ୍କୁଲ, କଟକ



**କଟକ ପବ୍ଲିସିଂ ହାଉସ୍**

**କଟକ**

# ସୂଚୀପତ୍ର

# ସରଳ
# ସାମାଜିକ ଜୀବନ

## ଦ୍ୱିତୀୟ ଭାଗ



## ପ୍ରଥମ ପରିଚ୍ଛେଦ

### ପ୍ରାଚୀନ ମାନବ ସମାଜ
### ( Ancient Communities )

**ଆଦିମ ଯୁଗର ମାନବ ନିବାସ**—(Early human settlement):—ପ୍ରଥମେ ମନୁଷ୍ୟ ଅର୍ଦ୍ଧମାନବ ଓ ଅର୍ଦ୍ଧବାନର ଅବସ୍ଥାରେ ଥିଲା । ସେତେବେଳେ ସେ ପଶୁ ପରି ଜୀବନଯାପନ କରୁଥିଲା । ପଶୁ ଜୀବନ ଓ ମନୁଷ୍ୟ ଜୀବନ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ନ ଥିଲା । ପଶୁପରି ଅରଣ୍ୟରେ ବିଚରଣ କରି ସେ ଖାଦ୍ୟ ଅନ୍ୱେଷଣ କରୁଥିଲା । ଶିକାର ଥିଲା ତାର ଜୀବନର ପ୍ରଧାନ ଅବଲମ୍ବନ । ଶିକାର ଦ୍ୱାରା ପଶୁପକ୍ଷୀ ବଧ କରି ସେହି ପଶୁପକ୍ଷୀଙ୍କ ମାଂସରେ ସେ ଉଦର ପୂରଣ କରୁଥିଲା । ସେତେବେଳେ ମନୁଷ୍ୟ ଥିଲା ଏକ ମାଂସାଶୀ ଜୀବ । ମାଂସହିଁ ଥିଲା ତାର ପ୍ରଧାନ ଖାଦ୍ୟ । ସେହି ଖାଦ୍ୟ ସେ ପ୍ରଥମେ ରନ୍ଧନ କରି ଖାଇବାକୁ ଶିଖି ନ ଥିଲା । ଅଗ୍ନିର ବ୍ୟବହାର ତାକୁ ପ୍ରଥମେ ଜଣା ନ ଥିଲା । ପଶୁପକ୍ଷୀ ଶିକାର

କରି ସେମାନଙ୍କର ମାଂସ ଅନ୍ୟାନ୍ୟ ହିଂସ୍ର ପଶୁଙ୍କପରି କଞ୍ଚା ଖାଇ ସେ ବଞ୍ଚୁଥିଲା । ଗୁହା ଥିଲା ତାର ଆଶ୍ରୟସ୍ଥଳ । ସେ ଯୁଗରେ ବିରାଟ-



ଅଗ୍ନି ବ୍ୟବହାର

କାୟ ପଶୁମାନେ ପୃଥିବୀ ପୃଷ୍ଠରେ ବାସ କରୁଥିଲେ । ସେମାନଙ୍କୁ ଭୟ କରି ଆଦିମାନବକୁ ଦିନାତିପାତ କରିବାକୁ ହେଉଥିଲା । ଦିନବେଳେ ଶିକାର କରି ରାତି ସମୟରେ ସେ ଗୁହାରେ ଯାଇ ଆଶ୍ରୟ ନେଉଥିଲା । କାଳକ୍ରମେ ବିଶାଳ ପ୍ରସ୍ତର ଖଣ୍ଡଦ୍ୱାରା ଗୁହାମୁଖ ଆଚ୍ଛାଦିତ କରି ସେ ନିଜକୁ ଅଧିକ ନିରାପଦ କଲା । ସେହି ସୁଦୂର ଅତୀତରେ ଗୁହା ହିଁ ଥିଲା ଅରଣ୍ୟଗୃହୀ ମାନବର ଆଦିନିବାସ ।

ଏହି ଗୁହାବାସୀ ମନୁଷ୍ୟମାନଙ୍କ ମଧ୍ୟରେ ନିଏଣ୍ଡାର୍ଥାଲ ଜାତୀୟ ମାନବର କଥା ଅନେକ ପରିମାଣରେ ଜଣାଶୁଣା । ନିଏଣ୍ଡାର୍ଥାଲ ଜର୍ମାନୀ ଅନ୍ତର୍ଗତ ଡୁସେଲଡୋର୍ଫ ସହରର ନିକଟବର୍ତ୍ତୀ । ସେଠାରୁ ଏକ ପ୍ରକାର ମାନବର କଙ୍କାଳ ଆବିଷ୍କୃତ ହୋଇଅଛି । ତେଣୁ ଏହି ଜାତୀୟ ମାନବକୁ ନିଏଣ୍ଡାର୍ଥାଲ ମାନବ କୁହାଯାଏ । ନିଏଣ୍ଡାର୍ଥାଲ ମାନବ ଆଜକୁ ପ୍ରାୟ ପଚାଶ ହଜାର ବର୍ଷ ପୂର୍ବେ ବାସ କରୁଥିଲା । ସିଧା ସଳଖ ଭାବରେ ଦଣ୍ଡାୟମାନ ହେବା ତାର ଶକ୍ତିର ବହିର୍ଭୂତ ଥିଲା । ତାର ବାକ୍‌ଶକ୍ତି ମଧ୍ୟ ବିକାଶ ଲାଭ କରି ନ ଥିଲା । କିନ୍ତୁ ଗୁହା ମଧ୍ୟରେ ସେ ବେଶ ଆରାମରେ ବାସ କରୁଥିଲା । ଏହି ନିଏଣ୍ଡାର୍ଥାଲ ମାନବର ଅଗ୍ନି ସହିତ ପରିଚୟ ଥିଲା ଏବଂ ସେ ଅଗ୍ନି ପ୍ରସ୍ତୁତ କରି ପାରୁଥିଲା ବୋଲି ବିଶ୍ୱାସ କରାଯାଏ ।

ଶିକାର ଓ ଆତ୍ମରକ୍ଷା ପାଇଁ ମନୁଷ୍ୟକୁ ଅସ୍ତ୍ର ନିର୍ମାଣ କରିବାକୁ ପଡ଼ିଥିଲା । ତାର ପ୍ରଥମ ଅସ୍ତ୍ର ଥିଲା ପଥରରେ ତିଆରି । ପଥରକୁ ଘଷି ଧାରୁଆ ବା ମୁନିଆ କରି ସେ ଅସ୍ତ୍ର ନିର୍ମାଣ କରିବାକୁ ଆରମ୍ଭ କଲା । କାଳକ୍ରମେ ପଥରର କୁରାଢ଼ୀ, ଟାଙ୍ଗିଆ, ବର୍ଚ୍ଛା, ତୀର ପ୍ରଭୃତି ଅସ୍ତ୍ରଶସ୍ତ୍ର ନିର୍ମିତ ହେଲା । ତାହା ବ୍ୟବହାର କରି ମନୁଷ୍ୟ ପୂର୍ବାପେକ୍ଷା ଅଧିକ ଶକ୍ତିଶାଳୀ ହେବାକୁ ସମର୍ଥ ହେଲା । ସେ ଯୁଗରେ ମନୁଷ୍ୟର ସମସ୍ତ ବ୍ୟବହାର୍ଯ୍ୟ ଅସ୍ତ୍ର ପ୍ରସ୍ତର ନିର୍ମିତ ଥିବାରୁ, ତାହା ଇତିହାସରେ 'ପ୍ରସ୍ତରଯୁଗ' ନାମରେ ଅଭିହିତ । ଏହି ଯୁଗକୁ ଦୁଇ ଭାଗରେ ବିଭକ୍ତ କରାଯାଏ, ଯଥା:—ପୁରାତନ ପ୍ରସ୍ତରଯୁଗ ଓ ନୂତନ ପ୍ରସ୍ତରଯୁଗ ।

**ପୁରାତନ ପ୍ରସ୍ତର ଯୁଗର ହାତହତିଆର:**—ପୁରାତନ ପ୍ରସ୍ତର ଯୁଗରେ ଲୋକେ ଯେଉଁ ପଥରର ଅସ୍ତ୍ରମାନ ବ୍ୟବହାର କରୁଥିଲେ, ତାହା ନିତାନ୍ତ ଅନୁନ୍ନତ ଧରଣର ଥିଲା । ପଥରକୁ ଖଣ୍ଡ

ଖଣ୍ଡ କରି ନାନାବିଧ ଆକୃତିର ହତିଆର ସେମାନେ ତିଆରି କରୁଥିଲେ । ତାହା ଦେଖିବାକୁ କର୍କଶ ଓ ଅସୁନ୍ଦର ଥିଲା । ତାହାକୁ ଚିକ୍କଣ ବା ପାଲିସ କରିବାକୁ ସେମାନେ ଚେଷ୍ଟା କରୁ ନ ଥିଲେ । ପ୍ରଥମେ ସେଗୁଡ଼ିକର ବେଣ୍ଟ ନ ଥିଲା । ପରେ କେତେକ ଅସ୍ତ୍ର ଦେହରେ କାଠ ବେଣ୍ଟ ଯୋଡ଼ି ଲୋକେ ତାହା ବ୍ୟବହାର କଲେ । କାଠ ପରିବର୍ତ୍ତରେ ପଶୁର ହାଡ଼ ମଧ୍ୟ ବେଣ୍ଟ ସ୍ୱରୂପ ବ୍ୟବହାର କରା-ହେଉଥିଲା । ଉକ୍ତ ଅସ୍ତ୍ରମାନଙ୍କ ମଧ୍ୟରୁ କେତେକ ହାଣିବା ଓ କାଟିବା ଉଦ୍ଦେଶ୍ୟରେ, କେତେକ ଖୋଳିବା ଉଦ୍ଦେଶ୍ୟରେ, କେତେକ ମୁଦ୍‌ଗର ଭଳି ପିଟିବା ଉଦ୍ଦେଶ୍ୟରେ ଓ ଅନ୍ୟ କେତେକ ଛିଦ୍ର କରିବା ଉଦ୍ଦେଶ୍ୟରେ ବ୍ୟବହୃତ ହେଉଥିଲା । ସାଧାରଣତଃ ଉକ୍ତ ଅସ୍ତ୍ରଶସ୍ତ୍ର କଠିନ ଶିଳାରେ ନିର୍ମିତ ଥିଲା । ପୃଥିବୀର ନାନା ଅଞ୍ଚଳରୁ ସେହି ପ୍ରାଗୈତିହାସିକ ଯୁଗର ଅସ୍ତ୍ରଶସ୍ତ୍ର ଆବିଷ୍କୃତ ହୋଇଅଛି । ଆମ ଭାରତବର୍ଷର ମାନ୍ଦ୍ରାଜ ଅନ୍ତର୍ଗତ ଚିଙ୍ଗଲପଟ ଜିଲ୍ଲା, ଆଗ୍ରା ଅନ୍ତର୍ଗତ ବାନ୍ଦା ଜିଲ୍ଲା ଓ ଅନ୍ୟାନ୍ୟ ସ୍ଥାନରୁ ପୁରାତନ ପ୍ରସ୍ତର ଯୁଗର ହାତ-ହତିଆର ମିଳିଅଛି । ଇଉରୋପର କେନେଷ୍ଟ ଓ ସାଉଥ କେନସିଂଟନରେ ଥିବା ଯାଦୁଘରମାନଙ୍କରେ ପ୍ରାଗୈତିହାସିକ ଯୁଗର ଅନେକ ପ୍ରକାର ଅସ୍ତ୍ରଶସ୍ତ୍ର ରକ୍ଷିତ ଥିବାର ଦେଖାଯାଏ । ନିଏଣ୍ଡାର୍ଥାଲ ଜାତୀୟ ମାନବ ଇଉରୋପରେ ପ୍ରାୟ ପଚିଶ ହଜାର ବର୍ଷ ପର୍ଯ୍ୟନ୍ତ ଚଳପ୍ରଚଳ ହେଉଥିଲା । ସେମାନଙ୍କ ପରେ ଏକ ନୂତନ ପ୍ରକାରର ମନୁଷ୍ୟ ଇଉରୋପରେ ଆବିର୍ଭୂତ ହେଲା । ସେମାନେ ପ୍ରଥମେ ଉତ୍ତର ଆଫ୍ରିକା, ଦକ୍ଷିଣ-ଏସିଆ ଓ ଅନ୍ୟ କେତେକ ସ୍ଥାନରେ ଦେଖା ଦେଇଥିଲେ । ଇଉରୋପର କ୍ରୋମେଗ୍‌ନନ୍ ଓ ଗ୍ରିମାଲଡ଼ି ନାମକ ଦୁଇଟି ସ୍ଥାନରୁ ସେମାନଙ୍କର କଙ୍କାଳ ଆବିଷ୍କୃତ ହୋଇଥିବାରୁ ସେମାନଙ୍କୁ କ୍ରୋମେଗ୍‌ନନ୍ ଜାତୀୟ (Cro-Magnon Type) ଓ

ଗ୍ରିମାଲ୍‌ଡ଼ି ଜାତୀୟ (Grimaldi Type) ମାନବବୋଲି କୁହାଯାଏ । ନିଏଣ୍ଡ୍ରାର୍ଥାଲ ଜାତୀୟ ମାନବର ମସ୍ତିଷ୍କ ଅପେକ୍ଷା ସେମାନଙ୍କର ମସ୍ତିଷ୍କ ଅଧିକ ଉନ୍ନତ ଧରଣର । ସେମାନେ ସିଧା ହୋଇ ଚାଲି ପାରୁଥିଲେ । କିନ୍ତୁ ସେମାନଙ୍କର ମୁଖର ଆକୃତି ବାନର ମୁଖାକୃତି ଥିଲା । ଏହି ଜାତୀୟ ମାନବ ମଧ୍ୟ ପୁରାତନ ପ୍ରସ୍ତର ଯୁଗର ଅଧିବାସୀ । ପଥରର ଅସ୍ତ୍ରଦ୍ୱାରା ସେମାନେ ପ୍ରକାଣ୍ଡକାୟ ଜୀବଙ୍କୁ ବଧ କରି ପାରୁଥିଲେ । ଘୋଟକ ମାଂସ ଥିଲା ସେମାନଙ୍କର ପ୍ରଧାନ ଖାଦ୍ୟ । ସେମାନେ ଗୁମ୍ଫା ଗାତ୍ରରେ ଯେଉଁ ଚିତ୍ରମାନ ଅଙ୍କନ କରିଯାଇ ଅଛନ୍ତି ତାହା ଉତ୍ତରସ୍ପେନ୍ ପ୍ରଭୃତି କେତେକ ଅଞ୍ଚଳରୁ ଆବିଷ୍କୃତ ହୋଇଅଛି । ସେମାନେ ସମସ୍ତେ ନିଏଣ୍ଡ୍ରାର୍ଥାଲ ମାନବଙ୍କ ପରି ଗୁମ୍ଫାବାସୀ ଥିଲେ । ଗୃହ ନିର୍ମାଣ ଓ ଭୂମି କର୍ଷଣ ସେମାନଙ୍କୁ ଅଜଣା ଥିଲା ।

**ବୃତ୍ତିହୀନତା:**—ପୁରାତନ ପ୍ରସ୍ତର ଯୁଗର ଲୋକେ ଅସଭ୍ୟ ଅବସ୍ଥାରେ ଦିନାତିପାତ କରୁଥିଲେ । ସେତେବେଳେ ମନୁଷ୍ୟ ବୃତ୍ତି ଅବଲମ୍ବନ କରି ଶିଖି ନ ଥିଲା । ବିଭିନ୍ନ ଧାତୁ ସମ୍ବନ୍ଧରେ ମଧ୍ୟ ସେମାନଙ୍କର ଧାରଣା ନ ଥିଲା । ସେମାନେ କୃଷି ବା ପଶୁପାଳନ ଜାଣି ନ ଥିଲେ, ମୃତ୍‌ପାତ୍ର ବା ଅନ୍ୟ କୌଣସି ପ୍ରକାର ପାତ୍ର ନିର୍ମାଣ କରିବାକୁ ଶିଖି ନ ଥିଲେ । ରନ୍ଧନକ୍ରିୟା ସେ ସମୟରେ ପ୍ରଚଳିତ ନ ଥିଲା । ଲୋକେ ଅରଣ୍ୟରେ ବୁଲି ବୁଲି ଶିକାର କରୁଥିଲେ ଓ ଫଳମୂଳ ଆହରଣ କରୁଥିଲେ । ଶିକାରଲବ୍ଧ ପଶୁର ମାଂସ ଓ ଫଳମୂଳ ଖାଇ ସେ ଯୁଗର ଲୋକେ ଜୀବନଧାରଣ କରୁଥିଲେ । ଏହିପରି ଭାବରେ ବହୁକାଳ ଅତୀତ ହେଲା ପରେ ଅବସ୍ଥାର ପରିବର୍ତ୍ତନ ଘଟିଲା । ମନୁଷ୍ୟ କ୍ରମେ ବୃତ୍ତି ଅବଲମ୍ବନ କରି ଜୀବନଯାତ୍ରା ନିର୍ବାହ କରିବାକୁ ଶିଖିଲା ।

## ନୂତନ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ର ଓ ମନୁଷ୍ୟର ବୃତ୍ତି

**ଅବଲମ୍ବନ:**—ମନୁଷ୍ୟ ସ୍ୱଭାବତଃ ଉନ୍ନତିକାମୀ ଜୀବ । ତେଣୁ ପ୍ରସ୍ତର ଯୁଗର ଲୋକେ କ୍ରମଶଃ ଉନ୍ନତି କରିବାକୁ ଲାଗିଲେ । ପୂର୍ବପର ପ୍ରସ୍ତର ନିର୍ମିତ ଅସ୍ତ୍ରଶସ୍ତ୍ର ବ୍ୟବହୃତ ହେଉଥିଲା ସତ, କିନ୍ତୁ ସେଗୁଡ଼ିକ ପୂର୍ବାପେକ୍ଷା ଅନେକାଂଶରେ ଉନ୍ନତତର ଥିଲା । ମନୁଷ୍ୟ ସେଗୁଡ଼ିକୁ ଚିକ୍‌କଣ ବା ପାଲିସ କରି ଗଢ଼ିଶିଖିଲା । ତେଣୁ ତାହା



ପ୍ରସ୍ତର ଯୁଗର କେତେକ ଅସ୍ତ୍ରଶସ୍ତ୍ର

ଅନେକ ପରିମାଣରେ ସୁନ୍ଦର ଦେଖାଗଲା । ଏହି ଯୁଗକୁ ପ୍ରସ୍ତର ଯୁଗର ଦ୍ୱିତୀୟ ଭାଗ ବା ନୂତନ ପ୍ରସ୍ତରଯୁଗ (Neolithic Age) ବୋଲି କୁହାଯାଏ । ଐତିହାସିକମାନଙ୍କ ମତରେ ଏହି ଯୁଗ ଆଜକୁ ପ୍ରାୟ ଦଶ ହଜାର ବର୍ଷ ପୂର୍ବେ ଇଉରୋପ ଅଞ୍ଚଳରେ ଏବଂ ତାର କିଛିଦିନ ଆଗରୁ ଏସିଆ ଓ ଆଫ୍ରିକାରେ ଆରମ୍ଭ ହୋଇଥିଲା । ଆମ ଭାରତରେ ଏହି ନୂତନ ପ୍ରସ୍ତର ଯୁଗର ଏକ ଅସ୍ତ୍ର ନିର୍ମାଣସ୍ଥଳୀ ମାନ୍ଦ୍ରାଜ ଅନ୍ତର୍ଗତ ବେଲ୍ଲାରି ଜିଲ୍ଲାରେ ଆବିଷ୍କୃତ ହୋଇଅଛି ।

ନୂତନ ପ୍ରସ୍ତର ଯୁଗର ଲୋକେ କେବଳ ଯେ ଅପେକ୍ଷାକୃତ ଉନ୍ନତ ଧରଣର ହାତ ହତିଆର ବ୍ୟବହାର କଲେ ତା ନୁହେଁ, ଅନ୍ୟ ଏକ ଦିଗରେ ମଧ୍ୟ ମାନବ ଜୀବନର ନୂତନତ୍ୱ ଫୁଟି ଉଠିଲା । ଏହି ଯୁଗରେ ମନୁଷ୍ୟ କୃଷି ଅବଲମ୍ବନ କରିବାକୁ ଆରମ୍ଭ କଲା । ଏତେ କାଳ ଯାଏ ସେ ଶିକାର କରି ଜୀବନଯାତ୍ରା ନିର୍ବାହ କରୁଥିଲା, ଏବେ ସେ ଭୂମିକର୍ଷଣ କରି ଶସ୍ୟ ଉତ୍ପାଦନ କରିବାକୁ ଶିଖିଲା । ଏହା ମାନବ ଇତିହାସର ଏକ ବୈଶିଷ୍ଟ୍ୟପୂର୍ଣ୍ଣ ଘଟଣା । କୃଷି ବଳରେ ମନୁଷ୍ୟ ଅନାୟାସରେ ଖାଦ୍ୟ ଉତ୍ପାଦନ କରିବାକୁ ସମର୍ଥ ହେଲା ଓ ସ୍ୱଚ୍ଛନ୍ଦରେ ଜୀବନଯାପନ କରିବାକୁ ଆରମ୍ଭ କଲା । ତଦ୍ଦ୍ୱାରା ତାର ଜୀବନରେ ଅଧିକ ଅବକାଶ-ଲାଭ ଘଟିଲା ଏବଂ ସେ ଚିନ୍ତା କରିବାକୁ ଅଧିକ ସମୟ ପାଇଲା । ଏହା ଫଳରେ ନାନା ଉଦ୍ଭାବନର ସୂତ୍ରପାତ ହେଲା । ମନୁଷ୍ୟ ମୃତ୍‌ପାତ୍ର ନିର୍ମାଣ କରି ଅଗ୍ନି ସାହାଯ୍ୟରେ ନିଜର ଖାଦ୍ୟବସ୍ତୁ ରନ୍ଧନ କଲା । କୃଷି ସଙ୍ଗେ ସଙ୍ଗେ ସେ ପଶୁପାଳନ ମଧ୍ୟ କରିବାକୁ ଲାଗିଲା । ପୂର୍ବରୁ ଶିକାରର ସୁବିଧା ପାଇଁ ସେ କୁକୁର ପୋଷିବାକୁ ଆରମ୍ଭ କରିଥିଲା, ଏବେ ଗୋରୁ, ମଇଁଷି, ଛେଳି, ମେଣ୍ଢା ପ୍ରଭୃତି ଜୀବ ପାଳନ କଲା । ସେମାନଙ୍କର ଦୁଗ୍ଧ ଓ ମାଂସ ମନୁଷ୍ୟର ଖାଦ୍ୟସମସ୍ୟା ସମାଧାନ ଦିଗରେ ପ୍ରଚୁର ସାହାଯ୍ୟ କଲା । ଗୋରୁ ଓ ମଇଁଷି ସାହାଯ୍ୟରେ ସେ ଭୂମିକର୍ଷଣ କରି ଶସ୍ୟ ଉତ୍ପାଦନ କଲା । କେତେକ ସ୍ଥାନରେ ଲୋକେ ଘୋଟକ ପାଳନ କଲେ ଓ ଘୋଟକ ସାହାଯ୍ୟରେ ଶିକାର କରିବାକୁ ଆରମ୍ଭ କଲେ ।

ଏହି ନୂତନ ପ୍ରସ୍ତର ଯୁଗରେ ମଧ୍ୟ ମନୁଷ୍ୟ ସୂତା କାଟିବା ଓ ଲୁଗା ବୁଣିବା ଶିଖିଲା । ତୂଳା ଓ ପଶମର ଲୁଗା ବୁଣି ବ୍ୟବହାର

କଲେ; ବର୍ଚ୍ଛା ପାଇଁ ଦେହିଁମ, ମସିଣା ପ୍ରଭୃତି ବୁଣିବା ଓ ନୌକା ନିର୍ମାଣ କରି ନଦୀ ଓ ସମୁଦ୍ରରେ ତାହା ବ୍ୟବହାର କରିବାକୁ ଆରମ୍ଭ କଲେ ।



ଶିକାର, କୃଷି ଓ ଗୃହ ନିର୍ମାଣ

ମନୁଷ୍ୟର ଗୃହ-ନିବାସ ଏହି ଯୁଗର ଅନ୍ୟ ଏକ ବୈଶିଷ୍ଟ୍ୟ । ଗୁହାନିବାସ କ୍ରମଶଃ ବର୍ଜିତ ହେଲା ଏବଂ ମନୁଷ୍ୟ ବୃକ୍ଷଶାଖା ବ୍ୟବହାର କରି କ୍ଷୁଦ୍ର କ୍ଷୁଦ୍ର କୁଟୀର ନିର୍ମାଣ କରିବାକୁ ଶିଖିଲା । କ୍ରମେ ଝାଟି-ମାଟିର କାନ୍ଥ କରି ଓ ତାହା ଉପରେ ଛପର ପକାଇ ତହିଁରେ ସେ

ଅପେକ୍ଷାକୃତ ନିରାପଦରେ ବାସ କଲା । କେତେକ ଅଞ୍ଚଳରେ ମନୁଷ୍ୟ ହ୍ରଦ ମଧ୍ୟରେ ଗୃହନିର୍ମାଣ କରି ରହିଲା । ହ୍ରଦ ଉପରେ କାଠର ମଞ୍ଚା ପ୍ରସ୍ତୁତ କରି, ତା ଉପରେ କାଠ-କୁଡ଼ିଆ ଗଢ଼ି, ସେ ହ୍ରଦନିବାସ ରଚନା କଲା । କାଷ୍ଠନିର୍ମିତ ଏକ କ୍ଷୁଦ୍ର ସେତୁଦ୍ୱାରା ସେ ଉକ୍ତ ହ୍ରଦଭବନକୁ କୂଳସହିତ ସଂଯୁକ୍ତ କରି ରଖିଲା ।

ନୂତନ ପ୍ରସ୍ତର ଯୁଗର ଲୋକମାନେ କେତେକ ଅଞ୍ଚଳରେ ମୃତ ବ୍ୟକ୍ତିକୁ ସମାଧିସ୍ଥ କରୁଥିଲେ । ସମାଧିସ୍ଥଳରେ ତିନି ଚାରି ଗୋଟି ପଥର ଛିଡ଼ା କରାଇ ଦେଇ ତା ଉପରେ ଖଣ୍ଡିଏ ବଡ଼ପଥର ଢାଙ୍କି ଦେଉଥିଲେ । ଏଭଳି ସମାଧିଭବନକୁ "ଡଲମେନ୍" (Dolmen) କୁହାଯାଏ । ଆମ ଭାରତ ସମେତ ନାନା ଅଞ୍ଚଳରେ ଏହି ଡଲମେନ୍ ଗୁଡ଼ିକ ଅକ୍ଷୁଣ୍ଣ ଅବସ୍ଥାରେ ଆବିଷ୍କୃତ ହୋଇଅଛି ।

**ମନୁଷ୍ୟର ସ୍ଥିରବସତି ସ୍ଥାପନ**—କୃଷିର ପ୍ରବର୍ତ୍ତନ ପରେ ମାନବ ଇତିହାସର ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା । ପୂର୍ବରୁ ଗୋଟିଏ ସ୍ଥାନରେ ଚିରଦିନ ବାସ କରିବାର ଆବଶ୍ୟକତା ଅନୁଭୂତ ହେଉ ନ ଥିଲା । ଯେ କୌଣସି ସ୍ଥାନକୁ ଯାଇ ମନୁଷ୍ୟ ଶିକାର କରୁଥିଲା । ଅନେକ ସମୟରେ ମଧ୍ୟ ଗୃହପାଳିତ ପଶୁ ନେଇ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାକୁ ପଡ଼ୁଥିଲା । ପଶୁଚାରଣ ନିମିତ୍ତ କୌଣସି ଏକ ସ୍ଥାନରେ ତୃଣର ଅଭାବ ଘଟିଲେ ଉକ୍ତସ୍ଥାନ ପରିତ୍ୟାଗ କରି ଅନ୍ୟ ଏକ ସ୍ଥାନ ଅନୁସନ୍ଧାନ କରିବାକୁ ହେଉଥିଲା । ଏହିପରି ଭାବରେ ମନୁଷ୍ୟକୁ ଯାଯାବର ଜୀବନ ଯାପନ କରିବାକୁ ପଡ଼ୁଥିଲା । ମାତ୍ର କୃଷିର ପ୍ରବର୍ତ୍ତନ ଫଳରେ ମନୁଷ୍ୟ ଯେଉଁଠାରେ ଭୂମିକର୍ଷଣ କରି ଶସ୍ୟ ଉତ୍ପାଦନ କଲା ଉକ୍ତ ସ୍ଥାନ ସେ ପରିତ୍ୟାଗ କରି ପାରିଲା ନାହିଁ । ବର୍ଷପରେ ବର୍ଷ ସେହି ଏକ ସ୍ଥାନରେ ରହିବାକୁ ପଡ଼ିଲା ।

ଏହାଫଳରେ ଗ୍ରାମ ଓ ନଗରମାନଙ୍କର ଉତ୍ପତ୍ତି ହେଲା ଏବଂ ମନୁଷ୍ୟ ସ୍ଥିରବାସିନ୍ଦାରେ ପରିଣତ ହେଲା । ପୃଥିବୀର ନାନା ଅଞ୍ଚଳରେ ସ୍ଥିର ବସତିମାନ ପ୍ରତିଷ୍ଠିତ ହେଲା । ବଡ଼ ବଡ଼ ନଦୀଉପତ୍ୟକାରେ ମାନବ-ବସତି ଗଢ଼ିଉଠିଲା । ନଦୀକୂଳ ଭୂମି ଉର୍ବର; ତାର ମୃତ୍ତିକା ସାର-ବାନ; ସେଠାରେ ଜଳ ସୁଲଭ; ସୁତରାଂ ଶସ୍ୟଉତ୍ପାଦନପାଇଁ ତାହା ପ୍ରଶସ୍ତ । ତେଣୁ ମନୁଷ୍ୟ ସେହିଭଳି ସ୍ଥାନ ବାଛି ବସତିସ୍ଥାପନ କଲା । କ୍ରମେ ସେହି ସ୍ଥାନଗୁଡିକ ମାନବ ସଭ୍ୟତାର ଆଦିକେନ୍ଦ୍ରରେ ପରିଣତ ହେଲା । ନୀଳନଦୀବିଧୌତ ମିଶର ଦେଶରେ, ଟାଇଗ୍ରିସ୍ ଏବଂ ଇଉଫ୍ରେଟିସ୍ ନଦୀ ପ୍ରବାହିତ ମେସୋପୋଟେମିଆରେ, ହୋୟାଂହୋ ଏବଂ ୟାଂସିକିଆଂ ପ୍ରବାହିତ ଚୀନଦେଶରେ ଓ ସିନ୍ଧୁନଦୀ ବିଧୌତ ଭାରତ ଭୂମିରେ ସ୍ଥାୟୀ ମାନବବସତିର ସୂତ୍ରପାତ ହେଲା । ମନୁଷ୍ୟର ସାମାଜିକ ଜୀବନ ଉତ୍ତରୋତ୍ତର ବିକଶିତ ହେବାକୁ ଲାଗିଲା ।

**ସାମାଜିକ ଜୀବନର ବିଭିନ୍ନ ବିକାଶ (Forms of Community Life):**—ମନୁଷ୍ୟର ସାମାଜିକ ଜୀବନ ବିଭିନ୍ନ ରୂପରେ ପ୍ରକାଶିତ ହେଲା । ପ୍ରଥମେ ସମାଜ କଣ, ତାହା ମନୁଷ୍ୟ ଜାଣି ନ ଥିଲା । ପୃଥିବୀପୃଷ୍ଠରେ ତାର ପ୍ରଥମ ଆବିର୍ଭାବ ସମୟରେ ସମାଜ ଚେତନା ତା ମଧ୍ୟରେ ଅଙ୍କୁରିତ ହୋଇ ନ ଥିଲା । ସେତେବେଳେ ସେ ଏକାକୀ ବିଚରଣ କରି ଖାଦ୍ୟ ସଂଗ୍ରହ କରୁଥିଲା । ସମ୍ଭବତଃ ହିଂସ୍ରପଶୁ ଭୟରେ ସେ ଗିରିଗୁମ୍ଫାରେ ଯାଇ ଆଶ୍ରୟ ନେଉଥିଲା । କାଳକ୍ରମେ ସ୍ୱାଭାବିକ ପ୍ରବୃତ୍ତିଦ୍ୱାରା ପରିଚାଳିତ ହୋଇ ନରନାରୀ ପରସ୍ପର ପ୍ରତି ଆକୃଷ୍ଟ ହେଲେ ଏବଂ ଏକତ୍ର ବାସ କରିବାକୁ ଆରମ୍ଭ କଲେ । ଏହି ଏକତ୍ର ବାସରୁହିଁ ସାମାଜିକ ଜୀବନର ମୂଳ ପତ୍ତନ ଘଟିଲା ।

**ପରିବାର** (Family) :—ପାରିବାରିକ ଜୀବନ ମାନବ ସମାଜର ପ୍ରାଥମିକ ବିକାଶ । ସ୍ତ୍ରୀ ପୁରୁଷ ଉଭୟଙ୍କୁ ନେଇ ପରିବାରର ସୃଷ୍ଟି । ସେମାନଙ୍କର ସନ୍ତାନ-ସନ୍ତତି ପରିବାର ବୃଦ୍ଧି ସାଧନ କଲି । ସେମାନଙ୍କୁ ଏକତ୍ର କରି ରଖିଲା ସ୍ନେହ, ମମତା ଓ ରକ୍ତଗତ ସମ୍ପର୍କ । ପରିବାର କହିଲେ କେବଳ କେତେଗୁଡ଼ିଏ ବ୍ୟକ୍ତିର ସମଷ୍ଟି ବୁଝାଏ ନାହିଁ । ପରିବାରର ବିଶେଷତ୍ୱ ହେଉଛି ପରସ୍ପର ମଧ୍ୟରେ ଏକତ୍ୱବୋଧ । ଏହି ଏକତ୍ୱବୋଧ ଓ ଆତ୍ମୀୟତାର ରଜ୍ଜୁ ପିତାମାତା, ସନ୍ତାନ ସନ୍ତତି, ସମସ୍ତଙ୍କୁ ଏକାଠି ବାନ୍ଧି ରଖିଲା । ସନ୍ତାନ ଜନ୍ମ ପରେ ସ୍ତ୍ରୀ ପୁରୁଷ ମଧ୍ୟରେ ଶ୍ରମ ବିଭାଗର ଆବଶ୍ୟକତା ଅନୁଭୂତ ହେଲା । ଗୁହାବାସ ଯୁଗରେ ନାରୀ ସମ୍ଭବତଃ ଗୁହାରେ ରହି ସନ୍ତାନସନ୍ତତିଙ୍କୁ ରକ୍ଷଣାବେକ୍ଷଣ କରୁଥିଲା ଓ ସେମାନଙ୍କୁ ଜଗି ରହୁଥିଲା, ପୁରୁଷ ବାହାରକୁ ଯାଇ ଖାଦ୍ୟ ଅନ୍ୱେଷଣ କରୁଥିଲା । ପରେ ଗୃହ ବା କୁଟୀର ନିର୍ମାଣ କରି ସ୍ତ୍ରୀପୁରୁଷ ନିଜର ସନ୍ତାନ ସନ୍ତତିଙ୍କୁ ନେଇ ଅପେକ୍ଷାକୃତ ଅଧିକ ସୁବିଧା ଓ ସ୍ୱାଚ୍ଛନ୍ଦ୍ୟରେ ବାସ କଲେ । ପଶୁପାଳନ ଓ କୃଷିର ପ୍ରବର୍ତ୍ତନ ଫଳରେ ମନୁଷ୍ୟ ଉପରେ ନାନା କର୍ତ୍ତବ୍ୟର ଭାର ଆସି ପଡ଼ିଲା । ତେଣୁ ପରିବାର ମଧ୍ୟରେ କର୍ତ୍ତବ୍ୟ ବଣ୍ଟନର ଆବଶ୍ୟକତା ଅଧିକରୁ ଅଧିକ ଅନୁଭୂତ ହେଲା । ପୁରୁଷକୁ ମୁଖ୍ୟତଃ ଶିକାର କରିବାକୁ ଓ କୃଷିକ୍ଷେତ୍ରରେ କୃଷକର୍ମ କରିବାକୁ ପଡ଼ିଲା ଏବଂ ସ୍ତ୍ରୀକୁ ପିଲାମାନଙ୍କର ଯତ୍ନ ନେବାକୁ, ଖାଦ୍ୟସାମଗ୍ରୀ ରନ୍ଧନ କରିବାକୁ ଓ ଗୃହପାଳିତ ପଶୁମାନଙ୍କର ତତ୍ତ୍ୱ ନେବାକୁ ହେଲା । ଏହିପରି ସ୍ତ୍ରୀ ପୁରୁଷ ମଧ୍ୟରେ ଶ୍ରମ ବିଭାଗ ଓ କର୍ତ୍ତବ୍ୟ ବଣ୍ଟନ କରି ମନୁଷ୍ୟ ପରିବାର ଆପଣାର ଜୀବନଯାତ୍ରା ନିର୍ବାହ କରିବାରେ ଅଭ୍ୟସ୍ତ ହେଲା । କ୍ରମେ ମାନବଜାତି ଅସଂଖ୍ୟ ପରିବାରରେ ବିଭକ୍ତ ହୋଇ

ପଡ଼ିଲା । କେତେକ ପରିବାରରେ ପିତା ଥିଲେ ପ୍ରଧାନ ବ୍ୟକ୍ତି ଓ ଅନ୍ୟ କେତେକ ପରିବାରରେ ମାତା ଥିଲେ ପ୍ରଧାନ ।

**କୁଳ** (Clan):—ପରିବାର ମଧ୍ୟରେ ବ୍ୟକ୍ତି ସଂଖ୍ୟା ବୃଦ୍ଧି ହେବାରୁ ସମସ୍ତେ ଏକତ୍ର ଅବସ୍ଥାନ କରିପାରିଲେ ନାହିଁ । ଗୋଟିଏ ଗୋଟିଏ ପରିବାର କାଳକ୍ରମେ ଏକାଧିକ ପରିବାରରେ ବିଭକ୍ତ ହେଲେ । ସ୍ୱତନ୍ତ୍ର ଗୃହ ନିର୍ମାଣ କରି ଉକ୍ତ ପରିବାରଗୁଡ଼ିକ ସ୍ୱତନ୍ତ୍ର ଭାବରେ ବାସ କଲେ ଏବଂ ସ୍ୱତନ୍ତ୍ର ଭାବରେ ଚଳିଲେ । ମାତ୍ର ଏହି ସ୍ୱତନ୍ତ୍ର ନିବାସ ସତ୍ତ୍ୱେ ସେମାନଙ୍କ ମଧ୍ୟରେ ନିବିଡ଼ ସମ୍ପର୍କ ପ୍ରତିଷ୍ଠିତ ଥିଲା । ଗୋଟିଏ ମୌଳିକ ପରିବାରର ବିଭିନ୍ନ ଶାଖା-ପ୍ରଶାଖା ସ୍ୱରୂପ ସେମାନେ ଏକ ସୂତ୍ରରେ ଆବଦ୍ଧ ହୋଇ ଚଳିଲେ । ସେମାନଙ୍କର ମୂଳ ଏକ ହୋଇଥିବାରୁ ସେମାନଙ୍କୁ ଗୋଟିଏ କୁଳ ବା ବଂଶର ଲୋକ ବୋଲି ଧରାଗଲା । ଏକ କୁଳ ଜାତ ଲୋକମାନଙ୍କ ମଧ୍ୟରେ ବିବାହ ପ୍ରଚଳିତ ନ ଥିଲା । ତେଣୁ ବିଭିନ୍ନ କୁଳ ବିବାହ ବନ୍ଧନରେ ଆବଦ୍ଧ ହେଲେ ଏବଂ ଏହା ଫଳରେ ବୃହତ୍ତର ମାନବଗୋଷ୍ଠୀର ଆବିର୍ଭାବ ଘଟିଲା । ପ୍ରାଚୀନ ଯୁଗରୁ ଆମ ଭାରତରେ ଏହି କୁଳ ବା ଗୋତ୍ର ପ୍ରଥା ଚଳି ଆସିଅଛି । କାଶ୍ୟପ ଗୋତ୍ର, ନାଗେଶ ଗୋତ୍ର, ଭରଦ୍ୱାଜ ଗୋତ୍ର ଆଦି ଏହାର ଉଦାହରଣ ।

**ଦଳ** (Tribe):—ପରିବାର ଓ କୁଳରୁ ଦଳର ଉତ୍ପତ୍ତି । ପ୍ରଥମେ ଗୋଟିଏ ଗୋଟିଏ ଦଳ କେତେଗୁଡ଼ିଏ ବୃହତ୍ ପରିବାରର ସମଷ୍ଟି ଥିଲା । ସେମାନେ ସମସ୍ତେ ଥିଲେ ପରସ୍ପରର ସମ୍ପର୍କୀୟ । କାଳକ୍ରମେ ସେଗୁଡ଼ିକର ବୃଦ୍ଧି ଓ ସମ୍ପ୍ରସାରଣ ଘଟି ବିରାଟ ଦଳମାନଙ୍କର ସୃଷ୍ଟି ହେଲା । *

* "The first tribes must really have been large families. All the members of them were

ଦଳର ଉତ୍ପତ୍ତି ସମ୍ବନ୍ଧରେ ଆଲୋଚନା କଲେ ଜଣାଯାଏ ଯେ, ମନୁଷ୍ୟ ଆଦିମ ଅବସ୍ଥାରୁ ହିଁ ଦଳବଦ୍ଧ ହୋଇ ବାସ କରିବାର ଉପକାରିତା ଅନୁଭବ କରିଥିଲା । ଦଳବଦ୍ଧ ହୋଇ ବାସ କଲେ, ପଶୁ ବା ମନୁଷ୍ୟ ଯେକୌଣସି ପ୍ରକାର ଶତ୍ରୁର ଆକ୍ରମଣରୁ ସହଜରେ ଆତ୍ମରକ୍ଷା କରିହୁଏ । ମନୁଷ୍ୟ ନିଜର ଅଭିଜ୍ଞତା ବଳରେ ଏହା ଅନାୟାସରେ ଉପଲବ୍ଧି କଲା । ତେଣୁ ଏହି ଦଳଗଠନ ମୂଳରେ ଥିଲା ନିଜକୁ ନିରାପଦ ରଖିବାର ଅଭିପ୍ରାୟ । ଦଳସ୍ଥ ଲୋକେ ପରସ୍ପର ସହିତ ସହଯୋଗ ରଖି କାର୍ଯ୍ୟ କରୁଥିଲେ । ଦଳ ଉପରେ ବିପଦ ପଡ଼ିଲେ ଦଳର ପ୍ରତ୍ୟେକ ବ୍ୟକ୍ତିକୁ ଦଳ ପାଇଁ ଯୁଦ୍ଧ କରିବାକୁ ପଡୁଥିଲା । ଦଳରକ୍ଷା ଥିଲା ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ । ଦଳସ୍ୱାର୍ଥ ପାଇଁ କାର୍ଯ୍ୟ ନ କଲେ ଲୋକ ଦଳଚ୍ୟୁତ ହେଉଥିଲା ଏବଂ ତଦ୍ୱାରା ତାର ଜୀବନ ସଙ୍କଟାପନ୍ନ ହେଉଥିଲା ।

**ଦଳପତି ନିର୍ବାଚନ:**—ଦଳବଦ୍ଧ ହୋଇ ଚଳିବାକୁ ହେଲେ ଦଳ ମଧ୍ୟରେ ଶୃଙ୍ଖଳା ଆବଶ୍ୟକ । ଏହି ଶୃଙ୍ଖଳାରକ୍ଷା ସକାଶେ ଜଣେ ଦଳପତିର ପ୍ରୟୋଜନ । ସୁତରାଂ ଦଳ ଅନ୍ତର୍ଗତ ସର୍ବାପେକ୍ଷା ଅଧିକ ବଳଶାଳୀ ବ୍ୟକ୍ତିକୁ ଦଳପତି ପଦରେ ପ୍ରତିଷ୍ଠା କରିଦେଉଥିଲା । ଗୋଟିଏ ଦଳ ସହିତ ଅନ୍ୟ ଦଳର ସଂଘର୍ଷ ଉପସ୍ଥିତ ହେଲେ ଦଳପତି ନିଜ ଦଳର ନେତୃତ୍ୱ ଗ୍ରହଣ କରି ଯୁଦ୍ଧ ପରିଚାଳନା କରୁଥିଲା ।

---

related to each other. But the families grew and grew till the tribe became quite big."—Jawaharlal Nehru in Letters from a Father to his Daughter.

କୃଷିକର୍ମର ପ୍ରବର୍ତ୍ତନ ପରେ ଏହି ଦଳପତିଙ୍କ ଉପରେ ଗୁରୁତର ଦାୟିତ୍ୱ ନ୍ୟସ୍ତ ହେଲା । ତାହା ହେଉଛି କୃଷିକର୍ମର ତତ୍ତ୍ୱାବଧାନ । ପ୍ରଥମାବସ୍ଥାରେ ଦଳପତିଙ୍କୁ ଅନ୍ୟମାନଙ୍କ ପରି କୃଷି-କ୍ଷେତ୍ରରେ ଯାଇ ପରିଶ୍ରମ କରିବାକୁ ପଡ଼ୁଥିଲା । ପରେ ତାଙ୍କର କର୍ତ୍ତବ୍ୟ ଭିନ୍ନ ରୂପ ଧାରଣ କଲା ; ଏବେ ଦଳପତିଙ୍କୁ କେବଳ ଦଳର ସଂଗଠନ ବ୍ୟାପାର ନେଇ ବ୍ୟାପୃତ ରହିବାକୁ ପଡ଼ିଲା ଏବଂ ଦଳର ପରିଚାଳକ ହିସାବରେ ଅନ୍ୟ ସମସ୍ତଙ୍କ କାର୍ଯ୍ୟ ପରିଦର୍ଶନ ଓ ପରିପ୍ରେକ୍ଷଣ କରିବାକୁ ପଡ଼ିଲା । ଏହା ଫଳରେ ଦଳପତି ମୁଖ୍ୟତଃ ସଂଗଠକ ଓ ପରିଚାଳକ ହୋଇ ରହିଲେ । ଦଳୀୟ ସମ୍ପତ୍ତିର ରକ୍ଷଣାବେକ୍ଷଣ ଓ ତତ୍ତ୍ୱାବଧାନର ଭାର ତାଙ୍କରି ଉପରେ ନ୍ୟସ୍ତ ହେଲା । ଦଳ ମଧ୍ୟରେ ସେ ହେଲେ ସର୍ବାଧିକ କ୍ଷମତାସମ୍ପନ୍ନ ବ୍ୟକ୍ତି ଓ ଅନ୍ୟ ସମସ୍ତେ ତାଙ୍କର ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କଲେ । ଦଳପତିଙ୍କ ଆଦେଶ ସମସ୍ତଙ୍କର ଶିରୋଧାର୍ଯ୍ୟ ହେଲା । ସମସ୍ତେ ତାଙ୍କୁ "ଦଳର ପିତା" (Patriarch) * ବୋଲି ମନେ କଲେ । କ୍ରମେ ଦଳପତି ପଦ ବଂଶାନୁକ୍ରମିକ ହୋଇ ପଡ଼ିଲା ଏବଂ ଦଳପତିଙ୍କର ମୃତ୍ୟୁ ପରେ ତାର ପୁତ୍ର ଦଳପତି ପଦରେ ଅଧିଷ୍ଠିତ ହେଲା । ଏବେ ଏହି ଦଳପତି ପଦର କ୍ରମବିକାଶ ଘଟି ରାଜପଦର ସୃଷ୍ଟି ହେଲା ।

## ଅନୁଶୀଳନୀ

୧ । ପ୍ରସ୍ତର ଯୁଗ କାହାକୁ କୁହାଯାଏ ? ସେ ଯୁଗର ଲୋକେ କିଭଳି ହାତହତିଆର ବ୍ୟବହାର କରୁଥିଲେ ?

---

*"ପେଟ୍ରି ଆର୍କ" ଶବ୍ଦ ଲାଟିନ ଭାଷାରେ "Pater" (ସଂସ୍କୃତ 'ପିତୃ') ଶବ୍ଦରୁ ନିଷ୍ପନ୍ନ ।

୨ । ପ୍ରସ୍ତର ଯୁଗକୁ କାହିଁକି ଦୁଇ ଭାଗରେ ବିଭକ୍ତ କରାଯାଏ ? ନୂତନ ପ୍ରସ୍ତର ଯୁଗର ଲୋକେ କିପରି ଭାବରେ ଜୀବନଯାପନ କରୁଥିଲେ ?

୩ । ପୁରାତନ ପ୍ରସ୍ତର ଯୁଗର ଲୋକଙ୍କ ତୁଳନାରେ ନୂତନ ପ୍ରସ୍ତର ଯୁଗର ଲୋକେ ଅଧିକ ବୁଦ୍ଧିମାନ୍ ଥିଲେ ବୋଲି ଉଦାହରଣ ଦ୍ୱାରା ବୁଝାଇ ଦିଅ ।

୪ । ବନ୍ଧନୀ ମଧ୍ୟରେ ଥିବା ପଦାବଳୀରୁ ଉପଯୁକ୍ତ ପଦ ବାଛି ନିମ୍ନଲିଖିତ ବାକ୍ୟମାନଙ୍କର ଶୂନ୍ୟସ୍ଥାନ ପୂରଣ କର:—

(କ) ପୁରାତନ ପ୍ରସ୍ତର ଯୁଗର ଲୋକ ଥିଲି — (ହର୍ମ୍ୟବାସୀ, ହ୍ରଦବାସୀ, ଅରଣ୍ୟଚାରୀ)

(ଖ) ନୂତନ ପ୍ରସ୍ତର ଯୁଗର ହାତହତିଆର ପୁରାତନ ପ୍ରସ୍ତର ଯୁଗର ହତିଆର ଅପେକ୍ଷା — ଥିଲି (ନିକୃଷ୍ଟ, ଉତ୍କୃଷ୍ଟ)

(ଗ) ଆମ ଭାରତର — ଅନ୍ତର୍ଗତ ବେଲ୍ଲାରୀ ଜିଲ୍ଲାରେ ନୂତନ ପ୍ରସ୍ତର ଯୁଗର ଏକ ଅସ୍ତ୍ର କାରଖାନା ଆବିଷ୍କୃତ ହୋଇଅଛି । (ବିହାର, ବମ୍ବେ, ମାନ୍ଦ୍ରାଜ, ଓଡ଼ିଶା)

(ଘ) ନୀଳନଦୀବିଧୌତ — ପ୍ରାଚୀନତମ ମାନବ ସଭ୍ୟତାର ଅନ୍ୟତମ ଆଦିପୀଠ । (ଚୀନ, ଭାରତ, ମିଶର)

୫ । "କୃଷିର ପ୍ରବର୍ତ୍ତନ ଫଳରେ ମାନବ ଇତିହାସର ଏକ ଅପୂର୍ବ ଅଧ୍ୟାୟ ଆରମ୍ଭ ହେଲି"—ଏ ଉକ୍ତିର ଯାଥାର୍ଥ୍ୟ ବିଶଦ ଭାବରେ ବୁଝାଇ ଦିଅ ।

୬ । ମନୁଷ୍ୟ ଗୁହା ତ୍ୟାଗ କରି ଗୃହ ନିର୍ମାଣ କଲା କାହିଁକି ?

୭ । ତୁମ ବିଦ୍ୟାଳୟର ପୁସ୍ତକାଗାରରୁ କିମ୍ବା ଅନ୍ୟ କୌଣସି ପୁସ୍ତକାଳୟରୁ ଉପଯୁକ୍ତ ପୁସ୍ତକ ବାଛି ଓ ତାହା ଅଧ୍ୟୟନ କରି

ପ୍ରସ୍ତରଯୁଗ ଓ ଆଧୁନିକ ଯୁଗର ହ୍ରଦନିବାସ ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ଲେଖ ।

୮ । ମାନବ ପରିବାରର ଉତ୍ପତ୍ତି କିପରି ହେଲା ? ପରିବାରରୁ କିପରି କୁଳର ସୃଷ୍ଟି ହେଲା ?

୯ । ଦଳର ଉତ୍ପତ୍ତି ଓ ଦଳପତି ପଦର ସୃଷ୍ଟି ସମ୍ବନ୍ଧରେ ସଂକ୍ଷିପ୍ତ ଆଲୋଚନା କର ।

୧୦ । ରୁଷିଆ ଓ ସାଇବେରିଆର ବଡ଼ ବଡ଼ ନଦୀର ଉପତ୍ୟକା-ମାନଙ୍କରେ ସଭ୍ୟତାର ଉନ୍ମେଷ ନ ଘଟି ମିଶର, ମେସୋ-ପୋଟେମିଆ, ଚୀନ ଓ ଭାରତର ନଦୀ ଉପତ୍ୟକାମାନଙ୍କରେ ଘଟିଲା କାହିଁକି ?

---

## ଦ୍ୱିତୀୟ ପରିଚ୍ଛେଦ

### ପୃଥିବୀର ପ୍ରାଚୀନ ସଭ୍ୟତା (Ancient Civilization)

(ପ୍ରାଚୀନ ସିନ୍ଧୁ ସଭ୍ୟତା, ଗ୍ରୀକ୍ ସଭ୍ୟତା, ରୋମୀୟ ସଭ୍ୟତା ଓ ଭାରତୀୟ ଆର୍ଯ୍ୟ ସଭ୍ୟତା)

**ମହେଞ୍ଜୋଦାରୋ ଓ ହରପ୍ପା:—**ସିନ୍ଧୁ ଉପତ୍ୟକାର ବିଭିନ୍ନ ସ୍ଥାନରେ ଭୂ-ଖନନ ଫଳରେ ଏକ ସୁପ୍ରାଚୀନ ସଭ୍ୟତାର ନିଦର୍ଶନ ମିଳିଅଛି । ତନ୍ମଧ୍ୟରୁ ଦୁଇଟି ସ୍ଥାନର ନାମ ବିଶେଷ ଉଲ୍ଲେଖଯୋଗ୍ୟ । ଗୋଟିଏ ହେଉଛି ମହେଞ୍ଜୋଦାରୋ ଓ ଅନ୍ୟଟି ହରପ୍ପା । ମହେଞ୍ଜୋଦାରୋ ସିନ୍ଧୁ ପ୍ରଦେଶରେ ଓ ହରପ୍ପା ପଞ୍ଜାବରେ ଅବସ୍ଥିତ । ଅଧୁନା ଉଭୟ ସ୍ଥାନ ପାକିସ୍ଥାନର ଅନ୍ତର୍ଭୁକ୍ତ । ୧୯୨୨ ଓ ୧୯୨୩ ଖ୍ରୀଷ୍ଟାବ୍ଦରେ ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗର ଉଦ୍ୟମରେ ଭୂ-ଖନନ କରାଯାଇ ଉକ୍ତ ସ୍ଥାନଦ୍ୱୟରେ ଦୁଇଟି ବିରାଟ ସହରର

ଧ୍ୱଂସାବଶେଷ ଆବିଷ୍କୃତ ହୋଇଅଛି । ସେଥିରୁ ଜଣାଯାଏ, ପ୍ରାୟ ପାଞ୍ଚହଜାର ବର୍ଷ ପୂର୍ବେ ସେଠାରେ ଏକ ଉନ୍ନତ ଧରଣର ସଭ୍ୟତା ବିକାଶଲାଭ କରିଥିଲା । ତାହା ସିନ୍ଧୁ-ସଭ୍ୟତା ନାମରେ ଅଭିହିତ । ଏହି ସିନ୍ଧୁ-ସଭ୍ୟତା ପୃଥିବୀର ପ୍ରାଚୀନତମ ସଭ୍ୟତାମାନଙ୍କ ମଧ୍ୟରୁ ଅନ୍ୟତମ । ମହେଞ୍ଜୋଦାରୋ ଓ ହରପ୍ପା କାଳକ୍ରମେ ଧ୍ୱଂସପ୍ରାପ୍ତ ହୋଇ ଭୂଗର୍ଭରେ ଲୀନ ହୋଇଯାଇଥିଲା । ସମ୍ଭବତଃ ସିନ୍ଧୁନଦୀର ପ୍ଲାବନ ଏହାର ମୁଖ୍ୟ କାରଣ । ପରବର୍ତ୍ତୀ କାଳରେ ଆର୍ଯ୍ୟମାନେ ଭାରତକୁ ଆସି ସିନ୍ଧୁ ସଭ୍ୟତାର ଲୋପସାଧନ କରିଥିଲେ ବୋଲି ଅନେକେ ବିଶ୍ୱାସ କରନ୍ତି । ହରପ୍ପା ଓ ମହେଞ୍ଜୋଦାରୋର ସଭ୍ୟତା ଥିଲା ମୁଖ୍ୟତଃ ନଗର-ସଭ୍ୟତା । ଆର୍ଯ୍ୟମାନେ ଭାରତକୁ ଆସି ଏହି ନଗର-ସଭ୍ୟତାର ପୋଷକତା କରି ନ ଥିଲେ । ସେମାନେ ଗ୍ରାମରେ ରହିବାକୁ ଭଲ ପାଉଥିଲେ । ତେଣୁ ହରପ୍ପା ଓ ମହେଞ୍ଜୋଦାରୋ ପ୍ରଭୃତି ନଗରମାନ ଅବହେଳିତ ହୋଇ କାଳକ୍ରମେ ଧ୍ୱଂସପ୍ରାପ୍ତ ହୋଇଥିଲା ।

**ସିନ୍ଧୁ ସଭ୍ୟତା ଯୁଗର ସାମାଜିକ ଜୀବନ:**—ସେହି ସୁଦୂର ଅତୀତରେ ସାମାଜିକ ଜୀବନ କିପରି ଥିଲା, ତାହାର କୌଣସି ଲିଖିତ ବିବରଣୀ ନାହିଁ । କେବଳ ମହେଞ୍ଜୋଦାରୋ ଓ ହରପ୍ପା ପ୍ରଭୃତି ସ୍ଥାନର ଭୂଗର୍ଭରୁ ଯେଉଁ ସବୁ ପଦାର୍ଥ ମିଳିଅଛି, ସେଥିରୁ ସେ ଯୁଗର ସାମାଜିକ ଜୀବନ ସମ୍ବନ୍ଧରେ ଅନେକ କଥା ଅନୁମାନ କରାଯାଏ । ସେତେବେଳେ ଲୋକେ ଇଷ୍ଟକ ନିର୍ମିତ ଗୃହରେ ବାସ କରୁଥିଲେ । ଇଷ୍ଟକଗୁଡ଼ିକ ଉତ୍ତମରୂପେ ପୋଡ଼ା ହେଉଥିଲା ଏବଂ ସେଗୁଡ଼ିକ ଅତି ଉତ୍କୃଷ୍ଟ ଧରଣର ଥିଲା । କେତେକ ଗୃହରେ ଖୁବ୍ ବଡ଼ ବଡ଼ ଇଟା ବ୍ୟବହୃତ ହୋଇଥିବାର ଦେଖାଯାଏ । ତାହାର ଦୈର୍ଘ୍ୟ ପ୍ରାୟ ୫୦ ସେ.ମି., ପ୍ରସ୍ଥ ୨୭ ସେ.ମି. ଓ ଉଚ୍ଚତା ୮ ସେ.ମି. । ପ୍ରାୟ

ପ୍ରତି ବାସଗୃହରେ କୂପ, ନର୍ଦ୍ଦମା ଓ ସ୍ନାନାଗାରର ବ୍ୟବସ୍ଥା ଥିଲା । ବର୍ତ୍ତମାନ ଯୁଗରେ ଏପରି ବ୍ୟବସ୍ଥା ଅନ୍ୟତ୍ର କ୍ୱଚିତ୍ ଦେଖିବାକୁ ମିଳେ ।

ସେ ସମୟରେ ଲୋକଙ୍କର ପ୍ରଧାନ ଖାଦ୍ୟ ଥିଲା ଗହମ । ଯବ (barley) ଓ ଖର୍ଜୁରି କୋଳି ମଧ୍ୟ ଲୋକମାନଙ୍କର ଆଦରଣୀୟ ଖାଦ୍ୟ ଥିବାର ଜଣାଯାଏ । ତା ଛଡ଼ା, ସେମାନେ ମତ୍ସ୍ୟ, ମେଷମାଂସ ଓ ଅଣ୍ଡା ମଧ୍ୟ ଖାଦ୍ୟରୂପେ ବ୍ୟବହାର କରୁଥିଲେ ।

ସେ ଯୁଗରେ ଲୋକଙ୍କର ପ୍ରଧାନ ପରିଧାନ ଥିଲା କାର୍ପାସ ବସ୍ତ୍ର । ଶୀତଦିନେ ପଶମ ବସ୍ତ୍ର ମଧ୍ୟ ବ୍ୟବହୃତ ହେଉଥିଲା । ପୁରୁଷ ଓ ସ୍ତ୍ରୀ ଉଭୟ ଶ୍ରେଣୀର ଲୋକେ ଅଳଙ୍କାର ପିନ୍ଧୁଥିଲେ । ହାର, ଅଙ୍ଗଦ, ଅଙ୍ଗୁରୀୟ ଓ ବଳୟ, କି ପୁରୁଷ କି ସ୍ତ୍ରୀ, ସମସ୍ତଙ୍କର ଅଙ୍ଗଭୂଷା ରୂପେ ବ୍ୟବହୃତ ହେଉଥିଲା । ନାସିକା, କର୍ଣ୍ଣ, କଟୀ ଓ ପାଦରେ କେବଳ ସ୍ତ୍ରୀମାନେ ଅଳଙ୍କାର ପରିଧାନ କରୁଥିଲେ । ନାନା ଢଙ୍ଗର ଅଳଙ୍କାର ସେତେବେଳେ ବ୍ୟବହୃତ ହେଉଥିଲା । ତନ୍ମଧ୍ୟରୁ କେତେକ ସ୍ୱର୍ଣ୍ଣ ଓ ରୌପ୍ୟରେ ଏବଂ ଅନ୍ୟ କେତେକ ତାମ୍ର ଓ ହସ୍ତୀଦନ୍ତରେ ନିର୍ମିତ ଥିଲା । ବହୁମୂଲ୍ୟ ପ୍ରସ୍ତରଖଚିତ ନାନାବିଧ ଅଳଙ୍କାରର ନିଦର୍ଶନ ମଧ୍ୟ ଅନେକ ସ୍ଥାନରୁ ମିଳିଅଛି ।

ଭୂଖନନ ଫଳରେ ଯେଉଁ ପଶୁ କଂକାଳଗୁଡ଼ିକ ଆବିଷ୍କୃତ ହୋଇଅଛି, ସେଥିରୁ ଜଣାଯାଏ, ସିନ୍ଧୁ ସଭ୍ୟତା ଯୁଗରେ ଗୋ, ମହିଷ, ହସ୍ତୀ ଓ ଉଷ୍ଟ୍ର ଗୃହପାଳିତ ପଶୁ ଥିଲେ । କେତେକ ଖୋଦିତ ଶିଳରୁ କୁକୁର ପାଳନର ମଧ୍ୟ ପରିଚୟ ମିଳେ; ମାତ୍ର ସେ ଯୁଗରେ ଘୋଟକ ସମ୍ଭବତଃ ଗୃହପାଳିତ ପଶୁରୂପେ ବ୍ୟବହୃତ ହେଉନଥିଲା, କାରଣ ଘୋଟକର କୌଣସି ନିଦର୍ଶନ ଭୂଗର୍ଭରୁ ମିଳିନାହିଁ ।

ଲୋକେ ସେ ଯୁଗରେ ନାନା ପ୍ରକାର ମୃତ୍ ପାତ୍ର ବ୍ୟବହାର କରୁଥିଲେ । ତାହା କୁମ୍ଭକାରଚକ୍ର ସାହାଯ୍ୟରେ ନିର୍ମିତ ହେଉଥିଲା ।



ମୃତ୍ପାତ୍ର

ବିଭିନ୍ନ ରଙ୍ଗରେ ରଞ୍ଜିତ କେତେକ ମୃତ୍ପାତ୍ର ମଧ୍ୟ ଭୂଗର୍ଭରୁ ମିଳିଅଛି । ମୃତ୍ପାତ୍ର ବ୍ୟତୀତ ତାମ୍ର, ବ୍ରୋଞ୍ଜ, ରୌପ୍ୟ ଓ ଚୀନାମାଟିର ପାତ୍ର ମଧ୍ୟ କେତେକ ପରିମାଣରେ ବ୍ୟବହୃତ ହେଉଥିବାର ଜଣାଯାଏ । ସେତେବେଳେ ସମ୍ଭବତଃ ଲୌହର ବ୍ୟବହାର ଅଜ୍ଞାତ ଥିଲା । ସିନ୍ଧୁ ଉପତ୍ୟକାର ଭୂଗର୍ଭରୁ ଲୌହ ଆବିଷ୍କୃତ ହୋଇନାହିଁ । ସେ ସମୟର ଲୋକେ ଅରଟ ସାହାଯ୍ୟରେ ସୂତା କାଟୁଥିଲେ । ଅରଟଗୁଡ଼ିକ ମାଟିରେ ଗଢ଼ାହୋଇ ନିଆଁରେ ପୋଡ଼ା ହେଉଥିଲା । ଦା, କୁରାଢ଼ୀ, ବଟାଳି, ଛୁରୀ, ଖୁର, ବନଶୀକଣ୍ଟା ପ୍ରଭୃତି ଅନ୍ୟ କେତେକ ବ୍ୟବହାର୍ଯ୍ୟ ଉପକରଣ ମାଟିତଳୁ ମିଳିଅଛି । ସେଗୁଡ଼ିକ ତାମ୍ର ବା ହସ୍ତୀଦନ୍ତରେ ତିଆରି । ସେତେବେଳେ ଲୋକେ ପ୍ରସ୍ତର ନିର୍ମିତ ବଟକରିମାନ ଓଜନ କରିବା ଉଦ୍ଦେଶ୍ୟରେ ବ୍ୟବହାର କରୁଥିଲେ । ପଶାକାଠିର ଆବିଷ୍କାରରୁ ପଶାଖେଳ

ସେତେବେଳେ ଲୋକସମାଜରେ ଆଦୃତ ହେଉଥିଲା ବୋଲି ଜଣାଯାଏ ।

ସିନ୍ଧୁସଭ୍ୟତା ଅଞ୍ଚଳର ଲୋକେ ଯୁଦ୍ଧ ସମୟରେ ନାନା ପ୍ରକାର ଯୁଦ୍ଧାସ୍ତ୍ର ବ୍ୟବହାର କରୁଥିଲେ । ସେ ସମସ୍ତ ତମ୍ବା ବା ବ୍ରୋଞ୍ଜରେ ତିଆରି । ଯୁଦ୍ଧାସ୍ତ୍ର ମଧ୍ୟରେ ଗଦା, କୁଠାର, ବର୍ଚ୍ଛା, ଛୁରି ପ୍ରଭୃତି ପ୍ରଧାନ ଥିବାର ଅନୁମିତ ହୁଏ । ଖଣ୍ଡା ବା ତରବାରିର ପ୍ରଚଳନ ସେତେବେଳେ ନ ଥିଲା । ଢାଲ, ଶିରସ୍ତ୍ରାଣ, ବର୍ମ ପ୍ରଭୃତି କୌଣସି ସ୍ଥାନରୁ ମିଳି ନାହିଁ ।

ସମାଜରେ ବିଭିନ୍ନ ଶ୍ରେଣୀର ଲୋକ ବାସ କରୁଥିଲେ । କୃଷି ଲୋକମାନଙ୍କର ମୁଖ୍ୟ ଜୀବିକା ଥିଲା । ଗହମ, ଯବ ଓ କପା ବିସ୍ତୃତ ଭାବରେ ଚାଷ କରାହେଉଥିଲା । ତନ୍ତୀ, ବଢ଼େଇ, କମାର, କୁମ୍ଭାର, ରାଜମିସ୍ତ୍ରୀ, ବଣିଆ, ପଥୁରିଆ, ହାତୀଦାନ୍ତ କାରିଗର, ଏହିପରି ନାନାଶ୍ରେଣୀର ଲୋକ ନିଜ ନିଜର ବ୍ୟବସାୟ ଦ୍ୱାରା ଜୀବିକା ନିର୍ବାହ କରୁଥିଲେ । ସେ ସମୟର ଲୋକେ ନାନାବିଧ ମୂର୍ତ୍ତିଗଠନ ଓ ଚିତ୍ରାଙ୍କନ କରିପାରୁଥିଲେ । ମହେଞ୍ଜୋଦାରୋରୁ ଆବିଷ୍କୃତ ପଞ୍ଚଶତାଧିକ ସିଲ୍‌ମୋହର ଉପରେ ନାନାପ୍ରକାର ପଶୁମୂର୍ତ୍ତି ଖୋଦିତ ଥିବାର ଦେଖାଯାଏ । ତହିଁରୁ ଉତ୍କୃଷ୍ଟ କଳାପାଟବର ପରିଚୟ ମିଳେ । ହରପ୍‌ପାଠାରେ ଯେଉଁ ପ୍ରସ୍ତର ମୂର୍ତ୍ତିଗୁଡ଼ିକ ଆବିଷ୍କୃତ ହୋଇଅଛି, ତାହା ପ୍ରାଚୀନ ଗ୍ରୀସ୍‌ର ପ୍ରସ୍ତର ମୂର୍ତ୍ତି ସଦୃଶ ସୁନ୍ଦର । ସିନ୍ଧୁ ଉପତ୍ୟକାର ଭୂଗର୍ଭରୁ ଅନେକଗୁଡ଼ିଏ ମାତୃକାମୂର୍ତ୍ତି ମିଳିଅଛି । ସେ ଯୁଗର କେତେକ ସିଲ୍‌ମୋହର ଉପରେ ପଶୁପରିବେଷ୍ଟିତ ଯୋଗୀମୂର୍ତ୍ତି ଅଙ୍କିତ ଥିବାର ଦେଖାଯାଏ । ସେଥିରୁ ସେ ସମୟରେ ଶକ୍ତି ଓ ଶିବ ପୂଜା ପ୍ରଚଳିତ ଥିଲାବୋଲି ଅନେକେ ଅନୁମାନକରନ୍ତି ।

ତା ଛଡ଼ା କେତେକ ପଶୁ, ବୃକ୍ଷ ଓ ପ୍ରସ୍ତରଙ୍କୁ ମଧ୍ୟ ଲୋକେ ଦେବତା ବୋଲି ବା ପ୍ରେତାତ୍ମାଦ୍ୱାରା ଅଧିଷ୍ଠିତ ବୋଲି ପୂଜା କରୁଥିଲେ ।

**ସାଧାରଣ ଜନମଙ୍ଗଳ କାର୍ଯ୍ୟ**—ସିନ୍ଧୁ ସଭ୍ୟତା ଯୁଗରେ ସାଧାରଣ ଜନହିତକର କାର୍ଯ୍ୟପ୍ରତି ବିଶେଷ ଦୃଷ୍ଟି ଦିଆ ହେଉଥିଲା । ଏହାର ଜ୍ୱଳନ୍ତ ଉଦାହରଣ ହେଉଛି ମହେଞ୍ଜୋଦାରୋର ଭୂଗର୍ଭରୁ ଉଦ୍ଧାର କରାଯାଇଥିବା ସୁପ୍ରଶସ୍ତ ସାଧାରଣ ସ୍ନାନାଗାର । ଏହାର



ସ୍ନାନାଗାର

ଦୈର୍ଘ୍ୟ ପ୍ରାୟ ୫୫ ମିଟର ଓ ପ୍ରସ୍ଥପ୍ରାୟ ୩୩ ମିଟର । ଏହି ସ୍ନାନସ୍ଥଳୀର ମଧ୍ୟ ଭାଗରେ ଏକ ଚତୁଷ୍କୋଣାକୃତି ମୁକ୍ତ ପ୍ରାଙ୍ଗଣ ଏବଂ ପ୍ରାଙ୍ଗଣମଧ୍ୟରେ ଏକ ସୁପ୍ରଶସ୍ତ ଜଳାଶୟ ବିଦ୍ୟମାନ ଥିଲା । ସର୍ବସାଧାରଣ ଉକ୍ତ ସରୋବରରେ ସନ୍ତରଣକରି ଚିତ୍ତବିନୋଦନ କରୁଥିବାର ଅନୁମିତ ହୁଏ । ସରୋବରର ଚତୁଃପାର୍ଶ୍ୱରେ ସୁନ୍ଦର ସୁନ୍ଦର ସ୍ନାନକକ୍ଷ ଓ ଗ୍ୟାଲେରୀଶ୍ରେଣୀ ନିର୍ମିତ ହୋଇଥିଲା । ସରୋବରର ଦୈର୍ଘ୍ୟ ଥିଲା

୧୨ ମିଟର,ପ୍ରସ୍ଥ ୭ ମିଟର ଓ ଗଭୀରତା ୨½ ମିଟର । ତାହାର ଦୁଇ ପାର୍ଶ୍ୱରେ ପାବଛଶ୍ରେଣୀ ନିର୍ମିତ ହୋଇଥିଲା । ଏକ ପ୍ରଶସ୍ତ କକ୍ଷାନ୍ତର୍ଗତ ଗଭୀର କୂପରୁ ସରୋବର ମଧ୍ୟକୁ ଜଳ ପ୍ରବେଶର ପଥ ପ୍ରସ୍ତୁତ ହୋଇଥିଲା । ଜଳ ନିଷ୍କାସନ ନିମନ୍ତେ ନର୍ଦ୍ଦମାର ବ୍ୟବସ୍ଥା ଥିଲା । ଉକ୍ତ ନର୍ଦ୍ଦମାର ଉଚ୍ଚତା ପ୍ରାୟ ୨ ମିଟର ଥିଲା । ନର୍ଦ୍ଦମାର ଉପରସ୍ଥ ଛାତ ଅତି ସୁଦୃଢ଼ ଭାବରେ ନିର୍ମିତ ହୋଇଥିଲା ।

ମହେଞ୍ଜୋଦାରୋ ନଗରୀର ଧ୍ୱଂସାବଶେଷ ମଧ୍ୟରେ କେତେ-ଗୁଡ଼ିଏ ଅଟ୍ଟାଳିକା ଗୃହ ପରିଲକ୍ଷିତ ହୁଏ । ତନ୍ମଧ୍ୟରେ ସ୍ତମ୍ଭମାଳା-ଶୋଭିତ ପ୍ରଶସ୍ତ ହଲ୍‌ଗୁଡ଼ିକ ଶୋଭାପାଉଥିଲା । କି ଉଦ୍ଦେଶ୍ୟରେ ଉକ୍ତ ପ୍ରକାଣ୍ଡ ହର୍ମ୍ୟଗୁଡ଼ିକ ନିର୍ମିତ ହୋଇଥିଲା ତାହା ନିର୍ଦ୍ଧାରଣ କରିବା ସହଜ ନୁହେଁ । କେହି କେହି ଅନୁମାନ କରନ୍ତି, ସେଗୁଡ଼ିକ ଆଧୁନିକ ମ୍ୟୁନିସିପାଲ ହଲ ଭଳି ବ୍ୟବହୃତ ହେଉଥିଲା । ଉକ୍ତ ହଲମାନଙ୍କ ମଧ୍ୟରୁ ଗୋଟିକର ଦୈର୍ଘ୍ୟ ୨୪ ମିଟର ଓ ପ୍ରସ୍ଥ ୨୪ ମିଟର । ନଗରୀମଧ୍ୟସ୍ଥ ଅନ୍ୟ କେତେକ ପ୍ରକାଣ୍ଡ କୋଠାଘର ଶସ୍ୟାଗାର ଥିବାର ଅନୁମିତ ହୁଏ ।

ସିନ୍ଧୁସଭ୍ୟତା ଯୁଗର ଲୋକେ ନଗରମାନଙ୍କରେ ବାସ କରିବାକୁ ଭଲ ପାଉଥିଲେ । ସେମାନଙ୍କର ନାଗରିକ ଜୀବନ ଉନ୍ନତ ଧରଣର ଥିଲା । ନଗର ମଧ୍ୟରେ ବଡ଼ ବଡ଼ ରାସ୍ତା ଓ ରାସ୍ତାପାର୍ଶ୍ୱରେ ଜଳ ନିଷ୍କାସନ ପ୍ରଣାଳୀମାନ ନିର୍ମିତ ହୋଇଥିଲା । ରାସ୍ତାପାର୍ଶ୍ୱରେ ସ୍ଥାନେ ସ୍ଥାନେ ଆବର୍ଜନା ଗର୍ତ୍ତମାନ ପରିଦୃଷ୍ଟ ହୁଏ । ଜଳନିଷ୍କାସନ ପ୍ରଣାଳୀଗୁଡ଼ିକ ଉନ୍ମୁକ୍ତ ନ ଥାଇ ଆବୃତ ଥିବାରୁ ତହିଁରୁ ଦୁର୍ଗନ୍ଧ ବାହାରି ସାଧାରଣ ସ୍ୱାସ୍ଥ୍ୟ ନଷ୍ଟ କରିବାର ଆଶଙ୍କା ନ ଥିଲା । ଜନ-ସାଧାରଣଙ୍କ ମଙ୍ଗଳ ପାଇଁ ଏତାଦୃଶ ବ୍ୟବସ୍ଥା ସେଯୁଗରେ ଅନ୍ୟତ୍ର ବିରଳ ଥିଲା କହିଲେ ଚଳେ । ପ୍ରାଚୀନ ମିଶର ଓ ମେସୋପୋଟେ-

ମିଆରେ ସୁରମ୍ୟ ରାଜପ୍ରାସାଦ, ଅପୂର୍ବ ସମାଧିମନ୍ଦିର ଓ ମନୋରମ ଦେବାଳୟମାନ ବହୁ ଅର୍ଥବ୍ୟୟରେ ନିର୍ମିତ ହୋଇଥିଲା ସତ୍ୟ, ମାତ୍ର ସର୍ବସାଧାରଣଙ୍କ ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ସମୁଚିତ ଦୃଷ୍ଟି ଦିଆଯାଉନଥିଲା । ଏ ବିଷୟରେ ସିନ୍ଧୁସଭ୍ୟତା ଥିଲା ଆଦର୍ଶସ୍ଥାନୀୟ । ସିନ୍ଧୁ ଉପତ୍ୟକାରେ ସାଧାରଣ ଲୋକଙ୍କ ସୁଖସୁବିଧା ପାଇଁ ବିସ୍ତୃତ ସ୍ନାନାଗାର, ପ୍ରଶସ୍ତ ରାଜପଥ ଓ ସୁପରିକଳ୍ପିତ ଗୃହମାନ ନିର୍ମିତ ହୋଇଥିଲା ।

**ନଗର ସଂଗଠନ:**—ସିନ୍ଧୁସଭ୍ୟତା ଯୁଗର ସଂଗଠନ ଏକ ଉଲ୍ଲେଖଯୋଗ୍ୟ ବିଷୟ । ନଗର ସଂଗଠନ ପ୍ରତି ସେତେବେଳେ ଅତି ସତର୍କ ଦୃଷ୍ଟି ଦିଆଯାଉଥିଲା । ସୁପରିକଳ୍ପିତ ଯୋଜନା ଅନୁଯାୟୀ ନଗର ନିର୍ମାଣ କରାଯାଉଥିଲା । ଜନସାଧାରଣଙ୍କ ସ୍ୱାସ୍ଥ୍ୟରକ୍ଷା ଓ ସୁଖ-ସ୍ୱାଚ୍ଛନ୍ଦ୍ୟ ବିଧାନ ନଗରଯୋଜନାର ମୂଳମନ୍ତ୍ର ଥିଲା । ନଗର ମଧ୍ୟସ୍ଥ ପ୍ରତି ବାସଭବନରେ କୂପ, ସ୍ନାନାଗାର ଓ ନର୍ଦ୍ଦମାର ବ୍ୟବସ୍ଥା ଥିଲା । ପ୍ରକାଣ୍ଡ ହର୍ମ୍ୟଠାରୁ ଆରମ୍ଭ କରି ସାଧାରଣ ଗୃହସ୍ଥର ବାସଭବନ ପର୍ଯ୍ୟନ୍ତ ସମସ୍ତ ଥିଲା ଇଷ୍ଟକନିର୍ମିତ । ସହରର ରାସ୍ତାଗୁଡ଼ିକ ସରଳ ଓ ପ୍ରଶସ୍ତ ଥିବାରୁ ଯାତାୟାତର ବିଶେଷ ସୁବିଧା ହେଉଥିଲା । ନଗରର ଉପକଣ୍ଠରେ ସୁଦୃଢ଼ ଦୁର୍ଗ ଅବସ୍ଥିତ ଥିଲା । ନଗରର ନିରାପତ୍ତା ରକ୍ଷାପାଇଁ ଉକ୍ତ ବ୍ୟବସ୍ଥା ଅବଲମ୍ବନ କରାଯାଉଥିଲା । ସେ ଯୁଗର ରାଜନୈତିକ ଅବସ୍ଥା ଓ ଶାସନ ପ୍ରଣାଳୀ ସମ୍ବନ୍ଧରେ ଅଦ୍ୟାବଧି କୌଣସି ସୂଚନା ମିଳିନାହିଁ । ସେ କାଳର କୌଣସି ଲିଖିତ ଗ୍ରନ୍ଥ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । କେବଳ ସିଲ୍ ମୋହରମାନଙ୍କରୁ ପ୍ରମାଣ ମିଳେ ଯେ ସେତେବେଳେ ଏକପ୍ରକାର ଛବିଲିପି ପ୍ରଚଳିତ ଥିଲା । ଉକ୍ତ ଛବିଲିପିର ଲେଖା ମଧ୍ୟ ଅଦ୍ୟାବଧି ସନ୍ତୋଷଜନକ ଭାବରେ ପଠିତ ହୋଇପାରିନାହିଁ ତେଣୁ ସିନ୍ଧୁ ସଭ୍ୟତାର ଇତିହାସ ଆଜିସୁଦ୍ଧା ଅନେକ ପରିମାଣରେ

ତମସାଚ୍ଛନ୍ନ । ତଥାପି ଏପର୍ଯ୍ୟନ୍ତ ଯାହା କିଛି ଆବିଷ୍କୃତ ହୋଇଅଛି, ସେଥିରୁ ଏହା ଅକ୍ଳେଶରେ ଅନୁମିତ ହୁଏ ଯେ, ସେହି ସୁପ୍ରାଚୀନ ଯୁଗରେ ସୁଦ୍ଧା ସୁଚିନ୍ତିତ ଯୋଜନାନୁଯାୟୀ ନଗର ନିର୍ମାଣ କରା-ହୋଇଥିଲା ।

**ପ୍ରାଚୀନ ଗ୍ରୀକ୍ ଓ ରୋମାନ ସଭ୍ୟତା:**—ପ୍ରାଚୀନ ଇଉରୋପରେ ଗ୍ରୀକ୍ ଓ ରୋମାନ ସଭ୍ୟତା ନାମକ ଦୁଇଟି ସଭ୍ୟତା ବିଭିନ୍ନ ସମୟରେ ବିକାଶଲାଭ କରିଥିଲା । ଏହି ଦୁଇଟି ସଭ୍ୟତା ଆର୍ଯ୍ୟ ସଭ୍ୟତାର ଅନ୍ତର୍ଗତ । ପ୍ରାଚୀନ ଗ୍ରୀକ୍ ଓ ରୋମାନମାନେ ଆର୍ଯ୍ୟଜାତିର ଲୋକ । ମୂଳ ଆର୍ଯ୍ୟଜାତି ନାନା ଶାଖାରେ ବିଭକ୍ତ ହୋଇ ବିଭିନ୍ନ ଆଡ଼କୁ ଯାଇଥିଲେ । ତନ୍ମଧ୍ୟରୁ ଦୁଇଟି ଶାଖା ଗ୍ରୀସ୍ ଓ ରୋମରେ ଯାଇ ଆବିର୍ଭୂତ ହୋଇଥିଲେ ।

**ଗ୍ରୀକ୍ ଜାତି:**—ଖ୍ରୀଷ୍ଟ ଜନ୍ମର ଦୁଇ ହଜାରରୁ ଦେଢ଼ ହଜାର ବର୍ଷ ମଧ୍ୟରେ ଆର୍ଯ୍ୟମାନେ ଏସିଆଖଣ୍ଡରୁ ଯାଇ ଗ୍ରୀସ୍ ଆକ୍ରମଣ କରିଥିଲେ । ଗ୍ରୀସ୍ ଜୟ କରି କାଳକ୍ରମେ ସେମାନେ ଏସିଆ ମାଇନର, ଦକ୍ଷିଣ ଇଟାଲି ଓ ସିସିଲି ଆଡ଼କୁ ଅଗ୍ରସର ହୋଇ ସେ ସମସ୍ତ ଅଞ୍ଚଳ ଉପରେ ପ୍ରଭୁତ୍ୱ ବିସ୍ତାର କରିଥିଲେ । ପ୍ରଥମେ ଗ୍ରୀକ୍‌ମାନେ ଯାଯାବର ପଶୁପାଳକ ଶ୍ରେଣୀର ଲୋକ ଥିଲେ । ପରେ ସେମାନେ କୃଷିବୃତ୍ତି ଅବଲମ୍ବନ କରି ନାନା ଦଳରେ ବିଭକ୍ତ ହୋଇ ପଡ଼ିଥିଲେ । ପ୍ରତ୍ୟେକ ଦଳ ଜଣେ ଜଣେ ରାଜା ବା ଦଳପତିଙ୍କ ଦ୍ୱାରା ଶାସିତ ହେଉଥିଲା । କିଛିକାଳ ପରେ ଗ୍ରୀକ୍‌ମାନେ ଅନେକଗୁଡ଼ିଏ ନଗର-ରାଜ୍ୟ ସ୍ଥାପନ କରିଥିଲେ । ସମଗ୍ର ଗ୍ରୀସ୍ ସ୍ୱାଧୀନ ସ୍ୱତନ୍ତ୍ର ନଗର-ରାଜ୍ୟମାନଙ୍କରେ ବିଭକ୍ତ ହୋଇ ପଡ଼ିଥିଲା । ପ୍ରଥମେ ଗ୍ରୀକ୍‌ମାନେ Hellenes ନାମରେ ପରିଚିତ ଥିଲେ । ଏହି ପ୍ରାଚୀନ ହେଲେନ୍ ଜାତିର କଥା ଦୁଇଟି ମହାକାବ୍ୟରେ ବର୍ଣ୍ଣିତ ହୋଇଅଛି । ଗୋଟିକର

ନାମ ଇଲିଆଡ଼ (Iliad) ଓ ଅନ୍ୟଟିର ନାମ ଅଡ଼ିଶୀ (Odyssey) । ଉଭୟ ଗ୍ରନ୍ଥ କବି ହୋମରଙ୍କ ଦ୍ୱାରା ରଚିତ । ଆମ ଦେଶର ବାଲ୍ମୀକି ଓ ବ୍ୟାସଙ୍କ ପରି ହୋମର ଗ୍ରୀସ୍ ଦେଶର ମହାକବି । ଇଲିଆଡ଼ ରାମାୟଣ ଭଳି ଏକ ଗ୍ରନ୍ଥ । ହେଲେନ ନାମ୍ନୀ ଏକ ସୁନ୍ଦରୀ ରମଣୀଙ୍କୁ ଏସିଆମାଇନର ଅନ୍ତର୍ଗତ ଟ୍ରୟ ନାମକ ଏକ ରାଜ୍ୟର ପାରିସ ନାମଧେୟ ଜନୈକ ବ୍ୟକ୍ତି କପରି ଅପହରଣ କରି ନେଇଥିଲେ ଓ ହେଲେନଙ୍କ ମୁକ୍ତି ପାଇଁ କପରି ଯୁଦ୍ଧ ଲାଗିଥିଲା ତାହା କବି ହୋମରଙ୍କ ଇଲିଆଡ଼ ମହାକାବ୍ୟରେ ବର୍ଣ୍ଣିତ ହୋଇଅଛି । ଅଡ଼ିଶୀକାବ୍ୟ ଗ୍ରୀକ୍ ବୀର ଅଡ଼ିସିୟୁସ୍ (Odysseus) ଙ୍କ ବୀରତ୍ୱ କାହାଣୀ ।

**ଗ୍ରୀସ୍‌ର ନଗର ରାଜ୍ୟସମୂହ**—ପ୍ରଥମେ ଗ୍ରୀକ୍‌ମାନେ ବିଭିନ୍ନ ଦଳରେ ବିଭକ୍ତ ଥିଲେ । ଗୋଟିଏ ଗୋଟିଏ ଦଳ ଗୋଟିଏ ଗୋଟିଏ ଗ୍ରାମରେ ବାସ କରୁଥିଲେ । କାଳକ୍ରମେ କେତେଗୁଡ଼ିଏ ଗ୍ରାମ ମିଶି ଗୋଟିଏ ଗୋଟିଏ ନଗରରେ ପରିଣତ ହେଲା । ଏହିପରି ଭାବରେ ଅନେକଗୁଡ଼ିଏ ନଗର-ରାଜ୍ୟର ସୃଷ୍ଟି ହେଲା । ପାହାଡ଼, ପର୍ବତ ଓ ସମୁଦ୍ରଦ୍ୱାରା ପରସ୍ପର ପରସ୍ପରଠାରୁ ବିଚ୍ଛିନ୍ନ ରହି ସେଗୁଡ଼ିକ ସ୍ୱତନ୍ତ୍ର ଶାସିତ ହେଉଥିଲେ । ଉକ୍ତ ନଗର-ରାଜ୍ୟମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ଏଥେନସ୍, ସ୍ପାର୍ଟା, ଥିବ୍‌ସ୍, କରିନ୍ଥ ପ୍ରଭୃତି । ପ୍ରତ୍ୟେକ ନଗର ରାଜ୍ୟରେ ଗୋଟିଏ ଲେଖାଏଁ "କାଉନସିଲ" ବା ସଭା ଥିଲା । କାଉନସିଲ୍ ଛଡ଼ା ଆଉ ଗୋଟିଏ ଅନୁଷ୍ଠାନ ମଧ୍ୟ ପ୍ରତ୍ୟେକ ନଗର ରାଜ୍ୟରେ ପ୍ରତିଷ୍ଠିତ ଥିଲା । ତାହାର ନାମ "ଆସେମ୍ବ୍ଲି" । କାଉନସିଲ୍‌ରେ କେବଳ ଧନୀ ସମ୍ଭ୍ରାନ୍ତ ବଂଶୀୟ ଲୋକମାନେ ସ୍ଥାନ ପାଉଥିଲେ । ସେମାନଙ୍କୁ ଇଉପେଟ୍ରିଡ଼ (Eupatrid ) ବୋଲି କୁହାହେଉଥିଲା । ସେମାନେ ବଡ଼ ଅତ୍ୟାଚାରୀ ଥିଲେ । ଆସେମ୍ବ୍ଲି ବା ଲୋକପରିଷଦରେ କେବଳ ଦରିଦ୍ର ଶ୍ରେଣୀର ଲୋକମାନେ ସ୍ଥାନ

ପାଉଥିଲେ । ଉଭୟ ସଭାମଧ୍ୟରୁ କାଉନସିଲ୍ ଥିଲା ଅଧିକ କ୍ଷମତାଶାଳୀ । ପରେ ଆସେମ୍ବ୍ଲିର କ୍ଷମତା କ୍ରମଶଃ ବୃଦ୍ଧି ଲାଭ କରିଥିଲା ।

ପ୍ରତ୍ୟେକ ନଗର ରାଜ୍ୟର କେନ୍ଦ୍ର ସ୍ଥଳରେ ଥିଲା ରାଜାଙ୍କର ଗଡ଼ ବା ଏକ୍ରୋପଲିସ୍ (Acropolis) । ତାହା ଏକ ଉଚ୍ଚ ସ୍ଥାନରେ ଅବସ୍ଥିତ ଥିଲା । ନିମ୍ନଦେଶରେ ସାଧାରଣ ଲୋକଙ୍କର ଗୃହ ଓ ଶସ୍ୟକ୍ଷେତ୍ର ପ୍ରଭୃତି ଥିଲା । ରାଜା ଓ କାଉନସିଲ୍ ନଗରର କ୍ରୟ-ବିକ୍ରୟ ସ୍ଥଳୀରେ (Market-place) ଲୋକଙ୍କର ବିବାଦ ନିଷ୍ପତ୍ତି କରୁଥିଲେ । କାଳକ୍ରମେ ରାଜାଙ୍କର କ୍ଷମତା ଲୋପ ପାଇଲା । ଖ୍ରୀଷ୍ଟପୂର୍ବ ୭୫୦ ରୁ ୬୫୦ ମଧ୍ୟରେ ଗ୍ରୀସ୍‌ର ନଗର ରାଜ୍ୟମାନଙ୍କରୁ ରାଜପଦ ଉଠିଗଲା । ରାଜ୍ୟଗୁଡ଼ିକ କ୍ଷୁଦ୍ର କ୍ଷୁଦ୍ର ଗଣତନ୍ତ୍ରରେ ପରିଣତ ହେଲେ । ରାଜ୍ୟଶାସନ ଧନୀଶ୍ରେଣୀର ଲୋକଙ୍କ ହାତରେ ରହିଲା । ଶାସନ କ୍ଷେତ୍ରରେ ସାଧାରଣ ନାଗରିକଙ୍କର କୌଣସି କ୍ଷମତା ବା ଅଧିକାର ରହିଲା ନାହିଁ । ପ୍ରତି ରାଜ୍ୟରେ ଅନେକ ଦାସ ଶ୍ରେଣୀର ଲୋକ ବାସ କରୁଥିଲେ । ସେମାନଙ୍କର କୌଣସି ପ୍ରକାର ରାଜନୈତିକ ଅଧିକାର ନ ଥିଲା । ସ୍ତ୍ରୀ ଲୋକମାନେ ମଧ୍ୟ ଉକ୍ତ ଅଧିକାରରୁ ବଞ୍ଚିତ ଥିଲେ ।

ଗ୍ରୀସ୍‌ର ନଗର ରାଜ୍ୟମାନଙ୍କ ମଧ୍ୟରେ ଏକତାର ଏକାନ୍ତ ଅଭାବ ଥିଲା । ସମସ୍ତ ରାଜ୍ୟ ସ୍ୱତନ୍ତ୍ର ଓ ସ୍ୱାଧୀନ ଥିବାରୁ ଏବଂ ଅନେକ ସମୟରେ ସେମାନଙ୍କ ମଧ୍ୟରେ କଳହ ଲାଗି ରହିଥିବାରୁ ସାମ୍ରାଜ୍ୟ ଗଠନ ପାଇଁ ସମ୍ମିଳିତ ଚେଷ୍ଟା ହୋଇପାରୁ ନ ଥିଲା । ତଥାପି ଗ୍ରୀକ୍ ରାଜ୍ୟଗୁଡ଼ିକ ମଧ୍ୟରେ କେତେଗୁଡ଼ିଏ ସାଧାରଣ ଯୋଗସୂତ୍ର ବିଦ୍ୟମାନ ଥିଲା । ସମସ୍ତ ଗ୍ରୀକ୍ ରାଜ୍ୟର ଲୋକ ଥିଲେ ଏକଭାଷାଭାଷୀ । ସମସ୍ତଙ୍କର ଧର୍ମ ଓ ସଂସ୍କୃତି ସମାନ ଥିଲା । କବି ହୋମରଙ୍କୁ ସମସ୍ତେ ଜାତୀୟ କବି ବୋଲି ମନେ କରୁଥିଲେ ଏବଂ ହୋମରଙ୍କ

ରଚନାବଳୀ ସମସ୍ତଙ୍କୁ ସମାନ ଭାବରେ ଅନୁପ୍ରାଣିତ କରୁଥିଲା । ଗ୍ରୀକ୍‌ମାନେ ବିଶ୍ୱାସ କରୁଥିଲେ ଯେ, ନିଜ ଜାତିର ଲୋକଙ୍କ ବ୍ୟତୀତ ଅନ୍ୟ ସମସ୍ତେ ବର୍ବର ଶ୍ରେଣୀର ଲୋକ ଏବଂ ଏହି ଧାରଣା ସେମାନଙ୍କ ପ୍ରାଣରେ ଏକ ପ୍ରକାର ଜାତୀୟ ଚେତନା ଜାଗ୍ରତ କରୁଥିଲା । ବିଭିନ୍ନ ଗ୍ରୀକ୍ ରାଜ୍ୟର ଲୋକେ ଗ୍ରୀସ୍ ଅନ୍ତର୍ଗତ ଅଲିମ୍ପିୟା ନାମକ ସ୍ଥାନରେ ଏକତ୍ର ହୋଇ କ୍ରୀଡ଼ା ପ୍ରତିଯୋଗିତାରେ ଯୋଗ ଦେଉଥିଲେ । ଏହାଦ୍ୱାରା ଏକ ଐକ୍ୟବନ୍ଧନର ସୃଷ୍ଟି ହେଉଥିଲା । ଏତଦ୍‌ବ୍ୟତୀତ ସମୟ ସମୟରେ ପାରସିକ ଆକ୍ରମଣ ଭଳି ବହିଃଶତ୍ରୁର ଆକ୍ରମଣ ଯୋଗୁଁ ସେମାନଙ୍କୁ ଏକତାବଦ୍ଧ ହେବାକୁ ପଡୁଥିଲା । ଡେଲଫି ନାମକ ସ୍ଥାନରେ ଅବସ୍ଥିତ ଏପୋଲୋ (Apollo) ଦେବତାଙ୍କ ପୀଠକୁ ଗ୍ରୀକ୍‌ଜାତିର ଲୋକ ଜାତୀୟ ପୂଜାପୀଠରୂପେ ଗ୍ରହଣ କରିଥିଲେ ଏବଂ ଡେଲଫିର ଧର୍ମ ସଭାରେ ସମସ୍ତ ଗ୍ରୀକ୍ ନଗର-ରାଜ୍ୟର ପ୍ରତିନିଧିମାନେ ଯୋଗ ଦେଉଥିଲେ ।

**ସ୍ପାର୍ଟା ଓ ଏଥେନ୍‌ସ:**—ନଗର ରାଜ୍ୟମାନଙ୍କ ମଧ୍ୟରେ ସ୍ପାର୍ଟା ଓ ଏଥେନ୍‌ସ୍‌ର ନାମ ବିଶେଷ ଉଲ୍ଲେଖଯୋଗ୍ୟ । ସ୍ପାର୍ଟାର ସଂସ୍କୃତି ଏଥେନ୍‌ସ୍‌ର ସଂସ୍କୃତିଠାରୁ ଭିନ୍ନ ଥିଲା । ଶାରୀରିକ ଉନ୍ନତି ସାଧନଦ୍ୱାରା ରାଜ୍ୟରେ ସେବାକରିବା ଥିଲା ସ୍ପାର୍ଟା-ସଂସ୍କୃତିର ଲକ୍ଷ୍ୟ । ତେଣୁ ଉକ୍ତ ରାଜ୍ୟରେ ନାଗରିକମାନଙ୍କର ଶାରୀରିକ ବଳବୃଦ୍ଧି ଓ ସୁସ୍ଥ ଶରୀର ଗଠନ ପ୍ରତି ବିଶେଷ ଦୃଷ୍ଟି ଦିଆଯାଉଥିଲା । ଶିଶୁର ଜନ୍ମ ପରେ ତାକୁ ପରୀକ୍ଷାକରି ଦେଖାଯାଉଥିଲା, ସେ ସୁସ୍ଥ ସବଳ କି ନା; ଶିଶୁ ଦୁର୍ବଳ ଥିଲେ ତାହାକୁ ନଷ୍ଟକରି ଦିଆଯାଉଥିଲା । ସାତବର୍ଷ ବୟସର ପିଲାମାନଙ୍କୁ ଗୃହରୁ ନେଇ ଶିକ୍ଷା ଶିବିରରେ ରଖା ହେଉଥିଲା । ସେଠାରେ ସେମାନଙ୍କୁ କଠୋର ଜୀବନଯାପନ କରିବାକୁ ପଡୁଥିଲା । ସେମାନେ ଯୁଦ୍ଧ ବିଦ୍ୟାରେ ସୁଶିକ୍ଷିତ ହେଉଥିଲେ ।

କୋଡ଼ିଏ ବର୍ଷ ବୟସରେ ସ୍ପାର୍ଟାର ଯୁବକଙ୍କୁ ସୈନ୍ୟଶ୍ରେଣୀଭୁକ୍ତ ହୋଇ ଦୀର୍ଘକାଳ ସୈନ୍ୟନିବାସରେ ରହିବାକୁ ପଡ଼ୁଥିଲା । ବାଳିକାମାନେ ମଧ୍ୟ ବାଳକମାନଙ୍କ ପରି କଠୋର ଶାରୀରିକ ଶିକ୍ଷା ଲାଭ କରୁଥିଲେ । ତାହା ଫଳରେ ସ୍ପାର୍ଟାର ରମଣୀମାନେ ବୀରାଙ୍ଗନାରେ ପରିଣତ ହେଉଥିଲେ । ସ୍ପାର୍ଟାର ସୈନିକମାନେ ବୀର, ସାହସୀ ଓ ରଣକୁଶଳ ଥିଲେ । ମାତ୍ର ସାହିତ୍ୟ,ଦର୍ଶନ,ସଙ୍ଗୀତକଳା ଓ ଚିତ୍ରବିଦ୍ୟା ପ୍ରଭୃତିର ଅନୁଶୀଳନ ଅବହେଳିତ ହେଉଥିଲା ।

ପକ୍ଷାନ୍ତରରେ ଏଥେନ୍ସ ରାଜ୍ୟ ସୂକ୍ଷ୍ମକଳାର ବିକାଶ ଲାଗି ପ୍ରସିଦ୍ଧ ଥିଲା । ଏଥେନ୍ସବାସୀମାନେ ମାନସିକ ଉନ୍ନତି ପ୍ରତି ଅଧିକ ଦୃଷ୍ଟି ଦେଉଥିଲେ । ସାହିତ୍ୟ, ସଙ୍ଗୀତ, ବିଜ୍ଞାନ, ଦର୍ଶନ,ଇତିହାସ, ଚିତ୍ରକଳା, ସ୍ଥାପତ୍ୟ ପ୍ରଭୃତି ନାନା ସାଂସ୍କୃତିକ ବିଭାଗରେ ଏଥେନ୍ସ୍ ରାଜ୍ୟ ଅପୂର୍ବ ଉନ୍ନତି ସାଧନ କରିଥିଲା । ସ୍ୱାଧୀନ ଚିନ୍ତାଧାରାଉପରେ ପ୍ରତିଷ୍ଠିତ ଗଣତନ୍ତ୍ର ଶାସନ ପ୍ରଣାଳୀର ଉଦ୍ଭାବନ ଥିଲା ଏଥେନ୍ସର ବିଶେଷତ୍ୱ । ଡ୍ରେକୋ,ସୋଲୋନ, ପେରିକ୍ଲସଙ୍କ ପରି ବିଚକ୍ଷଣ ଲୋକେ ରାଜନୀତିକ୍ଷେତ୍ରରେ ପ୍ରଶଂସନୀୟ ଦକ୍ଷତା ପ୍ରକାଶ କରିଯାଇଛନ୍ତି । ସକ୍ରେଟିସ,ପ୍ଲେଟୋ ଏବଂ ଏରିଷ୍ଟଟଲ ଦାର୍ଶନିକ ଭାବରେ ଅଦ୍ୟାବଧି ସ୍ମରଣୀୟ ହୋଇ ରହିଛନ୍ତି । ସାହିତ୍ୟଜଗତରେ ନାଟ୍ୟକାର ଏସ୍କିଲସ୍ (Aeschyles), ସଫୋକ୍ଲିସ୍ (Sophocles), ଇଉରିପାଇଡ଼ିସ ( Euripides ) ଓ ଏରିଷ୍ଟୋଫେନିସ୍ ( Aristophanes ) ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ହିରୋଡୋଟସ୍ ( Herodotus ) ଓ ଥ୍ୟୁସିଡ଼ାଇଡେସ (Thucydides) ଐତିହାସିକ ଭାବରେ ଜଗତପ୍ରସିଦ୍ଧ ।

**ପ୍ରାଚୀନ ଗ୍ରୀସ୍‌ର କଳା ଓ ସ୍ଥାପତ୍ୟ**—କଳା ଓ ସ୍ଥାପତ୍ୟ ଦିଗରେ ଗ୍ରୀସ୍‌ବାସୀ ଉନ୍ନତିର ଉଚ୍ଚକୋଟୀରେ ଆରୋହଣ

କରିପାରିଥିଲେ । ଏହି ଉନ୍ନତି ମୁଖ୍ୟତଃ ଏଥେନ୍‌ସ୍‌ର ଅବଦାନ । ଏଥେନ୍‌ସର ପ୍ରସିଦ୍ଧ ଶାସକ ପେରିକ୍ଲସଙ୍କ ଅମଳରେ କଳା ଓ ସ୍ଥାପତ୍ୟର ପରମ ଉତ୍କର୍ଷସାଧିତ ହୋଇଥିଲା । ପେରିକ୍ଲସ ୩୦ ବର୍ଷ କାଳ ଅପୂର୍ବ ଦକ୍ଷତା ସହିତ ରାଜ୍ୟ ଶାସନ କରିଥିଲେ । ଏହି ସମୟକୁ ଗ୍ରୀକ୍ ଇତିହାସର ଏକ "ସୁବର୍ଣ୍ଣ-ଯୁଗ" ବୋଲି ଧରାଯାଏ । ପୂର୍ବରୁ ଏଥେନ୍‌ସ୍ ନଗରୀର ଏକ୍ରୋପୋଲିସ୍ (Acro-polis ) ଶୈଳ ଶିଖରରେ ଯେଉଁସବୁ ଦେବାଳୟ ଥିଲା ତାହା ପାରସିକ ଆକ୍ରମଣ ସମୟରେ ଧ୍ୱଂସପ୍ରାପ୍ତ ହୋଇଥିଲା । ପାରସିକ ମାନଙ୍କ ପରାଜୟ ପରେ ପେରିକ୍ଲସ ସେ 'ଗୁଡ଼ିକ ସ୍ଥାନରେ ନୂତନ ସୁରମ୍ୟ



ମନ୍ଦିର ନିର୍ମାଣ କରିଥିଲେ । ତନ୍ମଧ୍ୟରୁ ଏକ୍ରୋପୋଲିସ୍ ଶୈଳର ଦକ୍ଷିଣପାର୍ଶ୍ୱରେ ଅବସ୍ଥିତ ଦେବୀ ଏଥିନାଙ୍କ ମନ୍ଦିର "ପାର୍ଥେନନ" (Parthenon) ର ଦୃଶ୍ୟ ଅତୀବ ମନୋହର ଇକ୍‌ଟିନ୍‌ସ (Ictinus) ନାମକ ଶିଳ୍ପୀ ଏହାର ନିର୍ମାତା । ଏଥେନ୍‌ସର ସୁବିଖ୍ୟାତ ଶିଳ୍ପୀ ଫିଡ଼ିୟାସ୍ (Pheidias) ଉକ୍ତ ମନ୍ଦିର ନିର୍ମାଣରେ ତାଙ୍କୁ ସାହାଯ୍ୟ କରିଥିଲେ । ଉକ୍ତ ମନ୍ଦିରରେ ଅବସ୍ଥିତ ଦେବୀ

ଏଥିନାଙ୍କ ମନୋରମ ମୂର୍ତ୍ତି ଫଡ଼ିୟାସ୍‌ଙ୍କ ସ୍ୱହସ୍ତ ନିର୍ମିତ । ତା ଛଡ଼ା ସେ ଅଲିମ୍ପିଆଠାରେ ଜିୟୁସ୍ (Zeus) ନାମକ ଗ୍ରୀକ୍‌ଦେବତାଙ୍କ



ସୁରମ୍ୟ ମୂର୍ତ୍ତି ମଧ୍ୟ ଗଠନ କରିଥିଲେ । ଏକ୍ରୋପୋଲିସ୍ ଶୈଳର ପଶ୍ଚିମକୁ ଏକ ବିଜୟ ମନ୍ଦିର ଓ ଅନ୍ୟ ଏକ ପାର୍ଶ୍ୱରେ ଦେବୀ ଏଥିନାଙ୍କ ଅନ୍ୟତମ ପ୍ରକାଣ୍ଡ ବ୍ରୋଞ୍ଜମୂର୍ତ୍ତି ବିଦ୍ୟମାନ । ସୂର୍ଯ୍ୟରଶ୍ମି ସମ୍ପାତରେ ଏହି ଦେବୀ ମୂର୍ତ୍ତିର ଢ଼ାଲ ଓ ଶିରସ୍ତ୍ରାଣ ସମୁଦ୍ର ବକ୍ଷରେ ବହୁଦୂରରୁ ଜକ୍‌ଜକ୍ ଦେଖାଯାଏ । ପେରିକ୍ଲିସ ଯୁଗରେ ଚିତ୍ରକଳାର ମଧ୍ୟ ବିକାଶ ସାଧିତ ହୋଇଥିଲା । ଚିତ୍ରଗୁଡ଼ିକରେ ଦେବତା ଓ ବୀରପୁରୁଷମାନଙ୍କର ଗୌରବମୟ କୀର୍ତ୍ତି ସାଧାରଣତଃ ଚିତ୍ରିତ । କେବଳ ପେରିକ୍ଲିସ୍ ଯୁଗରେ ନୁହେଁ, ପରବର୍ତ୍ତୀ କାଳରେ ମଧ୍ୟ କେତେକ ଗ୍ରୀକ୍ ଶିଳ୍ପୀ ପ୍ରତିଷ୍ଠାଲାଭ କରିଥିଲେ । ସେମାନଙ୍କ ମଧ୍ୟରେ

ଶିଳ୍ପୀ ପ୍ରେକ୍ସିଟେଲିସ୍ (Praxiteles)ଙ୍କ ନାମ ଉଲ୍ଲେଖଯୋଗ୍ୟ । ଉକ୍ତ ଶିଳ୍ପୀଙ୍କ ନିର୍ମିତ ଶିଶୁ ଡାୟୋନିସସ୍ (Dionysus) ସହିତ କ୍ରୀଡ଼ାରତ ହାର୍ମିସ୍ (Hermes)ଙ୍କ ମୂର୍ତ୍ତି ଦେଖିବାକୁ ଅତି ମନୋହର । ପ୍ରେକ୍ସିଟେଲିସ୍ ଥିଲେ ଏଥେନ୍ସ-ବାସୀ । ମାତ୍ର ଗ୍ରୀକ୍ ଶିଳ୍ପ ସ୍ଥାପତ୍ୟର ଇତିହାସରେ କେବଳ ଏଥେନ୍ସର ନୁହେଁ, ରୋଡ଼ସ୍, କରିନ୍ଥ, ସାଇରାକ୍ୟୁଜ୍ ପ୍ରଭୃତି ରାଜ୍ୟର ଦାନ ମଧ୍ୟ ସ୍ମରଣୀୟ । ରୋଡ଼ସ ଠାରେ ଏକଦା (ପ୍ରାୟ ଖ୍ରୀ: ପୂ: ୨୮୦ ରେ) ୪୬ ମିଟର ଉଚ୍ଚତା ବିଶିଷ୍ଟ ପ୍ରକାଣ୍ଡ ବ୍ରୋଞ୍ଜ ମୂର୍ତ୍ତି ଅବସ୍ଥାପିତ ଥିଲା । ତାହା ସୂର୍ଯ୍ୟ ଦେବଙ୍କ ମୂର୍ତ୍ତି । କଥିତ ଅଛି, ଏହି ବିଶାଳ ମୂର୍ତ୍ତିର ଜଂଘାଦ୍ୱୟର ମଧ୍ୟବର୍ତ୍ତୀ ସମୁଦ୍ର ବକ୍ଷରେ ଜାହାଜମାନ ଯାତାୟାତ କରି ପାରୁଥିଲା । ଗ୍ରୀକ୍ ଶିଳ୍ପୀମାନଙ୍କ ଅଙ୍କିତ ମନୋହର ଚିତ୍ର ଅଦ୍ୟାବଧି କେତେକ ପ୍ରାଚୀନ ପାତ୍ର ଉପରେ ପରିଲକ୍ଷିତ ହୁଏ । ଜ୍ୟୁକ୍ସିସ୍ (Zeuxis) ନାମକ ଚିତ୍ରଶିଳ୍ପୀ ଗୋଟିଏ ପାତ୍ର ଉପରେ ଅଙ୍ଗୁରକୋଳି ଏପରି ଜୀବନ୍ତ ଭାବରେ ଚିତ୍ରଣ କରି ପାରିଥିଲେ ଯେ ଆକାଶଗାମୀ ପକ୍ଷୀମାନେ ଆସି ତାହାକୁ ପ୍ରକୃତ ଅଙ୍ଗୁରକୋଳି ବୋଲି ମନେକରି, ସେଥିରେ ଚଞ୍ଚୁ ଭେଦ କରିବାକୁ ଚେଷ୍ଟା କରୁଥିଲେ ।



**ପ୍ରାଚୀନ ଗ୍ରୀସ୍‌ର ବିଧିବ୍ୟବସ୍ଥା । (Law and justice):—** ଖ୍ରୀଷ୍ଟପୂର୍ବ ୬୨୪ରେ ପ୍ରଥମେ ଗ୍ରୀସ୍‌ଦେଶର ଏଥେନ୍‌ସ ରାଜ୍ୟରେ ବ୍ୟବସ୍ଥାଗ୍ରନ୍ଥ ବା ଆଇନପୁସ୍ତକ ଲିଖିତ ହେଲା । ଏହା ପୂର୍ବରୁ କେବଳ ମୌଖିକ ବିଧି ବ୍ୟବସ୍ଥାର ପ୍ରଚଳନ ଥିଲା । ଅନେକ ସମୟରେ ଏହାର ଅପବ୍ୟବହାର କରାହେଉଥିଲା । ଉତ୍କୋଚ ପ୍ରଦାନ କରି ଲୋକେ ପ୍ରଚଳିତ ବିଧିନିୟମକୁ ନିଜ ପକ୍ଷରେ ପ୍ରୟୋଗ କରାଇ ନେବାକୁ ସମର୍ଥ ହେଉଥିଲେ । ଡ୍ରେକୋ ନାମକ ଜଣେ ସମ୍ଭ୍ରାନ୍ତ ବ୍ୟକ୍ତି ପ୍ରଥମେ ପ୍ରଚଳିତ ନିୟମଗୁଡ଼ିକ ସଙ୍କଳନ କରି ଲିପିବଦ୍ଧ କରିଥିଲେ । ଏହା ଫଳରେ ଆଇନ ସମ୍ବନ୍ଧରେ ଲୋକଙ୍କର ଧାରଣା ଜନ୍ମିଥିଲା । ଡ୍ରେକୋଙ୍କ ବିଧିବ୍ୟବସ୍ଥା ବଡ଼ କଠୋର ଥିଲା । ମାତ୍ର ଦରିଦ୍ର ଲୋକମାନେ ସେଥିରୁ କୌଣସି ଉପକାର ଲାଭ କରିପାରି ନ ଥିଲେ । ସେମାନେ ଋଣ ଭାରରେ ପ୍ରପୀଡ଼ିତ ଥିଲେ । ଉକ୍ତ ଋଣ ଭାରରୁ ମୁକ୍ତିଲାଭ କରିବାର କୌଣସି ଉପାୟ ଡ୍ରେକୋଙ୍କ ବ୍ୟବସ୍ଥାରେ ନ ଥିଲା । ଖ୍ରୀ: ପୂ: ୫୯୪ରେ ସୋଲୋନ (Solon) ନାମକ ଜଣେ ବିଜ୍ଞ ବ୍ୟକ୍ତି ବିଧି ବ୍ୟବସ୍ଥାର ସଂସ୍କାର କରିବାକୁ ପ୍ରୟାସୀ ହେଲେ । ସେ ନାନାବିଧ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସଂସ୍କାର ପ୍ରଚଳନ କଲେ । ରାଜ୍ୟରେ ଯେତେ ଲୋକଙ୍କ ସମ୍ପତ୍ତିବାଡ଼ି ବନ୍ଧକ ପଡ଼ିଥିଲା, ସେ ସମସ୍ତ ବନ୍ଧକ ରଦ କରିଦେଲେ । ଯେଉଁମାନେ ଋଣ ଯୋଗୁଁ ଦାସତ୍ୱବନ୍ଧନରେ ଆବଦ୍ଧ ଥିଲେ । ସୋଲୋନ ସେମାନଙ୍କୁ ମୁକ୍ତ ଦେଲେ ଓ ରାଜକୋଷରୁ ଅର୍ଥ ବ୍ୟୟକରି ସେମାନଙ୍କର ଋଣ ପରିଶୋଧ କରିଦେଲେ । ସାମନ୍ତ ଶ୍ରେଣୀର ଲୋକେ କେତେ ଜମି ନିଜ ଅଧିକାରରେ ରଖିପାରିବେ ସେ ତାଙ୍କର ସୀମାଧାର୍ଯ୍ୟ କରିଦେଲେ । ଆଇନ ଅଦାଲତରେ କି ଧନୀ, କି ଦରିଦ୍ର, ସମସ୍ତେ ସମାନ ବୋଲି ସେ ଘୋଷଣା କଲେ । ରାଜ୍ୟରେ ଆଇନର ଶାସନ ପ୍ରତିଷ୍ଠିତ ହେଲା ।

**ପ୍ରାଚୀନ ଗ୍ରୀସ୍‌ର ଶାସନ**(Administration)—ଗ୍ରୀସ୍‌ର ନଗରରାଜ୍ୟଗୁଡ଼ିକ ରାଜପଦର ବିଲୋପ ପୂର୍ବରୁ କପରି ଶାସିତ ହେଉଥିଲା ତାହା ଆଗରୁ କୁହାଯାଇଛି । ପରେ ସେଗୁଡ଼ିକ ମଧ୍ୟରୁ ଅଧିକାଂଶରେ ଏକ ନୂତନ ଧରଣର ଶାସନ ବ୍ୟବସ୍ଥା ପ୍ରଚଳିତ ହେଲା । ତାହାକୁ ଗ୍ରୀକ୍ 'ଗଣତନ୍ତ୍ର' (Democracy) ବୋଲି କୁହାଯାଏ । ଆଜିକାଲି ଡେମୋକ୍ରେସି କହିଲେ ଗଣତନ୍ତ୍ର ଶାସନ ବୁଝାଏ । ଏହା ଲୋକପ୍ରତିନିଧିମୂଳକ ଶାସନ । କିନ୍ତୁ ଗ୍ରୀସ୍ ରାଜ୍ୟମାନଙ୍କରେ ଠିକ୍ ଏହି ଧରଣର ଶାସନ ପ୍ରଚଳିତ ନ ଥିଲା । ଏଥେନ୍‌ସ ରାଜ୍ୟର ଶାସନ ପଦ୍ଧତିରୁ ଏହାର ପ୍ରକୃଷ୍ଟ ପରିଚୟ ମିଳେ । ସେଥିରେ ଲୋକପ୍ରତିନିଧି ନିର୍ବାଚନ କରିବାର ଆବଶ୍ୟକତା ନ ଥିଲା । ଏଥେନୀୟମାନେ ସେମାନଙ୍କର ଲୋକସଭା ବା ଏସେମ୍ବ୍ଲିକୁ ନିଜର ପ୍ରତିନିଧି ବାଛୁ ନ ଥିଲେ । ନିଜେ ଯାଇ ସମସ୍ତେ ସେଠାରେ ଭୋଟ ଦେଉଥିଲେ । ଏହା ସେତେବେଳେ ସମ୍ଭବପର ହେଉଥିଲା । କାରଣ, ପ୍ରକୃତ ପକ୍ଷରେ ନାଗରିକ ଅଧିକାର ଖୁବ୍ କମ୍ ଲୋକଙ୍କର ଥିଲା । ସେତେବେଳେ ଏଥେନ୍‌ସ ରାଜ୍ୟର ଜନସଂଖ୍ୟା ଥିଲା ପ୍ରାୟ ୨୮୦୦୦୦ । ତନ୍ମଧ୍ୟରୁ ପ୍ରାୟ ଏକଲକ୍ଷ ଦାସ ଶ୍ରେଣୀର ଲୋକ ଓ ପ୍ରାୟ କୋଡ଼ିଏ ହଜାର ଏଥେନ୍‌ସ-ବାସୀ ବୈଦେଶିକ । ଏ ସମସ୍ତଙ୍କର ରାଜନୈତିକ ଅଧିକାର ନ ଥିଲା । ବାକି ରହିଲେ ଏକ ଲକ୍ଷ ଷାଠିଏ ହଜାର ଲୋକ । ସେମାନେ ଥିଲେ ସ୍ୱାଧୀନ ନାଗରିକ । ଏହି ଏକ ଲକ୍ଷ ଷାଠିଏ ହଜାର ଲୋକଙ୍କ ମଧ୍ୟରୁ କେବଳ ତିରିଶ ହଜାରରୁ ୪୮ ହଜାର ମଧ୍ୟରେ ଥିଲେ ଭୋଟଦାତା । ତେଣୁ ସେମାନେ ସମସ୍ତେ ଯାଇ ଆସେମ୍ବ୍ଲିରେ ଭୋଟ ଦେଇ ଶାସନ ସଂକ୍ରାନ୍ତ ବିଷୟମାନ ନିଷ୍ପତ୍ତି କରୁଥିଲେ ।

ଶାସନ କାର୍ଯ୍ୟରେ ଆସେମ୍ବ୍ଲିକୁ ସାହାଯ୍ୟ କରିବା ପାଇଁ ଏଥେନ୍‌ସ ରାଜ୍ୟରେ ଗୋଟିଏ କାଉନ୍‌ସିଲ୍ (Council) ଥିଲା ।

ସେଥିରେ ୫୦୦ ଜଣ ସଭ୍ୟ ଥିଲେ । ସେତେବେଳେ ଏଥେନ୍‌ସର ଲୋକେ ଦଶଟି ଦଳ (Tribe)ରେ ବିଭକ୍ତ ଥିଲେ । ପ୍ରତ୍ୟେକ ଦଳରୁ ପଚାଶ ଜଣ ଲେଖାଏଁ କାଉନ୍‌ସିଲରେ ସ୍ଥାନ ପାଉଥିଲେ । ରାଜ୍ୟ ଭିତରେ ଆସେମ୍ବ୍ଲି ଥିଲା ପ୍ରକୃତ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନ ।

ଏଥେନୀୟ ଗଣତନ୍ତ୍ରର ମୂଳ ଭିତ୍ତି ଗଠନ କରିଥିଲେ ଡ୍ରେକୋ । ଡ୍ରେକୋଙ୍କ ବ୍ୟବସ୍ଥା ଚୁକ୍ତି (Code) କଥା ପୂର୍ବରୁ କୁହାଯାଇଛି । ଆଇନ ଲିପିବଦ୍ଧ କରି ତଦ୍ଦ୍ୱାରା ଶାସନ ନିୟନ୍ତ୍ରଣ କରିବାକୁ ସେ ପ୍ରଥମେ ଚେଷ୍ଟା କରିଥିଲେ । ମାତ୍ର ଋଣଗ୍ରସ୍ତ ଦରିଦ୍ର ଜନସାଧାରଣ ତାଙ୍କ ଆଇନଦ୍ୱାରା ଉପକୃତ ହୋଇ ନ ଥିଲେ । ତାହାର ସଂସ୍କାର ଅବଶ୍ୟକ ହେବାରୁ ସୋଲୋନ ସେ ଦିଗରେ ଚେଷ୍ଟାକରି ବହୁ ପରିମାଣରେ କୃତକାର୍ଯ୍ୟ ହୋଇଥିଲେ । ସୋଲୋନଙ୍କ ସମୟରେ ଦରିଦ୍ର ଶ୍ରେଣୀର ଲୋକେ ଆସେମ୍ବ୍ଲିରେ ଭୋଟ ଦେବାର ଅଧିକାର ଲାଭ କରିଥିଲେ । ସୋଲୋନଙ୍କ ପରେ କିଛି ଦିନ ଏଥେନ୍‌ସରେ ଯଥେଚ୍ଛାଚାରୀ ଶାସନ ଚାଲିଥିଲା । ଯଥେଚ୍ଛାଚାରୀ ଶାସକମାନେ (Tyrant) ସୁଯୋଗ୍ୟ ଶାସକ ଥିଲେ ସୁଦ୍ଧା ଓ ରାଜ୍ୟର ସ୍ୱାର୍ଥପ୍ରତି ସେମାନେ ସାଧାରଣତଃ ଜାଗ୍ରତ ଦୃଷ୍ଟି ଦେଉଥିଲେ ମଧ୍ୟ, ଲୋକେ ଯଥେଚ୍ଛାଚାରୀର ଶାସନକୁ ଘୃଣା ଚକ୍ଷୁରେ ଦେଖୁଥିଲେ । ଖ୍ରୀ: ପୂ: ୫୬୦ରୁ ଏହିପରି ଶାସନ ଚାଲିଥିଲା । ଅବଶେଷରେ ଖ୍ରୀ:ପୂ: ୫୧୧ରେ ଏହାର ଅବସାନ ଘଟିଲା । କ୍ଲିସ୍‌ଥେନିସ (Cleithenes) ନାମକ ଜଣେ ସମ୍ଭ୍ରାନ୍ତ ବଂଶୀୟ ବ୍ୟକ୍ତି ଏହାର ଅବସାନ ଘଟାଇଥିଲେ । ଯଥେଚ୍ଛାଚାରୀର ଶାସନ ଲୋପ କରିବା ପାଇଁ ସେ ଏକ ନୂତନ ଆଇନ ପ୍ରଣୟନ କରିଥିଲେ । ତଦ୍ଦ୍ୱାରା କୌଣସି ଲୋକକୁ ଦେଶ ପକ୍ଷରେ ବିପଜ୍ଜନକ ବୋଲି ଘୋଷଣା କରିବାକୁ ନାଗରିକମାନଙ୍କୁ ଅଧିକାର ଦିଆ ହୋଇଥିଲା । ସେପରି ଲୋକ

ଦଶବର୍ଷ ପାଇଁ ରାଜ୍ୟରୁ ବହିଷ୍କୃତ ହେଉଥିଲା । ଛଅ ହଜାର ବା ତହିଁରୁ ଅଧିକ ଭୋଟବଳରେ ଉକ୍ତ ବ୍ୟକ୍ତିକୁ ବହିଷ୍କାର କରାଯାଉଥିଲା । ପ୍ରତିବର୍ଷ ଥରେ ନାଗରିକମାନେ ଏହି ଅଧିକାର ଭୋଗ କରିବାର ସୁଯୋଗ ପାଉଥିଲେ । ଏହି ବହିଷ୍କାର ବ୍ୟବସ୍ଥାକୁ ଅଷ୍ଟ୍ରାସିଜମ୍ (Ostracism) କୁହା ହେଉଥିଲା ।

**ପ୍ରାଚୀନ ଗ୍ରୀକ୍‌ମାନଙ୍କର ଧର୍ମ:** ଗ୍ରୀକ୍‌ମାନେ ନାନା ଦେବଦେବୀରେ ବିଶ୍ୱାସ କରୁଥିଲେ । ଗ୍ରୀକ୍ ଦେବତାଙ୍କ ମଧ୍ୟରେ ପ୍ରଧାନ ଥିଲେ ଜିଅସ (Zeus), ଆପୋଲୋ (Appollo), ଏଥିନା (Athena) ଏବଂ ନେପଚୁନ୍ (Neptune) । ଦେବତାମାନେ ଅମର ବୋଲି ସେମାନେ ବିଶ୍ୱାସ କରୁଥିଲେ । ମାତ୍ର ମନୁଷ୍ୟମାନଙ୍କ ପରି ସେମାନଙ୍କର ମଧ୍ୟ ଦୋଷ ଦୁର୍ବଳତା ଥିଲା । ସେମାନେ ମର୍ତ୍ତ୍ୟ-ଭୁବନକୁ ଆସି ମର୍ତ୍ତ୍ୟମାନବଙ୍କ ସହିତ ମିଳାମିଶା କରୁଥିଲେ । ଅଲମ୍ପିସ ଗିରି ଥିଲା ସେମାନଙ୍କର ବାସଭୂମି । ଉକ୍ତ ପାହାଡ଼ ଉପରେ ଅନେକ ସୁନ୍ଦର ସୁନ୍ଦର ଦେବମନ୍ଦିର ନିର୍ମିତ ହୋଇଥିଲା । ଗ୍ରୀକ୍‌ମାନେ ବିଶ୍ୱାସକରୁଥିଲେ ଯେ,ଗୁରୁତର ବିଷୟମାନଙ୍କରେଦେବତାମାନଙ୍କର ପରାମର୍ଶ ଲୋଡ଼ିଲେ ଦେବତାମାନେ ମନୁଷ୍ୟକୁ ପରାମର୍ଶ ଦିଅନ୍ତି । ଦେବତାମାନଙ୍କର ପ୍ରେରଣା ଲାଭକରି ନିର୍ଦ୍ଦେଶିକା ପିଥିଆ (Pithia) ଦୈବନିର୍ଦ୍ଦେଶ ପ୍ରକାଶ କରେ । ଯେଉଁ ସ୍ଥାନରେ ଏପରି ନିର୍ଦ୍ଦେଶ ମିଳୁଥିଲା ତାହାକୁ ଅରେକଲ (Oracl) କୁହାଯାଇଥିଲା । ଉକ୍ତ ନିର୍ଦ୍ଦେଶ ମଧ୍ୟ ଅରକେଲ ନାମରେ ଅବହିତ ହେଉଥିଲା । ଡେଲଫି ନାମକ ସ୍ଥାନରେ ଆପୋଲୋ ଦେବତାଙ୍କର ନିର୍ଦ୍ଦେଶ ସମଗ୍ର ଗ୍ରୀସ୍ ଦେଶରେ ସୁପ୍ରସିଦ୍ଧ ଥିଲା । ନାନା ଉପଲକ୍ଷ୍ୟରେ ବିଭିନ୍ନ ଗ୍ରୀକ୍ ରାଜ୍ୟର ଲୋକେ ଆସି ସେଠାରୁ ଦେବନିର୍ଦ୍ଦେଶ ଗ୍ରହଣ

କରୁଥିଲେ । ଡେଲଫିର ଧର୍ମସଭାକୁ ବିଭିନ୍ନ ରାଜ୍ୟର ପ୍ରତିନିଧି ମଧ୍ୟ ପ୍ରେରିତ ହେଉଥିଲେ ।

ପ୍ରାଚୀନ ଗ୍ରୀକ୍‌ମାନଙ୍କର ଦେବଦେବୀଙ୍କଠାରେ ଗଭୀର ବିଶ୍ୱାସ ଥିଲା । ଏହି ବିଶ୍ୱାସରେ କେହି ଆଘାତ ପ୍ରଦାନ କଲେ ଗ୍ରୀକ୍‌ମାନେ ତାହା ଅସହ୍ୟ ମନେକରୁଥିଲେ । ଆନାକ୍‌ସାଗୋରାସ୍ (Anaxagoras) ନାମକ ବିଖ୍ୟାତ ଗ୍ରୀକ୍ ଦାର୍ଶନିକ ଯେତେବେଳେ ପ୍ରକାଶ କରିଥିଲେ ଯେ; ଏକ ବିଶ୍ୱବ୍ୟାପୀ ପରମାତ୍ମାଙ୍କ ଛଡ଼ା ଅନ୍ୟ ଦେବଦେବୀ କେହି ନାହାନ୍ତି, ସେତେବେଳେ ଗ୍ରୀକ୍‌ମାନେ ଉତ୍ତ୍ୟକ୍ତ ହୋଇ ତାଙ୍କୁ ପ୍ରାଣରେ ମାରିଦେବାକୁ ବସିଥିଲେ । ଏପରି କି ତାଙ୍କର ବନ୍ଧୁ ପ୍ରଭାବଶାଳୀ ପେରିକ୍ଲିସ୍‌ଙ୍କ ପକ୍ଷରେ ମଧ୍ୟ ତାଙ୍କର ଜୀବନ ରକ୍ଷାକରିବା ଅସମ୍ଭବ ହୋଇ ପଡ଼ିଥିଲା । ଆନାକ୍‌ସାଗୋରାସ୍ ଅନ୍ୟତ୍ର ପଳାଇ ଯାଇ ପ୍ରାଣରକ୍ଷା କରିଥିଲେ । ଏହାଛଡ଼ା, ବିଖ୍ୟାତ ଶିଳ୍ପୀ ଫିଡ଼ିଆସ୍‌ଙ୍କୁ ମଧ୍ୟ ଧର୍ମଦ୍ରୋହ ଅପରାଧରେ କାରାଦଣ୍ଡ ଭୋଗ କରିବାକୁ ପଡ଼ିଥିଲା ।

**ପ୍ରାଚୀନ ରୋମ:**—ଆର୍ଯ୍ୟ ଜାତିର ଏକ ଶାଖା କାଳକ୍ରମେ ଇଟାଲୀରେ ପ୍ରବେଶ କରି "ଲାଟିନ୍" ନାମରେ ପରିଚିତ ହୋଇଥିଲେ । ପ୍ରଥମେ ଟାଇବର ନଦୀର ଦକ୍ଷିଣରେଥିବା ଏକ ବିସ୍ତୃତଅଞ୍ଚଳ ଅଧିକାର କରି ସେମାନେ ତାର ନାମ ଦେଇଥିଲେ ଲାଟିୟମ୍ (Latium) । ପରେ ସେମାନେ ପାଲାଟାଇନ Palatine ନାମକ ଏକ ପାହାଡ଼ ଉପରେ ବସତି ସ୍ଥାପନ କରିଥିଲେ । କାଳକ୍ରମେ ଏହାର ଚତୁର୍ଦ୍ଦିଗସ୍ଥ ଅନ୍ୟାନ୍ୟ ପାହାଡ଼ ଉପରେ ମଧ୍ୟ ବସତିମାନ ସ୍ଥାପିତ ହେଲା । ଲାଟିନମାନେ ସାତଟି ବସତି ଗଠନ କରିଥିଲେ । ଏହି ବସତିପୁଞ୍ଜ ପରେ ରୋମ ନଗରୀରେ ପରିଣତ ହୋଇଥିଲା । କିମ୍ବଦନ୍ତୀ ଅନୁସାରେ ଖ୍ରୀ: ପୂ: ୭୫୩ରେ ଏହା ରୋମୁଲସ ଓ ରେମସ୍ ନାମକ

ଦୁଇ ଯମଜ ଭ୍ରାତାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା, କିନ୍ତୁ ଐତିହାସିକମାନେ ଏହି କିମ୍ବଦନ୍ତୀରେ ବିଶେଷ ଆସ୍ଥା ସ୍ଥାପନ କରନ୍ତି ନାହିଁ । କିଛିକାଳ ଧରି ରୋମାନ୍‌ମାନେ ଇଟ୍ରାସ୍କାନ୍ ନାମକ ଏକ ଜାତିର ରାଜାମାନଙ୍କଦ୍ୱାରା ଶାସିତ ହୋଇଥିଲେ, ମାତ୍ର ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ରୋମାନ୍‌ମାନେ ରୋମ୍‌ରେ ଏକ ସାଧାରଣତନ୍ତ୍ର ପ୍ରତିଷ୍ଠା କଲେ ଏବଂ କାଳକ୍ରମେ ସମଗ୍ର ଇଟାଲୀ ଅଧିକାର କରିନେଲେ । ଅବଶେଷରେ ସେମାନେ ନାନାଦେଶ ଜୟକରି ଏକ ବିଶାଳସାମ୍ରାଜ୍ୟ ଗଢ଼ିବାକୁ ସମର୍ଥ ହେଲେ ।

ରୋମ୍ ସାମ୍ରାଜ୍ୟ

**ରୋମୀୟ ସଭ୍ୟତା:**—ରୋମୀୟ ସଭ୍ୟତା ଗ୍ରୀକ୍ ସଭ୍ୟତା ନିକଟରେ ବିଶେଷ ପରିମାଣରେ ଋଣୀ । ରୋମୀୟମାନେ ଗ୍ରୀକ୍‌ମାନଙ୍କଠାରୁ ନାନା ବିଷୟ ଶିକ୍ଷା କରିଥିଲେ । ରୋମୀୟ ବର୍ଣ୍ଣମାଳା

ଗ୍ରୀକ୍ ବର୍ଣ୍ଣମାଳାରୁ ଗୃହୀତ । ଗ୍ରୀକ୍‌ମାନଙ୍କଠାରୁ ରୋମୀୟମାନେ ପୋତ ନିର୍ମାଣକୌଶଳ ଶିକ୍ଷାକରିଥିଲେ । ଗ୍ରୀକ୍‌ମୁଦ୍ରାର ଅନୁକରଣରେ ରୋମୀୟମାନେ ମୁଦ୍ରା ପ୍ରସ୍ତୁତ କରିଥିଲେ । ଗ୍ରୀକ୍ ଦେବଦେବୀଙ୍କ ସମ୍ବନ୍ଧରେ ପ୍ରଚଳିତ ବିବିଧ ଗଳ୍ପ କାହାଣୀ ନେଇ ରୋମୀୟମାନେ ଅନୁରୂପ କାହାଣୀ ସୃଷ୍ଟି କରିଥିଲେ । କିନ୍ତୁ ଗ୍ରୀକ୍‌ମାନେ ଥିଲେ ଅଧିକ କଳ୍ପନାପରାୟଣ ଓ ଭାବପ୍ରବଣ । ଧର୍ମ, ବିଜ୍ଞାନ, କଳାକ୍ଷେତ୍ରରେ ସେମାନେ ଅପୂର୍ବ ନୈପୁଣ୍ୟ ପ୍ରକାଶ କରିଅଛନ୍ତି । ଚିନ୍ତା ଜଗତକୁ ସେମାନଙ୍କର ଦାନ ଅପରିସୀମ । ରୋମୀୟ-ମାନେ ଏ ସମସ୍ତ ଦିଗରେ ଅପେକ୍ଷାକୃତ ନିକୃଷ୍ଟ ହେଲେ ସୁଦ୍ଧା; ରାଜନୀତି ଓ ବ୍ୟବସ୍ଥା ପ୍ରଣୟନ ଦିଗରେ ସେମାନେ ପ୍ରଶଂସନୀୟ ପ୍ରତିଭାର ପରିଚୟ ଦେଇଅଛନ୍ତି । ରାଜନୈତିକ ବିଚକ୍ଷଣତା ଓ ସଂଗଠନ-କୌଶଳ ବଳରେ ରୋମୀୟମାନେ ରୋମ୍ ଭଳି ଏକ କ୍ଷୁଦ୍ର ନଗର ରାଜ୍ୟର ଅଭିବୃଦ୍ଧି ସାଧନ କରି ତାହାକୁ ଏକ ସୁନିୟନ୍ତ୍ରିତ ଗୌରବମୟ ବିଶାଳ ସାମ୍ରାଜ୍ୟରେ ପରିଣତ କରିପାରିଥିଲେ । କିନ୍ତୁ ପ୍ରାଚୀନ ଗ୍ରୀକ୍‌ମାନେ ଏ ଦିଗରେ ପରାକାଷ୍ଠା ପ୍ରକାଶ କରିପାରି ନାହାନ୍ତି ।

**ରୋମର କଳା ଓ ସ୍ଥାପତ୍ୟ (Art and Sculpture)**—ପ୍ରାଚୀନ ଗ୍ରୀସର କଳା ଓ ସ୍ଥାପତ୍ୟ ତୁଳନାରେ ରୋମୀୟ କଳା ଓ ସ୍ଥାପତ୍ୟ ଅନେକାଂଶରେ ହୀନ ହେଲେସୁଦ୍ଧା, ତାହା ଏକାବେଳକେ ତୁଚ୍ଛ ନୁହେଁ । ସାମ୍ରାଜ୍ୟ ପ୍ରତିଷ୍ଠା ପରେ ରୋମୀୟ କଳା ଓ ସ୍ଥାପତ୍ୟ ବିଶେଷ ବିକାଶଲାଭ କରିଥିଲା । ସାମ୍ରାଜ୍ୟ ଯୁଗରେ ରୋମ୍ ନଗରୀର ରାସ୍ତାଗୁଡ଼ିକ ଅସଂଖ୍ୟ ପ୍ରସ୍ତର ମୂର୍ତ୍ତିରେ ମଣ୍ଡିତ ହୋଇଥିଲା । ନାନାଦେଶରୁ କଳାସମ୍ପଦ ଆହରଣ କରି ରୋମୀୟମାନେ ରୋମ୍ ନଗରୀର ପ୍ରଧାନ ରାସ୍ତାମାନଙ୍କ ପାର୍ଶ୍ୱରେ ସେଗୁଡ଼ିକ ସ୍ଥାପନ

କରୁଥିଲେ । ସେତେବେଳେ ଏକ ଶ୍ରେଣୀର କଳାଶିଳ୍ପୀ ଖ୍ୟାତି ଅର୍ଜନ କରିଥିଲେ । ସେମାନେ ଅର୍ଦ୍ଧମୂର୍ତ୍ତି ବା "ବଷ୍ଟ" (Bust) ନିର୍ମାଣରେ ଦକ୍ଷ ଥିଲେ । ଉକ୍ତ ମୂର୍ତ୍ତିଗୁଡ଼ିକ ଅତିଜୀବନ୍ତ ଦେଖାଯାଉଥିଲା । ସମ୍ରାଟ୍ ଅଗଷ୍ଟସଙ୍କ ସମୟରେ ରୋମ ନଗରୀ ଅଗଣିତ ସୁରମ୍ୟ ଅଟ୍ଟାଳିକାରେ ପରିଶୋଭିତ ହୋଇ ଅପୂର୍ବ ଶ୍ରୀ ଧାରଣ କରିଥିଲା । ଅଗଷ୍ଟସ ଗର୍ବ କରି କହୁଥିଲେ—"ମୋ ପୂର୍ବରୁ ରୋମ୍ ଥିଲା ଇଷ୍ଟକମୟୀ ନଗରୀ, ମୁଁ ତାକୁ ମର୍ମରମୟୀ ନଗରୀରେ ପରିଣତ କରିଛି ।" ରୋମୀୟ ସମ୍ରାଟମାନଙ୍କ ଅମଳରେ ଅନେକ ସାଧାରଣ



ସ୍ନାନାଗାର ନିର୍ମିତ ହୋଇଥିଲା । ତନ୍ମଧ୍ୟରୁ "ଏଣ୍ଟୋନିନିଆନ୍ ବାଥ୍" ( Antoninian Bath ) ସ୍ନାନାଗାରଗୁଡ଼ିକ ବିଶେଷ ଉଲ୍ଲେଖଯୋଗ୍ୟ । ସେଗୁଡ଼ିକ ଏତେ ବିସ୍ତୃତ ଯେ; ସେଥିରେ ଏକ ସମୟରେ ୧୬୦୦ ସ୍ନାନାର୍ଥୀ ସ୍ନାନ କରି ପାରୁଥିଲେ । ଗ୍ରେଟ୍ ସର୍କସ ନାମକ ରୋମ୍‌ର ପ୍ରକାଣ୍ଡ ଅନୁଷ୍ଠାନରେ ତିନିଲକ୍ଷ ଅଶୀହଜାର ଦର୍ଶକଙ୍କ ପାଇଁ ବ୍ୟବସ୍ଥା ଥିଲା । ନଗରୀର ବିଖ୍ୟାତ ରଙ୍ଗସ୍ଥଳୀର ନାମ ଥିଲା

କଲୋସିୟମ୍ (Colosseium)। ସେଠାରେ ପଶୁଯୁଦ୍ଧ ଓ ମଲ୍ଲଯୁଦ୍ଧ ପ୍ରଦର୍ଶିତ ହେଉଥିଲା। ତାହା ଥିଲା ରୋମୀୟମାନଙ୍କର ପ୍ରିୟତମ ଆମୋଦ। ଏହି ପ୍ରକାଣ୍ଡ ପ୍ରମୋଦସ୍ଥଳୀ ସମ୍ରାଟ ଭେସପାସିଆନ Vespasian ନିର୍ମାଣ କରିବାକୁ ଆରମ୍ଭ କରିଥିଲେ ଓ ସମ୍ରାଟ ଟିଟସ୍ (Titus)ଙ୍କ ଅମଳରେ ତାହା ସମ୍ପୂର୍ଣ୍ଣ ହୋଇଥିଲା। ରୋମ ସହରର ସିନେଟ୍ ହଲ୍‌ଗୃହ ଅନ୍ୟତମ ଶୋଭନୀୟ ଅନୁଷ୍ଠାନ। ରୋମୀୟମାନେ ପ୍ରଥମେ ସିମେଣ୍ଟ କଂକ୍ରିଟ ଓ ମାର୍ବଲ ଗୁଣ୍ଡର ପ୍ରଲେପ ବ୍ୟବହାର କରି ଗୃହ ନିର୍ମାଣଶିଳ୍ପର ନୂତନ ସନ୍ଧାନ କରିଥିଲେ ଓ



ସୁଦୃଢ଼ ତୋରଣମାନ ଗଢ଼ିଥିଲେ। ସାମ୍ରାଜ୍ୟର ବିଭିନ୍ନ ଅଞ୍ଚଳରେ ସେମାନେ ଅନେକ ସୁନ୍ଦର ଓ ସୁପ୍ରଶସ୍ତ ରାସ୍ତା ନିର୍ମାଣ କରିଥିଲେ ଏବଂ ସୁଦୃଢ଼ ପ୍ରାଚୀର ପ୍ରସ୍ତୁତ କରିଥିଲେ। ଇଂଲଣ୍ଡର ହାଡ୍ରିଆନ ପ୍ରାଚୀର (Hadrian wall) ସେମାନଙ୍କ ଉତ୍କୃଷ୍ଟ ପ୍ରାଚୀର ଗଠନ ପ୍ରଣାଳୀର ପରିଚୟ ଦିଏ। ରୋମୀୟମାନେ ବ୍ରିଟେନ, ଗଲ୍, ସ୍ପେନ୍, ଉତ୍ତର-

ଆଫ୍ରିକା ଓ ଆସିଆମାଇନରରେ ଅନେକ କୀର୍ତ୍ତି ସ୍ଥାପନ କରିଥିଲେ । ଫ୍ରାନ୍ସରେ ନିମେସ୍ ନାମକ ସ୍ଥାନରେ ସେମାନେ ଏକ ସୁବୃହତ୍ ସେତୁ ଓ ଏକ ସୁନ୍ଦର ଦେବ ମନ୍ଦିର ନିର୍ମାଣ କରିଥିଲେ । ସିରିଆ ଅନ୍ତର୍ଗତ ବାଲବେକ୍‌ଠାରେ ନିର୍ମିତ ମନୋହର ସୂର୍ଯ୍ୟ ମନ୍ଦିରଗୁଡ଼ିକ ଏକଦା ରୋମୀୟମାନଙ୍କ କଳାପ୍ରୀତିର ପରିଚୟ ଦେଉଥିଲା । ଉତ୍ତର-ଆଫ୍ରିକାର ସାହାରା ମରୁଭୂମି ପ୍ରାନ୍ତରରେ ସେମାନେ ଥାମାଗୁଡ଼ି (Thamagudi) ନାମକ ଏକ ଅପୂର୍ବ ସହର ପ୍ରତିଷ୍ଠା କରିଥିଲେ । ସେଥିରେ ଥିବା ସିନେଟଗୃହ, ରୋମୀୟ ସମ୍ରାଟମାନଙ୍କ ମର୍ମରମୂର୍ତ୍ତି ଓ ରାଜପଥରେ ସନ୍ନିବେଶିତ କୃତ୍ରିମ ଜଳପ୍ରପାତ ଜନମନ ହରଣ କରୁଥିଲା ।

**ରୋମୀୟ ବିଧି-ବ୍ୟବସ୍ଥା:**—ଜଗତକୁ ରୋମୀୟମାନଙ୍କର ବିଶିଷ୍ଟ ଦାନ ହେଉଛି ବିଧିବଦ୍ଧ ଶାସନ । ବିଭିନ୍ନ ସମୟରେ ବିଭିନ୍ନ ଅବସ୍ଥାର ସମ୍ମୁଖୀନ ହୋଇ ରୋମୀୟମାନେ ନାନା ବିଧି ଓ ବିଧାନ ପ୍ରଚଳନ କରିଥିଲେ । ଖ୍ରୀ: ପୂ: ୪୫୦ ରେ ଦେଶ ପ୍ରଚଳିତ ଆଇନଗୁଡ଼ିକ ଲିପିବଦ୍ଧ କରିବାପାଇଁ ପ୍ରଥମ ଚେଷ୍ଟା ହୋଇଥିଲା । ଦୋତେଜଣ ବିଶିଷ୍ଟ ଆଇନଜ୍ଞ ବ୍ୟକ୍ତି ମିଶି ତାହା ସଂଗ୍ରହ କରିଥିଲେ ଓ ଦ୍ୱାଦଶଟି ବ୍ରୋଞ୍ଜଫଳକ ଉପରେ ତାହା ଲିପିବଦ୍ଧ କରାହୋଇଥିଲା । ପ୍ରକାଶ୍ୟ ସ୍ଥାନମାନଙ୍କରେ ଉକ୍ତ ଫଳକଗୁଡ଼ିକ ରକ୍ଷିତ ହେବାରୁ ଜନ-ସାଧାରଣଙ୍କର ଆଇନ ସମ୍ବନ୍ଧରେ ଜ୍ଞାନଲାଭ କରିବା ସହଜ ହୋଇଥିଲା । ବିଚାର ଅଦାଲତରେ ବିଚାରକମାନେ ଉକ୍ତ ଆଇନ ବଳରେ ବିଚାର କାର୍ଯ୍ୟ ଚଳାଉଥିଲେ । ଦେଶରେ ଅନେକ କୋର୍ଟ-କଚେରୀ ସ୍ଥାପିତ ହୋଇଥିଲା । ଦଶ ଶତାବ୍ଦୀଧରି ରୋମର ସିନେଟ୍-ସଭା ଓ ରୋମୀୟ ସମ୍ରାଟମାନେ ଆଇନ ପ୍ରଣୟନ କରି ଓ ବିଚାରକ-ବର୍ଗ ସେସବୁ ଆଇନ ପ୍ରୟୋଗ କରି ଅସଂଖ୍ୟ ନଜିର ସୃଷ୍ଟି କରିଥିଲେ । କିନ୍ତୁ ସମ୍ରାଟ୍ ଜଷ୍ଟିନିଆଙ୍କ ସମୟ ପର୍ଯ୍ୟନ୍ତ ଆଇନ ଗ୍ରନ୍ଥ ବା ବ୍ୟବସ୍ଥା

ପୁସ୍ତକ ଲିଖିତ ହୋଇ ନ ଥିଲା । ଜଷ୍ଟିନିଆନ୍ ୩୭ ବର୍ଷ ଦକ୍ଷତାର ସହିତ ରାଜତ୍ୱ କରିଥିଲେ । ତାଙ୍କର ଆଦେଶରେ ସମସ୍ତ ପ୍ରୟୋଜନୀୟ ଆଇନ ସଂକଳିତ ହୋଇ ଗ୍ରନ୍ଥାକାରରେ ପ୍ରକାଶିତ ହୋଇଥିଲା । ଏହା ତିନିଭାଗରେ ବିଭକ୍ତ ଥିଲା, ଯଥା:—୧—(The Code) ୨—ଡାଇଜେଷ୍ଟ (The Digest) ଓ ୩ - ଇନଷ୍ଟିଚିଉଟସ୍ (The Institutes) । ଏହି ତିନି ଭାଗକୁ ଏକତ୍ର "କୋର୍ପସ୍ ଜୁରିସ ସିଭିଲିସ" (Corpus Juris civilis) ବୋଲି କୁହାହେଉଥିଲା । ଏହି ବ୍ୟବସ୍ଥାଗ୍ରନ୍ଥ ହିଁ ଆଧୁନିକ ଇଉରୋପରେ ପ୍ରାୟ ସମସ୍ତ ଦେଶରେ ପ୍ରଚଳିତ ବିଧି ବ୍ୟବସ୍ଥାର ମୂଳଭିତ୍ତି । ଟ୍ରିବୋନିଆନ (Tribonian) ନାମକ ଜଣେ ସୁବିଖ୍ୟାତ ଆଇନ ବ୍ୟବସାୟୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହା ପ୍ରସ୍ତୁତ ହୋଇଥିଲା ।

**ରୋମର ଶାସନ ବ୍ୟବସ୍ଥା—(Administration)—** ପ୍ରଥମେ ରୋମରେ ସୀମାବଦ୍ଧ ରାଜତନ୍ତ୍ର ପ୍ରତିଷ୍ଠିତ ଥିଲା । ଜନସାଧାରଣଙ୍କ ସ୍ୱୀକୃତି କ୍ରମେ ରାଜା ନିଯୁକ୍ତ ହେଉଥିଲେ । ରାଜାଥିଲେ ବିଚାରକ ବା ମାଜିଷ୍ଟ୍ରେଟ । ରାଜାଙ୍କୁ ଅନେକ କ୍ଷମତା ଦିଆଯାଇଥିଲା । ସେ ବିଭିନ୍ନ କର୍ମଚାରୀ ନିଯୁକ୍ତ କରି ସେମାନଙ୍କୁ ବିଭିନ୍ନ କ୍ଷମତା ପ୍ରଦାନ କରୁଥିଲେ । ରୋମର ଅଧିବାସୀମାନେ ଦୁଇଶ୍ରେଣୀରେ ବିଭକ୍ତ ଥିଲେ, ଯଥା:—୧—ସମ୍ଭ୍ରାନ୍ତ ( Patrician ) ଓ ୨ ସାଧାରଣ (Plebeian) । ରାଜ୍ୟରେ ଏସେମ୍ବଲି ନାମକ ଏକ ଜନପରିଷଦ ଥିଲା; ମାତ୍ର ରାଜାଙ୍କ ଉପରେ ଏହାର ବିଶେଷ କର୍ତ୍ତୃତ୍ୱ ନ ଥିଲା । ଏସେମ୍ବଲି ଛଡ଼ା "ସିନେଟ୍" ବୋଲି ଆଉ ଗୋଟିଏ ଅନୁଷ୍ଠାନ ଥିଲା । ଏହା ହିଁ ଥିଲା ପ୍ରକୃତରେ ଏକଶକ୍ତିଶାଳୀ ଅନୁଷ୍ଠାନ । ସମ୍ଭ୍ରାନ୍ତବ୍ୟକ୍ତିମାନଙ୍କ ମଧ୍ୟରୁ ମୁଖ୍ୟ ବ୍ୟକ୍ତିମାନଙ୍କୁ ନେଇ ଏହା ଗଠିତ ହୋଇଥିଲା । ରାଜାଙ୍କ ଉପରେ ଏହା ଅଙ୍କୁଶ ସ୍ୱରୂପ

କାର୍ଯ୍ୟ କରୁଥିଲ । ଖ୍ରୀ: ପୂ: ୫୦୯ରେ ରାଜପଦ ଲୋପ ପାଇଲା । ରୋମରେ ସାଧାରଣତନ୍ତ୍ର ପ୍ରତିଷ୍ଠିତ ହେଲା । ରାଜା ପରିବର୍ତ୍ତେ ଲୋକସାଧାରଣ ଦୁଇଜଣଙ୍କୁ ନିର୍ବାଚନ କଲେ । ସମ୍ଭ୍ରାନ୍ତ ଓ ସାଧାରଣ ବ୍ୟକ୍ତିମାନଙ୍କ ମଧ୍ୟରେ ବହୁଦିନ ଧରି ସଂଘର୍ଷ ଲାଗିବା ପରେ ସାଧାରଣ ବ୍ୟକ୍ତିମାନେ ଅଧିକ ରାଜନୈତିକ କ୍ଷମତା ଅର୍ଜ୍ଜନ କଲେ । ନାନା ଶ୍ରେଣୀର ମାଜିଷ୍ଟ୍ରେଟ ରୋମର ଶାସନ ଚଳାଇଲେ । ସେମାନଙ୍କ ମଧ୍ୟରେ ପ୍ରଧାନ ଥିଲେ କନସଲ (Consul) । କନସଲ ରାଷ୍ଟ୍ର ମୁଖ୍ୟସ୍ୱରୂପ କାର୍ଯ୍ୟ କରୁଥିଲେ । ସେ ମଧ୍ୟ ସମର ବିଭାଗର ମୁଖ୍ୟ ଥିଲେ ।

**ସିନେଟ୍**—ରୋମର ଶାସନ ପ୍ରକୃତରେ ସିନେଟ୍ ହସ୍ତରେ ନିହିତ ଥିଲା । ପ୍ରଥମେ ଏହା କେବଳ ଶାସନ ବିଷୟରେ ପରାମର୍ଶ ପ୍ରଦାନ କରୁଥିଲା । ପରେ ଏହାର କ୍ଷମତା ଖୁବ୍ ବୃଦ୍ଧି ପାଇଥିଲା । ବିଶେଷତଃ ଯୁଦ୍ଧ ସମୟରେ ଏହା ଦକ୍ଷତାର ସହିତ ଶାସନ ପରିଚାଳନା କରି ଶକ୍ତି-ସାମର୍ଥ୍ୟର ପରିଚୟ ଦେଇଥିଲା । ତିନିଶହ ସଭ୍ୟଙ୍କୁ ନେଇ ଏହି ସିନେଟ୍ ସଭା ଗଠିତ ହୋଇଥିଲା । ଏହି ସଭ୍ୟମାନେ ଆଜୀବନ ସଭ୍ୟ ଥିଲେ । ସିନେଟ୍ ସଭା ଆଇନ ଅନୁମୋଦନ, ରାଜ୍ୟର ଆୟବ୍ୟୟ ନିୟନ୍ତ୍ରଣ, ପ୍ରାଦେଶିକ ଶାସନ ପରିଚାଳନା ବ୍ୟବସ୍ଥା ଓ ବୈଦେଶିକ ନୀତି ନିର୍ଦ୍ଧାରଣ କରୁଥିଲା । ସାମରିକ ବିଭାଗ ଉପରେ ମଧ୍ୟ ଏହାର ବିଶେଷ କର୍ତ୍ତୃତ୍ୱ ଥିଲା । ଏହି ସଭା ସେନାପତିମାନଙ୍କୁ ନିଯୁକ୍ତ ବା ପଦଚ୍ୟୁତ କରିପାରୁଥିଲା । ସିନେଟ୍‌ର ସଭ୍ୟମାନଙ୍କ ମଧ୍ୟରୁ ବିଭିନ୍ନ ଦେଶରେ ରୋମର ରାଷ୍ଟ୍ରଦୂତ ନିଯୁକ୍ତ ହେଉଥିଲେ । ଅଧିକାଂଶ ସିନେଟ୍-ସଭ୍ୟ ଥିଲେ ରୋମର ପୂର୍ବତନ ମାଜିଷ୍ଟ୍ରେଟ । ସେମାନଙ୍କ ବୟସ ୬୮ ବର୍ଷରୁ

ନ୍ୟୂନ ହେବ ନାହିଁ ବୋଲି ନିୟମ ଥିଲା । ସୁତରାଂ ସେମାନେ ସମସ୍ତେ ଅଭିଜ୍ଞ ଓ ଶାସନଦକ୍ଷ ବ୍ୟକ୍ତି ଥିଲେ ।

**ରୋମର୍ ଗଣତନ୍ତ୍ର:**—ଏହି ଗଣତନ୍ତ୍ର ଶାସନରେ ସମ୍ଭ୍ରାନ୍ତ ଶ୍ରେଣୀର ଲୋକେ ଥିଲେ ଅଧିକ ପ୍ରତିପତ୍ତିଶାଳୀ । ଏହା ପ୍ରକୃତ ଗଣଶକ୍ତି ଉପରେ ପ୍ରତିଷ୍ଠିତ ନ ଥିଲା । କିନ୍ତୁ ଜନସାଧାରଣଙ୍କୁ ଅନ୍ୟାୟ ଅତ୍ୟାଚାରରୁ ରକ୍ଷା କରିବା ପାଇଁ ଓ ସେମାନଙ୍କ ସ୍ୱାର୍ଥ ସଂରକ୍ଷଣ ପାଇଁ କେତେକ ବ୍ୟବସ୍ଥା ଥିଲା । ଗଣ ଆନ୍ଦୋଳନ ଫଳରେ ଟ୍ରିବ୍ୟୁନ୍ (Tribune) ନାମକ ଦୁଇଜଣ ବିଶିଷ୍ଟ କର୍ମଚାରୀ ନିଯୁକ୍ତ ହୋଇଥିଲେ (ଖ୍ରୀ:ପୂ ୪୯୪) । ବର୍ଷକୁ ବର୍ଷ ସେମାନଙ୍କର ନିର୍ବାଚନ ହେଉଥିଲା । ଲିସିନିୟସ ଷ୍ଟୋଲୋ (Licinius Stolo) ନାମକ ଜଣେ ଟ୍ରିବ୍ୟୁନଙ୍କ ଯତ୍ନରେ ଲିସିନିୟ ବିଧି (Licinian Law) ନାମକ ଏକ ଆଇନ ପ୍ରଣୀତ ହୋଇ କୃଷକମାନଙ୍କୁ ଜମିଦାରମାନଙ୍କ ଶୋଷଣରୁ ରକ୍ଷା କରିଥିଲା । ଏହି ଆଇନବଳରେ ମଧ୍ୟ ଧନୀବ୍ୟକ୍ତିଙ୍କ ହସ୍ତରେ କେତେ ଜମି ରହିପାରିବ ତାହା ଧାର୍ଯ୍ୟ ହୋଇଥିଲା । ଖ୍ରୀ: ପୂ: ୨୮୭ରେ ପ୍ଲିବିଆନ ସମିତି ବା କମିସିଆ ଟ୍ରିବ୍ୟୁଟା (Comitia Tributa) ଦ୍ୱାରା ଗୃହୀତ ଆଇନ ସମସ୍ତ ରୋମବାସୀଙ୍କ ପ୍ରତି ପ୍ରଯୁକ୍ତ ହେବ ବୋଲି ସ୍ଥିର ହୋଇଥିଲା । ଏହି ସମିତି ଦ୍ୱାରା ଟ୍ରିବ୍ୟୁନମାନେ ନିର୍ବାଚିତ ହେଉଥିଲେ । ରାଷ୍ଟ୍ର ବିରୁଦ୍ଧରେ ଯାବତୀୟ ଅପରାଧର ବିଚାର ହେଉଥିଲା କମିସିଆ ସେଞ୍ଚୁରିଆଟା (Comitia Centuriata) ନାମକ ଅଦାଲତରେ । ଏହା କନ୍‌ସଲମାନଙ୍କୁ ନିର୍ବାଚିତ କରୁଥିଲା ଓ ସେମାନଙ୍କ ରାୟ ବିରୁଦ୍ଧରେ ଅପିଲ ବିଚାର କରୁଥିଲା । ରାଷ୍ଟ୍ରରେ ଗୁରୁତର ପରିସ୍ଥିତି ଉପୁଜିଲେ ଜଣେ ଏକଚ୍ଛତ୍ର ଶାସକ ବା ଡିକ୍‌ଟେର (Dictator) କନ୍‌ସଲଙ୍କ ଦ୍ୱାରା ମନୋନୀତ ହୋଇ ସିନେଟ୍ କର୍ତ୍ତୃକ ନିଯୁକ୍ତ

ହେଉଥିଲେ । ତାଙ୍କୁ ସର୍ବମୟ କର୍ତ୍ତୃତ୍ୱ ପ୍ରଦାନ କରାହେଉଥିଲା । ସାଧାରଣତଃ ଛଅମାସ ପାଇଁ ଡିକ୍‌ଟେଟର ନିଯୁକ୍ତ ହେଉଥିଲେ । ତା ପରେ ସେ ପଦତ୍ୟାଗ କରୁଥିଲେ ।

**ସାମ୍ରାଜ୍ୟ ଶାସନ:** —ଏକ କ୍ଷୁଦ୍ର ନଗର-ରାଜ୍ୟରୁ ରୋମ୍ କ୍ରମେ କ୍ରମେ ଏକ ବିଶାଳ ସାମ୍ରାଜ୍ୟରେ ପରିଣତ ହେଲା । ପ୍ରଥମେ ସମଗ୍ର ଇଟାଲୀ ଉପରେ ରୋମର ପ୍ରଭୁତ୍ୱ ପ୍ରତିଷ୍ଠିତ ହେଲା । କିଛିଦିନ ପରେ ଫିନିସୀୟ (Phoenician) ମାନଙ୍କ ସହିତ ରୋମାନମାନଙ୍କର ତୁମୁଳ ସଂଘର୍ଷ ଆରମ୍ଭ ହୋଇ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପ୍ୟୁନିକ୍ ସମର ନାମକ ତିନୋଟି ସମରରେ ତାହା ପରିଣତ ହେଲା । ପ୍ୟୁନିକ୍ ସମର ପରେ ରୋମ୍‌ରେ ଘୋର ଅଶାନ୍ତି ଉପସ୍ଥିତ ହେଲା । ସିନେଟ୍ ଏହି ଅବସ୍ଥାର ପ୍ରତିକାର କରିବାକୁ ଅସମର୍ଥ ହୋଇ ପଡ଼ିଲା । କାଳକ୍ରମେ **ଜୁଲିଅସ୍ ସିଜର** ନାମକ ଜଣେ ବିଚକ୍ଷଣ ସେନାପତିଙ୍କର ଆବିର୍ଭାବ ଘଟିଲା । ଖ୍ରୀ: ପୂ: ୪୮ରେ ଜୁଲିଅସ୍ ସିଜର ଏକଛତ୍ର ଶାସକ ବା ଡିକ୍‌ଟେଟର ହେଲେ । ରୋମର ସାଧାରଣତନ୍ତ୍ରର ଏକପ୍ରକାର



ଜୁଲିଅସ ସିଜର

ଅବସାନ ଘଟିଲା । ତାହା ନାମକୁ ମାତ୍ର ସାଧାରଣତନ୍ତ୍ର ହୋଇ ରହିଲା । କିଛିଦିନ ପରେ ଜୁଲିଅସ୍ ସିଜରଙ୍କୁ ହତ୍ୟା କରାଗଲା । ଅବଶେଷରେ ଜୁଲିଅସ୍ ସିଜରଙ୍କ ଭ୍ରାତୁଷ୍ପୁତ୍ର ଅକ୍‌ଟେଭିଅସ

ସିଜର ଖୁବ୍ କ୍ଷମତାଶାଳୀ ହୋଇ ଉଠିଲେ । ସିନେଟ୍ ତାଙ୍କୁ ଅଗଷ୍ଟସ୍ ଓ ଇମ୍ପେରେଟର (Imperator) ଉପାଧିରେ ଭୂଷିତ କଲା । ଏହି ଇମ୍ପେରେଟର ପଦରୁ ସମ୍ରାଟ ବା ଏମ୍ପରର୍ (Emperor) ପଦର ଉତ୍ପତ୍ତି ହେଲା । ଅକ୍ଟୋଭିଅସ୍ ସିଜାର ସମ୍ରାଟ୍ ଅଗଷ୍ଟସ ନାମରେ ପ୍ରସିଦ୍ଧ ହେଲେ । ତାଙ୍କ ସମୟରେ ରୋମାନ ସାମ୍ରାଜ୍ୟ ଉତ୍ତରରେ ରାଇନ୍ ଓ ଡାନୁବ୍‌ୟନଦୀ, ଉତ୍ତର-ପୂର୍ବରେ କୃଷ୍ଣସାଗର ଓ ଇଉଫ୍ରେଟିସନଦୀ, ଦକ୍ଷିଣ ଓ ଦକ୍ଷିଣ-ପୂର୍ବରେ ସାହାରା ଏବଂ ଆରବ ମରୁଭୂମି ଓ ପଶ୍ଚିମରେ ଆଟଲାଣ୍ଟିକ ମହାସାଗର ମଧ୍ୟରେ ବିସ୍ତୃତ ରହି ଶାନ୍ତିରେ ଶାସିତ ହେବାକୁ ଲାଗିଲା । ଅଗଷ୍ଟସଙ୍କ ପରେ ଅନେକ ସମ୍ରାଟ ସାମ୍ରାଜ୍ୟ ଶାସନ କରିଥିଲେ । କିନ୍ତୁ ରୋମର ଗୌରବ-ସୂର୍ଯ୍ୟ କ୍ରମେ ଅସ୍ତଗାମୀ ହେବାକୁ ଆରମ୍ଭ କଲା । ସାମ୍ରାଜ୍ୟ ଦିନକୁ ଦିନ ଅନ୍ତର୍ବିବାଦର ଲୀଳାଭୂମିରେ ପରିଣତ ହେଲା । ଥିଓଡୋସିଅସ୍ ନାମକ ଜଣେ ସମ୍ରାଟ୍ ରୋମୀୟ ସାମ୍ରାଜ୍ୟକୁ ଦୁଇଭାଗରେ ବିଭକ୍ତ କରି ଦୁଇ ପୁତ୍ରଙ୍କ ମଧ୍ୟରେ ବାଣ୍ଟିଦେଲେ । ଏହା ଫଳରେ "ପଶ୍ଚିମ ରୋମାନ୍ ସାମ୍ରାଜ୍ୟ" ଓ "ପୂର୍ବ ରୋମାନ୍ ସାମ୍ରାଜ୍ୟ" ନାମରେ ଦୁଇଟି ସାମ୍ରାଜ୍ୟ ପ୍ରତିଷ୍ଠିତ ହେଲା । ମାତ୍ର ଦିନକୁ ଦିନ ବୈଦେଶିକ ଆକ୍ରମଣ ବୃଦ୍ଧି ପାଇଲା ଏବଂ ଅବଶେଷରେ ୪୭୬ ଖ୍ରୀଷ୍ଟାବ୍ଦରେ ବିଶାଳ ରୋମାନ୍ ସାମ୍ରାଜ୍ୟର ପତନ ଘଟିଲା । ଉକ୍ତ ସାମ୍ରାଜ୍ୟ ମୋଟରେ ପାଞ୍ଚଶହ ବର୍ଷ ପର୍ଯ୍ୟନ୍ତ ତିଷ୍ଠି ରହିଥିଲା ।

**ରୋମାନ ଧର୍ମ:**—ପ୍ରାଥମିକ ଅବସ୍ଥାରେ ରୋମାନମାନଙ୍କ ଧର୍ମ ଥିଲା କେବଳ ଭୂତପ୍ରେତରେ ବିଶ୍ୱାସ । ଏହାର ଏନିମିଜମ୍ (Animism) କୁହାଯାଏ । ଗିରି, ବନ, ଝରଣା ପ୍ରଭୃତିରେ ଏପରିକି ଗୃହ ମଧ୍ୟରେ ବି ସେମାନେ ନାନାସ୍ଥାନରେ ଅଧିଷ୍ଠିତ ଥିଲେ ବୋଲି ରୋମାନମାନେ ବିଶ୍ୱାସ କରୁଥିଲେ । ଜେନସ (Janus) ଥିଲେ

ସେମାନଙ୍କର ଦ୍ୱାର-ଦେବତା, ଭେଷ୍ଟା (Vesta) ଚୁଲ୍ଲୀର ଅଧିଷ୍ଠାତ୍ରୀ ଦେବୀ,ପେନାଟିସ୍ (Penates)ଭଣ୍ଡାର ଗୃହର ଦେବତା ଇତ୍ୟାଦି । କୃଷି ଉପରେ ଦେବତାମାନଙ୍କର ପ୍ରଭାବ ଥିଲା ବୋଲି ରୋମାନ-ମାନେ ମନେ କରୁଥିଲେ । ରୋମ୍ ନଗର ରାଜ୍ୟରେ ପରିଣତ ହେଲା ପରେ ରୋମାନମାନଙ୍କର ବିଶିଷ୍ଟ ଦେବତା ହେଲେ ଜୁପିଟର (Jupiter) ଓ ମାର୍ସ(Mars) । ଜୁପିଟରଙ୍କୁ ପ୍ରଥମେ ଗଗନଦେବତା ରୂପରେ ପୂଜା କରାଯାଉଥିଲା । ପରେ ସେ ନ୍ୟାୟ-ଦେବତାରୂପେ ପୂଜା ପାଇଲେ । ମାର୍ସ ଆଦିରେ କୃଷି-ଦେବତା ଥିଲେ । ପରେ ସେ ରଣ-ଦେବତାରୂପେ ପୂଜିତ ହେଲେ । ରୋମାନମାନେ ନାନା ଦେଶ ଜୟ କଲା ପରେ ବିଜିତ ଦେଶର ଦେବଦେବୀମାନଙ୍କୁ ସେମାନେ ଆପଣାର କରି ନେଇଥିଲେ । ତଦନୁସାରେ ଗ୍ରୀସ୍, ପାରସ୍ୟ ପ୍ରଭୃତି ଦେଶର ଦେବଦେବୀମାନେ ରୋମାନ୍ ଦେବ-ଦେବୀରେ ରୂପାନ୍ତରିତ ହୋଇଥିଲେ । ରୋମାନ୍‌ମାନେ ଧର୍ମ ସହିତ ରାଷ୍ଟ୍ରର ଘନିଷ୍ଠ ସମ୍ପର୍କ ପ୍ରତିଷ୍ଠା କରିଥିଲେ । ରାଜାଙ୍କର ବିଚାରବର୍ଗ ଓ ସେନାପତିମାନଙ୍କୁ ମଧ୍ୟ କେତେକ ଧର୍ମକ୍ରିୟା ଅନୁଷ୍ଠାନ କରିବାକୁ ପଡ଼ୁଥିଲା । ବିଜୟୀ ସେନାପତି ବିଜୟଯାତ୍ରାରୁ ଫେରି ପ୍ରଥମେ ଜୁପିଟରଙ୍କ ମନ୍ଦିରରେ ଦେବତାଙ୍କ ସମକ୍ଷରେ ବିଜୟସାମଗ୍ରୀ ସ୍ଥାପନ କରି ସେଗୁଡ଼ିକୁ ଶୁଦ୍ଧ-ପୂତ କରି ନେଉଥିଲେ । ସମ୍ରାଟ୍ କନ୍‌ଷ୍ଟେଣ୍ଟାଇନଙ୍କ ସମୟରେ ଖ୍ରୀଷ୍ଟଧର୍ମ ସାମ୍ରାଜ୍ୟର ରାଷ୍ଟ୍ରଧର୍ମରେ ପରିଣତ ହୋଇଥିଲା ।

**ସୈନ୍ଧବ ଓ ଗାଙ୍ଗେୟ ଉପତ୍ୟକାର ସଭ୍ୟତା:—** ପ୍ରାଚୀନ ସୈନ୍ଧବ ସଭ୍ୟତା ବିଷୟ ପୂର୍ବରୁ ବର୍ଣ୍ଣନା କରାଯାଇଅଛି । ସୁମେରୀୟ ସଭ୍ୟତା ସହିତ ଏହାର ଘନିଷ୍ଠ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଉନ୍ନତ ନାଗରିକ ଜୀବନ, କୁମ୍ଭକାରଚକ୍ରର ବ୍ୟବହାର,

ଅଗ୍ନି ଦଗ୍ଧ ଇଷ୍ଟକର ପ୍ରଚଳନ, ତାମ୍ର ଓ ବ୍ରୋଞ୍ଜନିର୍ମିତ ପାତ୍ରର ବ୍ୟବହାର ଓ ଚିତ୍ରଲିପିର ପ୍ରଚଳନ ଏହି ଉଭୟ ସଭ୍ୟତାର ବୈଶିଷ୍ଟ୍ୟ ଲକ୍ଷଣ । ଏଥିରୁ ସୁମେରୀୟ ଓ ସିନ୍ଧୁ ଉପତ୍ୟକା ମଧ୍ୟରେ ନିବିଡ଼ ସମ୍ପର୍କ ପ୍ରତିଷ୍ଠିତ ଥିବାର ସ୍ପଷ୍ଟ ପ୍ରମାଣ ମିଳେ । ତେବେ ସୈନ୍ଧବ ଓ ସୁମେରୀୟ ସଭ୍ୟତା ନିଜ ନିଜ ଅଞ୍ଚଳରେ ସ୍ୱତନ୍ତ୍ର ଭାବରେ ବିକାଶଲାଭ କରିଥିଲା କିମ୍ବା ଗୋଟିଏ ସଭ୍ୟତା ଅନ୍ୟଟିରୁ ଜାତ ହୋଇଥିଲା ତାହା ନିର୍ଣ୍ଣୟ କରିବା କଷ୍ଟକର । କେତେକ ଐତିହାସିକଙ୍କ ମତରେ ଭାରତୀୟ ସୈନ୍ଧବ ସଭ୍ୟତାହିଁ ଦ୍ରାବିଡ଼ ଜାତିର ସଭ୍ୟତା । ସେମାନେ ମନେ କରନ୍ତି ଯେ ଦ୍ରାବିଡ଼ମାନେ ଏହି ସଭ୍ୟତାର ସୂତ୍ରପାତ କରି ତାର ବିକାଶସାଧନ କରିଥିଲେ ଏବଂ ମେସୋପୋଟେମିଆକୁ ଯାଇ ସେଠାରେ ମଧ୍ୟ ତାହା ପ୍ରବର୍ତ୍ତନ କରିଥିଲେ ।

**ଭାରତୀୟ ଆର୍ଯ୍ୟ ସଭ୍ୟତା:**—ପରବର୍ତ୍ତୀ କାଳରେ ଆର୍ଯ୍ୟମାନେ ଆସି ଭାରତରେ ବସତି ସ୍ଥାପନ କଲେ । କାସ୍ପୀୟାନ ହ୍ରଦର ନିକଟବର୍ତ୍ତୀ ଅଞ୍ଚଳରୁ ସେମାନେ ଏ ଦେଶକୁ ଆସିଥିଲେ ବୋଲି ଅଧିକାଂଶ ଐତିହାସିକ ମନେ କରନ୍ତି । ସେମାନଙ୍କର ସଭ୍ୟତା ସିନ୍ଧୁ ଉପତ୍ୟକାର ସଭ୍ୟତାଠାରୁ ଅନେକାଂଶରେ ଭିନ୍ନ ଥିଲା । ସୈନ୍ଧବ ସଭ୍ୟତା ମୁଖ୍ୟତଃ ନାଗରିକ ସଭ୍ୟତା । ମାତ୍ର ଆର୍ଯ୍ୟମାନଙ୍କର ଆଦିଗ୍ରନ୍ଥରୁ ଏପରି ନଗର-ସଭ୍ୟତାର ପ୍ରମାଣ ମିଳେ ନାହିଁ । ଆର୍ଯ୍ୟମାନେ ସପ୍ତସିନ୍ଧୁ ଅଞ୍ଚଳରେ ବସତି ସ୍ଥାପନ କରି ସେଠାରୁ ଅନ୍ୟାନ୍ୟ ଅଞ୍ଚଳକୁ ବିସ୍ତୃତ ହେଲେ । ସିନ୍ଧୁ, ବିତସ୍ତା, ଚନ୍ଦ୍ରଭାଗା, ଇରାବତୀ, ବିପାସା, ଶତଦ୍ରୁ ଓ ସରସ୍ୱତୀ ନାମକ ସାତଗୋଟି ନଦୀ ଏହି ଅଞ୍ଚଳରେ ପ୍ରବାହିତ ହେଉଥିଲା । ତେଣୁ ଏହାର ନାମ ସପ୍ତ-ସିନ୍ଧୁ । କ୍ରମେ କ୍ରମେ ଆର୍ଯ୍ୟମାନେ ସମଗ୍ର ଉତ୍ତର ଭାରତ ଅଧିକାର

କଲେ । ତାହା ଆର୍ଯ୍ୟାବର୍ତ୍ତ ନାମରେ ଅଭିହିତ ହେଲା । ପରେ ସେମାନେ ଦକ୍ଷିଣ ଭାରତରେ ମଧ୍ୟ ପ୍ରବେଶ କରିଥିଲେ । ମାତ୍ର ସେଠାରେ ସେମାନେ ବିଶେଷ ପ୍ରଭାବଶାଳୀ ହୋଇ ପାରି ନ ଥିଲେ । ତାହା ମୁଖ୍ୟତଃ ଦ୍ରାବିଡ଼ମାନଙ୍କର ଅଧିକାରଭୁକ୍ତ ହୋଇ ରହିଥିଲା ।

**ଆର୍ଯ୍ୟ ସମାଜ:**—ଆର୍ଯ୍ୟମାନଙ୍କର ଆଦିଧର୍ମଗ୍ରନ୍ଥ ଋଗ୍‌ବେଦରୁ ତତ୍‌କାଳୀନ ଆର୍ଯ୍ୟ ସମାଜ ସମ୍ବନ୍ଧରେ ଅନେକ କଥା ଜଣାଯାଏ । ସେ ଯୁଗରେ ପରିବାର ସମାଜର ମୂଳଭିତ୍ତି ଥିଲା । ପିତା ଥିଲେ ପରିବାରର କର୍ତ୍ତା । ତାଙ୍କୁ ଗୃହପତି ବୋଲି କୁହାଯାଉଥିଲା । ଏକପତ୍ନୀ ପ୍ରଥା ସାଧାରଣତଃ ପ୍ରଚଳିତ ଥିଲେ ସୁଦ୍ଧା, କେହି କେହି ବହୁପତ୍ନୀ ମଧ୍ୟ ଗ୍ରହଣ କରୁଥିଲେ । ବିଧବାବିବାହ ପ୍ରଚଳିତ ଥିଲା । ସ୍ତ୍ରୀ ସ୍ୱାଧୀନତାର ଅଭାବ ପରିବାର ମଧ୍ୟରେ ପରିଲକ୍ଷିତ ହେଉଥିଲେ ସୁଦ୍ଧା, ପତ୍ନୀ ସ୍ୱାମୀର ସହଧର୍ମିଣୀରୂପେ ବିବେଚିତ ହେଉଥିଲା । ସମସ୍ତ ଧର୍ମ କାର୍ଯ୍ୟରେ ସେ ସ୍ୱାମୀ ସହିତ ସହଯୋଗ କରୁଥିଲା । ଋଗ୍‌ବେଦ ଯୁଗରେ ରମଣୀମାନେ ଦଳ ଦଳ ହୋଇ ପର୍ବପର୍ବାଣୀ ଓ ଆନନ୍ଦୋତ୍ସବରେ ଯୋଗ ଦେଉଥିଲେ । ପରିବାରର ଲୋକେ ଅଧିକ ପୁତ୍ରକାମନା କରୁଥିଲେ ସୁଦ୍ଧା, କନ୍ୟା ଅବହେଳିତ ହେଉ ନ ଥିଲା । ପୁତ୍ର ପରି କନ୍ୟାକୁ ମଧ୍ୟ ଅତି ଯତ୍ନରେ ପାଳନ କରି ତାର ଶିକ୍ଷା ପ୍ରତି ସମୁଚିତ ଦୃଷ୍ଟି ଦେବାକୁ ବ୍ୟବସ୍ଥାଗ୍ରନ୍ଥରେ ନିର୍ଦ୍ଦେଶ ଥିଲା । *ବିଶ୍ୱବାରା, ଘୋଷା, ଅପାଲା ପ୍ରଭୃତି ବିଦୁଷୀ ନାରୀ ଅନେକ ବୈଦିକ ସ୍ତୋତ୍ର ରଚନା କରି ଯାଇଅଛନ୍ତି । ସେ ଯୁଗର ଗାର୍ଗୀ, ମୈତ୍ରେୟୀ ପ୍ରଭୃତି କେତେକ ସୁଶିକ୍ଷିତା ନାରୀ ସମାଜରେ ଖୁବ୍ ସୁନାମ ଅର୍ଜନ କରିପାରିଥିଲେ ।

---

* "କନ୍ୟାପ୍ୟେବଂ ପାଳନୀୟା ଶିକ୍ଷଣୀୟାତିଯତ୍ନତଃ" ମନୁ ।

ପ୍ରତି ଗୃହରେ ଅଗ୍ନିଶାଳା ଥିଲା । ସେଥିରେ ସବୁବେଳେ ଅଗ୍ନି ପ୍ରଜ୍ୱଳିତ ରହୁଥିଲା । ବାସଗୃହ କାଷ୍ଠାଦିରେ ନିର୍ମିତ ହେଉଥିଲା । ସ୍ତ୍ରୀ ଲୋକମାନଙ୍କ ପାଇଁ ସ୍ୱତନ୍ତ୍ର ଖଞ୍ଜାର ବ୍ୟବସ୍ଥା ଥିଲା । ଲୋକଙ୍କର ପରିଧେୟ ତିନି ଭାଗରେ ବିଭକ୍ତ ଥିଲା, ଯଥା:— (୧) ନିବି (ଅନ୍ତର୍ବାସ), (୨) ବାସ ବା ପରିଧାନ ଓ (୩) ଅଧିବାସ । ଅଧିବାସ କହିଲେ ଗୂଦର ଓ ଓଢ଼ଣୀକୁ ବୁଝାଉଥିଲା । ସାଧାରଣତଃ କାର୍ପାସ ଓ ପଶମ ବସ୍ତ୍ର ବ୍ୟବହୃତ ହେଉଥିଲା । ମୃଗଚର୍ମ ମଧ୍ୟ କେହି କେହି ପରିଧାନ କରୁଥିଲେ । କି ପୁରୁଷ, କି ସ୍ତ୍ରୀ, ସମସ୍ତେ ଉଷ୍ଣୀଷ ପରିଧାନ କରୁଥିଲେ । ଲୋକେ ଯବ ଓ ଗହମରୁ ନାନା ପ୍ରକାର ଖାଦ୍ୟସାମଗ୍ରୀ ପ୍ରସ୍ତୁତ କରୁଥିଲେ । ଫଳମୂଳ, ପନିପରିବା, ପଶୁମାଂସ, ଦଧି, ଦୁଗ୍ଧ, ଲବଣୀ ପ୍ରଭୃତି ବ୍ୟବହୃତ ହେଉଥିଲା । ଖାଦ୍ୟସ୍ୱରୂପ ଗୋମାଂସର ବ୍ୟବହାର କ୍ରମେ କ୍ରମେ ହ୍ରାସ ପାଇଥିଲା । ଗୋରୁ ଅବଶେଷରେ "ଅଘ୍ନ୍ୟ" (ଅବଧ୍ୟ) ବୋଲି ବିବେଚିତ ହୋଇଥିଲା । ଋଗବେଦ ଯୁଗରେ ଲବଣ ବ୍ୟବହାରର କୌଣସି ସୂଚନା ମିଳେ ନାହିଁ । ଲୋକେ ନଦୀ, ଉତ୍ସ ଓ କୂପରୁ ପାନୀୟ ଜଳ ନେଇ ବ୍ୟବହାର କରୁଥିଲେ । ସୋମ ଓ ସୁରା ନାମକ ଦୁଇଟି ମାଦକ ଦ୍ରବ୍ୟର ଉଲ୍ଲେଖ ବେଦରେ ଦେଖାଯାଏ । ହିମାଳୟର ଶୃଙ୍ଗ ବିଶେଷରେ ସୋମଲତା ନାମକ ଏକ ପ୍ରକାର ଲତା ଜାତ ହେଉଥିଲା । ତହିଁରୁ ଲୋକେ ସୋମରସ ପ୍ରସ୍ତୁତ କରୁଥିଲେ । କେବଳ ଯଜ୍ଞାଦି ଧର୍ମାନୁଷ୍ଠାନରେ ଏହା ବ୍ୟବହୃତ ହେଉଥିଲା । ସୋମରସ ପାନକାରୀ ଏକଶ୍ରେଣୀୟ ବ୍ରାହ୍ମଣ ପୁରୋହିତଙ୍କୁ "ସୋମପା" ବୋଲି କୁହା ହେଉଥିଲା । ସୁରା ଥିଲା ଏକ ପ୍ରକାର ମଦ୍ୟ । ସୁରାର ବ୍ୟବହାର ପର ଯୁଗରେ ଗର୍ହିତ ବିବେଚିତ ହୋଇଥିଲା । ଧାବନ (ଦୌଡ଼) ମୃଗୟା, ରଣ-ନୃତ୍ୟ

(War-dance), ରଥ ପ୍ରତିଯୋଗିତା ଥିଲା ଲୋକମାନଙ୍କର ବଶିଷ୍ଟ ଆମୋଦ-ପ୍ରମୋଦ । ବାଜପେୟ ଯଜ୍ଞର ଏକ ପ୍ରଧାନ ଅଙ୍ଗ ଥିଲା ରଥ ପ୍ରତିଯୋଗିତା । ଏ ସମସ୍ତ ଛଡ଼ା ଗୀତବାଦ୍ୟ ଓ ଦ୍ୟୁତ କ୍ରୀଡ଼ାରେ ମଧ୍ୟ ଲୋକେ ଚିତ୍ତବିନୋଦନ କରୁଥିଲେ । ସତୀଦାହ ସେ ଯୁଗରେ ଅଜ୍ଞାତ ଥିଲା ।

ପ୍ରଥମେ ଆର୍ଯ୍ୟମାନେ ପଲ୍ଲୀପ୍ରିୟ ଥିଲେ । ଋଗ୍‌ବେଦରେ ନଗରର ଉଲ୍ଲେଖ ନାହିଁ । ପରେ ନଗରମାନ ପ୍ରତିଷ୍ଠିତ ହୋଇଥିଲା । ଗ୍ରାମର ମୁଖ୍ୟବ୍ୟକ୍ତିଙ୍କୁ ଗ୍ରାମଣୀ କୁହାଯାଉଥିଲା । ଗ୍ରାମଣୀ ଗ୍ରାମ-ଶାସନ କରୁଥିଲେ ଓ ଯୁଦ୍ଧବେଳେ ପରିବାରର ମୁଖ୍ୟ ବ୍ୟକ୍ତି କୁଳପମାନଙ୍କୁ (heads of families) ନେଇ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଉଥିଲେ । କୃଷି ଲୋକମାନଙ୍କର ପ୍ରଧାନ ବ୍ୟବସାୟ ଥିଲା । ତା ସଙ୍ଗେ ସଙ୍ଗେ ସେମାନେ ପଶୁପାଳନ ମଧ୍ୟ କରୁଥିଲେ । ଶିଳ୍ପ-ବାଣିଜ୍ୟ ମଧ୍ୟ ଲୋକ ସମାଜରେ ପ୍ରଚଳିତ ଥିଲା । ବଢ଼େଇ, କମାର କୁମ୍ଭାର, ମୋଚି, ତନ୍ତୀ ପ୍ରଭୃତି ଶିଳ୍ପଜୀବୀମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ।

**ଗ୍ରାମ, ବିଷ୍ ଓ ଜନପଦ:**—କେତେଗୁଡ଼ିଏ ପରିବାର ନେଇ ଗୋଟିଏ ଗ୍ରାମ ଗଠିତ ହେଉଥିଲା । ଗ୍ରାମ ଛଡ଼ା ବିଷ୍ ଓ 'ଜନ'ର ଉଲ୍ଲେଖ ମଧ୍ୟ ଋଗ୍‌ବେଦରେ ଦେଖାଯାଏ । ଗ୍ରାମ, ବିଷ୍ ଓ ଜନ ମଧ୍ୟରେ କପରି ସମ୍ପର୍କ ଥିଲା ତାହା ନିର୍ଦ୍ଦିଷ୍ଟ ଭାବରେ ଜଣାଯାଏ ନାହିଁ । ତେବେ 'ବିଷ୍' 'ଜନ'ର ଏକ ଅଂଶ ଥିଲାପରି ପ୍ରତୀୟମାନ ହୁଏ । ଏକ ପ୍ରାଚୀନ ବୌଦ୍ଧ ଗ୍ରନ୍ଥରେ ୧୬ଟି ଜନପଦର ନାମୋଲ୍ଲେଖ ଦେଖାଯାଏ, ଯଥା:—ଅଙ୍ଗ, ମଗଧ, କାଶୀ, କୋଶଳ ବ୍ରିଜି ମଲ୍ଲ, ଚେଦି, ବତ୍ସ, କୁରୁ, ପାଞ୍ଚାଳ, ମତ୍ସ୍ୟ, ସୁରସେନ, ଅବନ୍ତୀ, ଗାନ୍ଧାର ଓ କାମ୍ବୋଜ । ଋଗ୍‌ବେଦ ଯୁଗରେ ରାଜତନ୍ତ୍ର ଶାସନ ପ୍ରଚଳିତ ଥିଲା ।

ରାଷ୍ଟ୍ରର ଶାସକଙ୍କୁ 'ରାଜନ' କୁହାଯାଉଥିଲା । ରାଜପଦ ପୁରୁଷାନୁକ୍ରମିକ ଥିଲା । ପରବର୍ତ୍ତୀ ବୈଦିକ ଯୁଗରେ ରାଜା ଲୋକସାଧାରଣଙ୍କଦ୍ୱାରା ନିର୍ବାଚିତ ହେଉଥିବାର ମଧ୍ୟ ବହୁ ଉଦାହରଣ ଦେଖାଯାଏ । ପୁରୋହିତ ଓ ସେନାନୀ (ସୈନ୍ୟାଧ୍ୟକ୍ଷ) ରାଜାଙ୍କୁ ରାଜକାର୍ଯ୍ୟରେ ସାହାଯ୍ୟ କରୁଥିଲେ । ସେତେବେଳେ ସମିତି ଓ ସଭା ନାମରେ ଦୁଇଟି ଅନୁଷ୍ଠାନ ଥିଲା । ରାଜାଙ୍କ ସହିତ ଏହି ଦୁଇଟି ଅନୁଷ୍ଠାନର କପରି ସମ୍ପର୍କ ଥିଲା ତାହା ସ୍ପଷ୍ଟ ଭାବରେ ଜଣାଯାଏ ନାହିଁ । ତେବେ ଏତିକି କୁହାଯାଇପାରେ ଯେ, ରାଜା "ନରପତି" ବୋଲି କଥିତ ହେଉଥିଲେ ସୁଦ୍ଧା, ପ୍ରଜାସାଧାରଣଙ୍କ ସମ୍ମତି କ୍ରମେ ରାଜ୍ୟ ଶାସନ କରୁଥିଲେ । ପରବର୍ତ୍ତୀ ବୈଦିକ ଯୁଗରେ କେତେକ ରାଜା "ସାର୍ବଭୌମ" ବା "ଏକରାଟ୍" ହେବାକୁ ଚେଷ୍ଟା କରିଥିବାର ଦେଖାଯାଏ । ରାଜସୂୟ, ବାଜପେୟ ବା ଅଶ୍ୱମେଧ ଯଜ୍ଞ ସମ୍ପନ୍ନ କରି ସେମାନେ ଏହି ସାର୍ବଭୌମତ୍ୱ ଲାଭ କରୁଥିଲେ । କୌଣସି କୌଣସି ରାଜା, "ସମ୍ରାଟ" "ଭୋଜ", "ସ୍ୱରାଟ" ବା "ବିରାଟ" ଉପାଧି ମଧ୍ୟ ଗ୍ରହଣ କରୁଥିଲେ । ଋଗ୍‌ବେଦ ଯୁଗ ପରେ ନାନା ଶ୍ରେଣୀର ରାଜକର୍ମଚାରୀ ରାଜକାର୍ଯ୍ୟରେ ନିଯୁକ୍ତ ହେଲେ, ଯଥା:--(୧) ସଂଗ୍ରହିତା (କୋଷାଧ୍ୟକ୍ଷ), ଭାଗଦୁଘ (ରାଜସ୍ୱ ଆଦାୟକାରୀ), ସୂତ ( ରଥଚାଳକ ବା ରାଜଚାରଣ ), ଗୋବିକର୍ତ୍ତନ ( ମୃଗୟା-ସହଚର ), ସଚିବ ( ମନ୍ତ୍ରଣାଦାତା ), ଶତପତି ( ଶତଗ୍ରାମ ଶାସକ ) ଅଧ୍ୟକ୍ଷ ( ବିଭିନ୍ନ ବିଭାଗୀୟ କର୍ମଚାରୀ ) ଇତ୍ୟାଦି ।

**ଜାତି ପ୍ରଥା:**—ପ୍ରଥମେ ଜାତିପ୍ରଥା ଭାରତରେ ନ ଥିଲା । ଗୌରବର୍ଣ୍ଣ ଆର୍ଯ୍ୟ ଓ କୃଷ୍ଣବର୍ଣ୍ଣ ଆର୍ଯ୍ୟେତର ଲୋକମାନେ ଦୁଇଟି ସ୍ୱତନ୍ତ୍ର ଶ୍ରେଣୀରେ ବିଭକ୍ତ ହୋଇ ରହିଥିଲେ । ଆର୍ଯ୍ୟମାନେ ଆର୍ଯ୍ୟେତର ଶ୍ରେଣୀକୁ ଦାସ, ଦସ୍ୟୁ ବା ଶୂଦ୍ର ନାମରେ ଅଭିହିତ

କରୁଥିଲେ । ପରେ ଆର୍ଯ୍ୟଶ୍ରେଣୀର ଲୋକେ ତିନି ଜାତିରେ ବିଭକ୍ତ ହେଲେ । ପୁରୁଷସୂକ୍ତ ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ ପରମ ପୁରୁଷଙ୍କର ବକ୍ତ୍ର ବା ମୁଖରୁ ବ୍ରାହ୍ମଣ, ବାହୁରୁ ରାଜନ୍ୟ ଓ ଊରୁରୁ ବୈଶ୍ୟ ଜାତିର ସୃଷ୍ଟି ହେଲା ଏବଂ ପାଦରୁ ଶୂଦ୍ରମାନେ ଜାତ ହେଲେ । ଏଥିରୁ ଜଣାଯାଏ, କ୍ରମେ ଭାରତୀୟ ସମାଜ ଚାରି ଜାତିରେ ବିଭକ୍ତ ହୋଇ ପଡ଼ିଲା । ଋଗ୍‌ବେଦ ଯୁଗରେ ଜାତିଭେଦର କଠୋରତା ନ ଥିଲା । ଜାତି ଜାତି ମଧ୍ୟରେ ଅବାଧ ବୈବାହିକ ସମ୍ପର୍କ ପ୍ରତିଷ୍ଠିତ ହୋଇ ପାରୁଥିଲା ଏବଂ ଯେ କୌଣସି ଲୋକ କୌଣସି ବୃତ୍ତି ବା ବ୍ୟବସାୟ ଗ୍ରହଣ କରି ପାରୁଥିଲା । ବ୍ରାହ୍ମଣର ରାଜନ୍ୟ ପରିବାରରୁ ପତ୍ନୀ ଗ୍ରହଣ ଏପରିକି ଆର୍ଯ୍ୟ ଓ ଶୂଦ୍ର ପରିବାର ମଧ୍ୟରେ ବୈବାହିକ ସମ୍ପର୍କ ପ୍ରତିଷ୍ଠାର ବହୁଳ ଉଦାହରଣ ଦେଖିବାକୁ ମିଳେ । ଅସ୍ପୃଶ୍ୟତା ସେତେବେଳେ ଜନସମାଜରେ ଅଜ୍ଞାତ ଥିଲା । ପରବର୍ତ୍ତୀ ଯୁଗ-ମାନଙ୍କରେ ନାନା କଠୋର ବିଧିବିଧାନ ଏହି ଚାତୁର୍ବର୍ଣ୍ଣ ପ୍ରଥାରେ ପ୍ରବେଶ ଲାଭକଲା ଏବଂ ଜାତିପ୍ରଥା ଅତ୍ୟନ୍ତ ସଙ୍କୀର୍ଣ୍ଣ ହୋଇ ପଡ଼ିଲା । ଆର୍ଯ୍ୟଜୀବନ ଚାରିଗୋଟି କଠୋର ଅବସ୍ଥା ବା ଆଶ୍ରମରେ ବିଭକ୍ତ ହେଲା (୧) ବ୍ରହ୍ମଚର୍ଯ୍ୟ, (୨) ଗାର୍ହସ୍ଥ୍ୟ, (୩) ବାନପ୍ରସ୍ଥ ଓ (୪) ସନ୍ନ୍ୟାସ । ପ୍ରଥମାବସ୍ଥାରେ ତିନି ଆର୍ଯ୍ୟଶ୍ରେଣୀର ଲୋକଙ୍କୁ ବେଦାଧ୍ୟୟନ ଓ ଚରିତ୍ରର ନିର୍ମଳତା ସମ୍ପାଦନ କରିବାକୁ ପଡ଼ୁଥିଲା । ସେତେବେଳେ ତାକୁ "ବ୍ରହ୍ମଚାରୀ" ବୋଲି କୁହାଯାଉଥିଲା । ଦ୍ୱିତୀୟ ଅବସ୍ଥାରେ ଆର୍ଯ୍ୟ ସନ୍ତାନ ବିବାହ କରି ସଂସାରରେ ପ୍ରବେଶ କରୁଥିଲା ଏବଂ "ଗୃହସ୍ଥ" ବୋଲି କଥିତ ହେଉଥିଲା । ତୃତୀୟ ଅବସ୍ଥାରେ ସେ ସଂସାର ବନ୍ଧନ ଛିନ୍ନ କରି ବନବାସୀ ହେଉଥିଲା ଏବଂ ତାକୁ କୁହାହେଉଥିଲା "ବାନପ୍ରସ୍ଥୀ" । ଚତୁର୍ଥ ବା ଶେଷ ଅବସ୍ଥାରେ ସେ କେବଳ ପରମପୁରୁଷରେ ଧ୍ୟାନରଖି ମୁକ୍ତିଲାଭ କରିବାକୁ ଯତ୍ନବାନ୍

ହେଉଥିଲା ଏବଂ ତାକୁ "ସନ୍ନ୍ୟାସୀ" ବା "ଯତି" ଆଖ୍ୟା ଦିଆ ହେଉଥିଲା । ଅତି ଅଳ୍ପ ଲୋକ ଏହି ଯତି ଅବସ୍ଥାରେ ଉପନୀତ ହୋଇ ପାରୁଥିଲେ । ଆର୍ଯ୍ୟ ଜୀବନର ଏହି ଚତୁର୍ବିଧ ଅବସ୍ଥାକୁ "ଚତୁରାଶ୍ରମ" ବୋଲି କୁହାଯାଏ ।

## ଜାତିପ୍ରଥାର ସାମାଜିକ ଓ ଅର୍ଥନୈତିକଦିଗ—

କ୍ରମେ କ୍ରମେ ଜାତିପ୍ରଥା ଜଟିଳରୁ ଜଟିଳତର ହୋଇ ଉଠିଲା । ତାର ପୂର୍ବ ସରଳତା ରହିଲା ନାହିଁ । ଋଗବେଦଯୁଗର ପରବର୍ତ୍ତୀ କାଳରେ ବ୍ରାହ୍ମଣ କ୍ଷତ୍ରିୟର ପ୍ରଭାବ ଖୁବ୍ ବଢ଼ିଗଲା । ସେମାନେ ଏପରି କେତେକ ଅଧିକାର ଭୋଗ କଲେ, ଯାହା ବୈଶ୍ୟ ଓ ଶୁଦ୍ର-ମାନଙ୍କୁ ଭୋଗ କରିବାକୁ ଦିଆଗଲା ନାହିଁ । ବୈଶ୍ୟ ଓ ଶୁଦ୍ରଶ୍ରେଣୀ ନାନା ଦିଗରେ ଅତ୍ୟାଚରିତ ହେଲେ । ଲୋକଙ୍କ ପକ୍ଷରେ ଜାତି ପରିବର୍ତ୍ତନ ଦୁରୂହ ହୋଇ ଉଠିଲା । ବ୍ରାହ୍ମଣ ଓ କ୍ଷତ୍ରିୟ ମଧ୍ୟରେ ପ୍ରାଧାନ୍ୟ ନେଇ ଅନେକ ସମୟରେ ବିବାଦ ଉପସ୍ଥିତ ହେଲା । ଦେଶରେ ନାନା ଉପଜାତିର ସୃଷ୍ଟି ହେଲା । ଶୁଦ୍ର ଏକାବେଳକେ ଅସ୍ପୃଶ୍ୟ ବିବେଚିତ ହେଲା । ଏପରିକି କେତେକ ବୈଶ୍ୟଜାତିର ଲୋକେ ମଧ୍ୟ ଅପବିତ୍ର ବୋଲି ପରିଗଣିତ ହେଲେ ।

ମୌର୍ଯ୍ୟ ଯୁଗ ଓ ତାହାର ପରବର୍ତ୍ତୀ କାଳରେ ଜାତି ସ୍ୱାତନ୍ତ୍ର୍ୟ ରକ୍ଷା ଦିଗରେ ଆହୁରି କଠୋର ବ୍ୟବସ୍ଥା ଅବଲମ୍ବନ କରାଗଲା । ଏକ ଜାତିର ଲୋକଙ୍କୁ କୌଣସି କ୍ରମେ ଅନ୍ୟ ଜାତିରେ ବିବାହ କରିବାକୁ କିମ୍ବା ଜାତିଗତବୃତ୍ତି ତ୍ୟାଗ କରିବାକୁ ଦିଆଗଲା ନାହିଁ । ଲୋକ ଜାତିଗତବୃତ୍ତି ପାଳନ କରିବାକୁ ଅପାରଗ ହେଲେ, ଅନ୍ୟ ବୃତ୍ତି ଅବଲମ୍ବନ କରିପାରିଲା ନାହିଁ । ଅନ୍ୟ କାର୍ଯ୍ୟ କରିବାକୁ ତାର ଶକ୍ତି ସାମର୍ଥ୍ୟ ଓ ଶ୍ରଦ୍ଧା ଥିଲେ ସୁଦ୍ଧା ସେ ତାହା କରିବାକୁ ଅକ୍ଷମ ହେଲା । ଫଳତଃ ସମାଜରେ ଅର୍ଥନୈତିକ ଅବନତିର ପଥ ପ୍ରଶସ୍ତ ହେବାକୁ

ଲାଗିଲା । ଉଚ୍ଚ ଜାତିର ଲୋକେ କୃଷିଶିଳ୍ପରେ ଅଂଶ ଗ୍ରହଣ କଲେ ନାହିଁ, ତାହାକୁ ହୀନକର୍ମ ବୋଲି ମନେ କଲେ । କୌଳିକ ସମ୍ମାନ ଓ ସ୍ୱାତନ୍ତ୍ର୍ୟ ରକ୍ଷା ଦିଗରେ ଲୋକେ ଅତିରିକ୍ତ ପରିମାଣରେ ଯତ୍ନବାନ ହେଲେ । ଏହାଦ୍ୱାରା ଦେଶର ସମୂହ ଉନ୍ନତି ବାଧାପାଇଲା, ଭେଦଭାବ ବୃଦ୍ଧିଲାଭ କଲା ଓ ଦେଶର ଏକତା ବିଷମଭାବରେ ବାଧାପ୍ରାପ୍ତ ହେଲା । ସମାଜ ଦୁର୍ବଳରୁ ଦୁର୍ବଳତର ହୋଇ ପଡ଼ିଲା । ସହଜରେ ଓ ସୁବିଧାରେ ଚଳିବା ପାଇଁ ଯେଉଁ ଜାତିବିଭାଗ ପ୍ରଥମେ ଆରମ୍ଭ ହୋଇଥିଲା, ତାହାର ପରିଣତି ବଡ଼ ବିଷମୟ ହୋଇ ଉଠିଲା । ଜାତି ବିଭାଗ ଭାରତର ଏକ କଳଙ୍କ କାଳିମା ରୂପେ ଦେଖାଦେଲା ।

**ଆର୍ଯ୍ୟଧର୍ମ** – ଆର୍ଯ୍ୟ ଧର୍ମ ପ୍ରଥମେ ବଡ଼ ସରଳ ଥିଲା । ଆର୍ଯ୍ୟମାନେ ପ୍ରକୃତିକୁ ପୂଜା କରୁଥିଲେ । ପ୍ରାଚୀନତମ ବୈଦିକ ଦେବତା ଥିଲେ ଦ୍ୟୌ (ଆକାଶ) ଓ ପୃଥିବୀ । ପରେ ସେମାନଙ୍କ ସ୍ଥାନରେ ବରୁଣ ଓ ଇନ୍ଦ୍ର ପୂଜିତ ହେଲେ । ପ୍ରଥମେ ବରୁଣଙ୍କୁ ଆକାଶ ଦେବତା ସ୍ୱରୂପ ପୂଜା କରାଯାଉଥିଲା । ଲୋକେ ବିଶ୍ୱାସ କରୁଥିଲେ ଯେ, ବରୁଣହିଁ ମନୁଷ୍ୟର ପାପମୋଚନ କରିବାକୁ ସମର୍ଥ, ସେ ପାପୀକୁ କ୍ଷମା ଦିଅନ୍ତି । କିଛିକାଳ ପରେ ବରୁଣଙ୍କ ପୂଜା ହ୍ରାସ ପାଇଲା ଓ ଇନ୍ଦ୍ର ପୂଜା ବିଶେଷ ଭାବରେ ପ୍ରଚଳିତ ହେଲା । ଇନ୍ଦ୍ର ଆର୍ଯ୍ୟମାନଙ୍କର ମୁଖ୍ୟ ଦେବତା ରୂପେ ପୂଜିତ ହେଲେ । ବରୁଣ କେବଳ ଜଳଦେବତା ହୋଇ ରହିଲେ । ଇନ୍ଦ୍ର ଓ ବରୁଣଙ୍କ ବ୍ୟତୀତ ବୈଦିକ ଆର୍ଯ୍ୟମାନଙ୍କର ଅନ୍ୟାନ୍ୟ ଉପାସ୍ୟ ଦେବତା ଥିଲେ ମିତ୍ର, ସୂର୍ଯ୍ୟ, ସବିତୃ, ପୂଷା, ନାସତ୍ୟ, ଊଷା, ମରୁତ୍, ବାୟୁ, ରୁଦ୍ର, ବିଷ୍ଣୁ, ପର୍ଜନ୍ୟ, ଅଗ୍ନି, ସୋମ, ସରସ୍ୱତୀ, ବିଧାତୃ, ହିରଣ୍ୟ-ଗର୍ଭ ପ୍ରଜାପତି ପ୍ରଭୃତି । ବୈଦିକ ଦେବତାମାନଙ୍କ ମଧ୍ୟରେ ଦେବୀ

ସଂଖ୍ୟା ତୁଳନାରେ ଦେବ ସଂଖ୍ୟା ଅଧିକ ଦେଖାଯାଏ । ପୃଥିବୀ, ଅଦିତି, ଉଷା ଓ ସରସ୍ୱତୀଙ୍କ ସ୍ଥାନ ପୁରୁଷ ଦେବତାଙ୍କ ସ୍ଥାନର ବହୁ ନିମ୍ନରେ ନିର୍ଦ୍ଦିଷ୍ଟ । ସୈନ୍ଧବସଭ୍ୟତା ଯୁଗରେ ଦେବଦେବୀଙ୍କୁ ଯେପରି ସମାନ ସ୍ଥାନ ଦିଆଯାଉଥିଲା, ବୈଦିକ ଯୁଗରେ ତାହା ପରିଲକ୍ଷିତ ହୁଏ ନାହିଁ । ବୈଦିକ ଆର୍ଯ୍ୟମାନେ ପ୍ରକୃତି ଉପାସନାରୁ ଆରମ୍ଭକରି କ୍ରମେ କ୍ରମେ ଏକେଶ୍ୱରବାଦ ଆଡ଼କୁ ଅଗ୍ରସର ହୋଇଥିଲେ । ହିରଣ୍ୟଗର୍ଭ ଓ ବିଶ୍ୱକର୍ମାଙ୍କ ସ୍ତବରେ ଏହି ଏକେଶ୍ୱର ଉପାସନା ପ୍ରତିଫଳିତ । କେତେକ ବୈଦିକ ସ୍ତୋତ୍ରରେ କୁହାଯାଇଛି:—ଈଶ୍ୱର ଏକ, ମାତ୍ର ସେ ବିଭିନ୍ନ ନାମରେ ଅଭିହିତ ।*

କ୍ରମେ ବୈଦିକ ଆର୍ଯ୍ୟଧର୍ମ ଯାଗ-ଯଜ୍ଞ-ପ୍ରଧାନ ହୋଇଉଠିଲା । ଧର୍ମରେ ନାନା ଅପଦେବତା ଓ ଭୂତପ୍ରେତାଦିର ପୂଜା ପ୍ରବର୍ତ୍ତିତ ହେଲା, ନାନା ମନ୍ତ୍ର ଓ ତନ୍ତ୍ର ସ୍ଥାନ ପାଇଲା । ଅନ୍ୟ ଦିଗରେ ପ୍ରଜାପତିଙ୍କ ପୂଜା ସର୍ବାଧିକ ଆଦର ଲାଭକଲା । ଏହି ପ୍ରଜାପତି ଉପାସନାରେ ଆମ୍ଭେମାନେ ଅବତାରବାଦର ବୀଜ ନିହିତ ଥିବାର ଦେଖୁଁ । ପ୍ରଜାପତି ସ୍ତୋତ୍ରରେ ବର୍ଣ୍ଣିତ ଅଛି ଯେ, ସେ ବରାହରୂପ ଧରି ପୃଥିବୀକୁ ପ୍ରଳୟ ପ୍ଲାବନରୁ ରକ୍ଷା କରିଥିଲେ ।

ପୂର୍ବରୁ କୁହାଯାଇଛି, ବେଦ ଆର୍ଯ୍ୟମାନଙ୍କର ଆଦି ଧର୍ମଗ୍ରନ୍ଥ । ଏହା ଶ୍ରୁତି ନାମରେ ମଧ୍ୟ ଅଭିହିତ । ମୁନିଋଷିମାନେ ଏହା ମୌଖିକ ଭାବରେ ରଚନା କରିଥିଲେ । ବେଦର କେତେକ ସ୍ତୋତ୍ର ସ୍ୱର,

---

*They call him Indra, Mitra, Varuna and Agni, he is the heavenly bird Garutma. To what is one the poets give many a namet. They call it Agni, Yama, Matarisvan.

(Quoted from Advanced History of India)

ଲୟ ସାହାଯ୍ୟରେ ଗାନ କରାହେଉଥିଲା । ସେ ଯୁଗର ବୈଦିକ ସ୍ତୋତ୍ର ପ୍ରଭୃତି ଶୁଣି ଶୁଣି ମନେରଖା ହେଉଥିଲା । ଆଦି ବେଦର ନାମ ଋଗ୍‌ବେଦ । ତା ପରେ ସାମ, ଯଜୁଃ ଓ ଅଥର୍ବ ବେଦର ସୃଷ୍ଟି । ବେଦର ଦୁଇଟି ବିଭାଗ—ସଂହିତା ଓ ବ୍ରାହ୍ମଣ । ସଂହିତା ବିଭାଗରେ କେବଳ ସ୍ତବସ୍ତୁତି ଲକ୍ଷିତ ହୁଏ ଏବଂ ବ୍ରାହ୍ମଣ ବିଭାଗରେ ମୁଖ୍ୟତଃ ଯଜ୍ଞାନୁଷ୍ଠାନ ବିଧି ବର୍ଣ୍ଣିତ । ଆରଣ୍ୟକ ଓ ଉପନିଷଦ ନାମକ ଦୁଇଟି ଗ୍ରନ୍ଥ ବୈଦିକ ସାହିତ୍ୟର ଅନ୍ତର୍ଗତ । ବେଦ ସହିତ ସଂପୃକ୍ତ ଅନ୍ୟ କେତେକ ଗ୍ରନ୍ଥକୁ "ବେଦାଙ୍ଗ" କୁହାଯାଏ । ସେଗୁଡ଼ିକ ମଧ୍ୟ 'ସ୍ମୃତି' ନାମରେ ଆଖ୍ୟାତ । ସ୍ମୃତି ବା ବେଦାଙ୍ଗ ଛଅ ଭାଗରେ ବିଭକ୍ତ, ଯଥା—ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିଷ ।

ଆର୍ଯ୍ୟଧର୍ମ ସମ୍ପର୍କରେ ଏକ ବିଶେଷ ଉଲ୍ଲେଖଯୋଗ୍ୟ ବିଷୟ ଏହି ଯେ, ପ୍ରତିମା-ପୂଜା ଉକ୍ତ ଧର୍ମର ଅନ୍ତର୍ଗତ ନ ଥିଲା । ବହୁକାଳ ପରେ ତାହା ଧର୍ମରେ ପ୍ରବର୍ତ୍ତିତ ହେଲା ଏବଂ ଲୋକେ ମନ୍ଦିର ବା ଦେବାଳୟ ନିର୍ମାଣ ପୂର୍ବକ ନାନା ଦେବଦେବୀଙ୍କର ମୂର୍ତ୍ତି ତହିଁରେ ପ୍ରତିଷ୍ଠା କରି ସେଗୁଡ଼ିକୁ ପୂଜା କଲେ ।

## ଅନୁଶୀଳନୀ

୧ । ସିନ୍ଧୁ-ସଭ୍ୟତା (Indus Valley Civilization ର ସଂକ୍ଷିପ୍ତ ପରିଚୟ ଦିଅ । ମହେଞ୍ଜୋଦାରୋ ଓ ହରପ୍ପା କେଉଁଠାରେ ଅବସ୍ଥିତ ?

୨ । ସିନ୍ଧୁ ସଭ୍ୟତା ଯୁଗରେ ସାଧାରଣ ଜନହିତକର କାର୍ଯ୍ୟ ପ୍ରତି କପରି ଦୃଷ୍ଟି ଦିଆ ହେଉଥିଲା ତାହା ଆଲୋଚନା କର ।

୩ । ସିନ୍ଧୁ ସଭ୍ୟତା ଯୁଗରେ ଲୋକମାନଙ୍କର ସାମାଜିକ ଜୀବନ କପରି ଥିଲା ?

୪ । ପ୍ରାଚୀନ ଗ୍ରୀସ୍‌ର ନଗର ରାଜ୍ୟମାନଙ୍କ ସମ୍ବନ୍ଧରେ ଏକ ସ୍ଥୂଳ ବିବରଣୀ ପ୍ରଦାନ କର ।

୫ । ସ୍ପାର୍ଟା ଓ ଏଥେନ୍‌ସର ସଂସ୍କୃତି ମଧ୍ୟରେ ତୁଳନା କର ପ୍ରତ୍ୟେକର ଉତ୍କର୍ଷ ଓ ଅପକର୍ଷ ସମ୍ବନ୍ଧରେ ମତାମତ ବ୍ୟକ୍ତ କର ।

୬ । 'ଗ୍ରୀକ୍ ନଗର ରାଜ୍ୟମାନଙ୍କ ମଧ୍ୟରେ ଏକତାର ଏକାନ୍ତ ଅଭାବ ଥିଲେ ସୁଦ୍ଧା, ବିଭିନ୍ନ ରାଜ୍ୟର ଲୋକେ କେତେଗୁଡ଼ିଏ ଯୋଗସୂତ୍ରରେ ଆବଦ୍ଧ ଥିଲେ'— ଏ ଉକ୍ତିର ତାତ୍ପର୍ଯ୍ୟ ବିଶଦ ଭାବରେ ବୁଝାଇ ଦିଅ ।

୭ । ପ୍ରାଚୀନ ଗ୍ରୀସ୍‌ର ଧର୍ମ ସମ୍ବନ୍ଧରେ କଣ ଜାଣ ?

୮ । ପେରିକ୍ଲିସ ଯୁଗକୁ ଗ୍ରୀକ୍ ଇତିହାସର ଏକ ସୁବର୍ଣ୍ଣଯୁଗ ବୋଲି କାହିଁକି କୁହାଯାଏ ?

୯ । ଶୂନ୍ୟସ୍ଥାନଗୁଡ଼ିକ ଉପଯୁକ୍ତ ଭାବରେ ପୂର୍ଣ୍ଣ କର:—

(କ) ଇଲିଆଡ୍ ଓ ଅଡ଼ିଶୀ ନାମକ ଦୁଇଟି ମହାକାବ୍ୟ କବି —ଙ୍କ ଦ୍ୱାରା ରଚିତ ହୋଇଥିଲା ।

ଖ ଦେବୀ ଏଥେନାଙ୍କ ମନ୍ଦିର ନାମରେ ଅଭିହିତ । —ନାମକ ଶିଳ୍ପୀ ତାହାର ନିର୍ମାତା । ଏଥେନ୍‌ସର ପ୍ରସିଦ୍ଧ ଶିଳ୍ପୀ—ଉକ୍ତ ମନ୍ଦିର ନିର୍ମାଣରେ ତାଙ୍କୁ ସାହାଯ୍ୟ କରିଥିଲେ ।

(ଗ) ଏଥେନୀୟମାନେ ଗଣତନ୍ତ୍ରର ମୂଳଭିତ୍ତି ସ୍ଥାପନ କରିଥିଲେ— ।

୧୦ । ପ୍ରାଚୀନ ଗ୍ରୀକ୍ ସଭ୍ୟତା ଓ ସଂସ୍କୃତି ସହିତ ପ୍ରାଚୀନ ରୋମୀୟ ସଭ୍ୟତା ଓ ସଂସ୍କୃତିର ତୁଳନା କର ।

୧୧ । ଜଗତକୁ ରୋମୀୟମାନଙ୍କର ବିଶିଷ୍ଟ ଦାନ ହେଉଛି ଆଇନ ବଦ୍ଧ ଶାସନ—ଏ ଉକ୍ତିର ଯଥାର୍ଥ୍ୟ ପ୍ରତିପାଦନ କର ।

୧୨ । ନିମ୍ନଲିଖିତ ଐତିହାସିକ ବ୍ୟକ୍ତିମାନଙ୍କର ପରିଚୟ ଦିଅ:—

ପେରିକ୍ଲସ୍, ସକ୍ରେଟିସ୍, ପ୍ଲେଟୋ, ଏରିଷ୍ଟଟଲ, ସଫୋକ୍ଲସ୍, ଫିଡ଼ିୟାସ୍, କ୍ଲିସଥେନିସ୍, ଟ୍ରିବୋନିଆନ, ସମ୍ରାଟ୍ ଜଷ୍ଟିନିଆନ, ଜୁଲିଅସ ସିଜର ।

୧୩ । ଅରେକଲ (Oracle), ଅଷ୍ଟ୍ରାସିଜମ୍ (Ostracism), କଲୋସିୟମ୍ Colossium), କୋର୍ପସ୍ ଜୁରିସ ସିଭିଲସ୍ (Corpus Juris Civilis); ପାଟ୍ରିସିଆନ (Patrician, ସିନେଟ୍:— ଏଗୁଡ଼ିକ କଣ ବୁଝାଇ ଦିଅ ।

୧୪ । ପ୍ରାଚୀନ ଭାରତୀୟ ଆର୍ଯ୍ୟସମାଜର ଅବସ୍ଥା ବର୍ଣ୍ଣନ କର ।

୧୫ । ଭାରତରେ ଜାତି ପ୍ରଥାର ଉତ୍ପତ୍ତି, ବିକାଶ ଓ ଅବନତି ସମ୍ବନ୍ଧରେ ଆଲୋଚନା କର ।

୧୬ । ପ୍ରାଚୀନ ଆର୍ଯ୍ୟଧର୍ମ ସମ୍ବନ୍ଧରେ ଧାରଣା ଦିଅ । ତାହାକୁ ପ୍ରାଚୀନ ଗ୍ରୀକ୍ଧର୍ମ ସହିତ ତୁଳନା କର ।

୧୭ । ନିମ୍ନଲିଖିତ ବାକ୍ୟଗୁଡ଼ିକ ନିର୍ଭୁଲ ଥିଲେ ✓ ଚିହ୍ନ ଓ ଭ୍ରମାତ୍ମକ ଥିଲେ × ଚିହ୍ନ ଦ୍ୱାରା ଚିହ୍ନିତ କର ଓ ଭ୍ରମାତ୍ମକ ବାକ୍ୟଗୁଡ଼ିକ ଉପଯୁକ୍ତ ଭାବରେ ସଂଶୋଧନ କର:

(କ) ମହେଞ୍ଜୋଦାରୋ ପଞ୍ଜାବର ଓ ହରପ୍ପା ସିନ୍ଧୁ ପ୍ରଦେଶରେ ଅବସ୍ଥିତ ।

(ଖ) ଭାରତର ସିନ୍ଧୁ ସଭ୍ୟତା ଯୁଗରେ ଘୋଟକ ଗୃହପାଳିତ ପଶୁ ନ ଥିଲା ।

(ଗ) ଡ୍ରେକୋଙ୍କ ବିଧି ବ୍ୟବସ୍ଥାଗୁଡ଼ିକ ବଡ଼ ସରଳ ଥିଲା ।

(ଘ) ବେଦର ଅନ୍ୟ ନାମ ସ୍ମୃତି ।

# ତୃତୀୟ ପରିଚ୍ଛେଦ

**ଜୈନ ଓ ବୌଦ୍ଧଧର୍ମ**—ଦୁଇ ଧର୍ମର ପ୍ରଭାବ ଓ ବିସ୍ତୃତି — ଭାରତ ବାହାରେ ଭାରତୀୟ ସଭ୍ୟତା—ମୌର୍ଯ୍ୟ ଓ ଗୁପ୍ତ ଯୁଗର ସଂସ୍କୃତି—ବାଣିଜ୍ୟ ବିସ୍ତାର ଓ ଉପନିବେଶ ପ୍ରତିଷ୍ଠା ।

**ଜୈନ ଓ ବୌଦ୍ଧଧର୍ମର ଆବିର୍ଭାବ**:— ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ନାନା ଦିଗରୁ ପୃଥିବୀ ଇତିହାସରେ ବଡ଼ ଗୁରୁତ୍ୱପୂର୍ଣ୍ଣ । ଧର୍ମ ଦିଗରୁ ଦେଖିବାକୁ ଗଲେ ଏହି ସମୟରେ ପୃଥିବୀର କେତେକ ବିଶିଷ୍ଟ ଅଞ୍ଚଳରେ ନୈତିକ ଓ ଧର୍ମଗତ ଆନ୍ଦୋଳନ ପ୍ରବଳ ହୋଇ ଉଠିଥିଲା । ଗ୍ରୀସ୍ ଦେଶରେ ପିଥାଗୋରାସ୍, ସକ୍ରେଟିସ୍ ଓ ପ୍ଲେଟୋଙ୍କର ଆବିର୍ଭାବ ଏହି ଯୁଗରେ ଘଟିଥିଲା । ଏହି ଯୁଗରେ ଚୀନ ଦେଶରେ ପ୍ରସିଦ୍ଧ ମନୀଷି **କନ୍‌ଫ୍ୟୁସିଅସ୍** ଓ ଲାଓସି (Laotze) ନିଜ ନିଜର ମତ ପ୍ରଚାର କରିଥିଲେ । ଭାରତରେ ମଧ୍ୟ ଏହି ସମୟରେ ବର୍ଦ୍ଧମାନ ମହାବୀର ଓ ଗୌତମ ବୁଦ୍ଧଙ୍କର ଆବିର୍ଭାବ ଘଟିଥିଲା ।



କନ୍‌ଫ୍ୟୁସିଅସ୍

ଏହି ମହାତ୍ମାମାନଙ୍କର ମତ ଓ ଧର୍ମ ପ୍ରଚାର ଫଳରେ ଜଗତରେ ଏକ ନୂତନ ବାୟୁମଣ୍ଡଳର ସୃଷ୍ଟି ହୋଇଥିଲା ।

ଭାରତରେ ବୈଦିକ ଧର୍ମର ଆଦର ଦିନକୁ ଦିନ କମି ଆସିଥିଲା । ଉକ୍ତ ଧର୍ମ ତାର ମୌଳିକ ସରଳତା ତ୍ୟାଗକରି ଜଟିଳ ଆକାର ଧାରଣ କରିଥିଲା । ତାହା ଦିନକୁ ଦିନ ଆଡ଼ମ୍ବରବହୁଳ ବିଧିବିଧାନପୂର୍ଣ୍ଣ ହୋଇ ଉଠିଥିଲା । ବୈଦିକ ଯାଗଯଜ୍ଞ ପ୍ରତି, ବିଶେଷତଃ ଯାଗଯଜ୍ଞର ଅନ୍ତର୍ଗତ ଜୀବବଳି ପ୍ରତି କ୍ରମେ ଲୋକଙ୍କର ଅଶ୍ରଦ୍ଧା ଜାତ ହୋଇଥିଲା । ସାଧାରଣ ଲୋକେ ବ୍ୟୟସାପେକ୍ଷ ଯାଗଯଜ୍ଞ କରି ଧର୍ମାଚରଣ କରିପାରୁ ନ ଥିଲେ । ବ୍ରାହ୍ମଣପ୍ରାଧାନ୍ୟ ଖୁବ୍ ବୃଦ୍ଧି ଲାଭ କରିଥିଲା । ଜାତିପ୍ରଥା କଠୋରରୁ କଠୋରତର ହୋଇଥିଲା । ଧର୍ମଗ୍ରନ୍ଥମାନ ସଂସ୍କୃତ ଭାଷାରେ ଲିପିବଦ୍ଧ ଥିବାରୁ କେବଳ ବିଦ୍ୱାନ୍ ବ୍ୟକ୍ତିମାନଙ୍କ ମଧ୍ୟରେ ତାହା ଆବଦ୍ଧ ରହିଥିଲା । ସାଧାରଣ ଲୋକେ ତାହା ଅନୁଶୀଳନ କରିପାରୁ ନ ଥିଲେ । ତେଣୁ ବୈଦିକ ଧର୍ମ ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ଆରମ୍ଭ ହୋଇଥିଲା । ପୂର୍ବ ଭାରତୀୟ ଅଞ୍ଚଳରେ ଏକ ଶ୍ରେଣୀର ଧର୍ମପ୍ରଚାରକ ବାହାରି ସ୍ୱାଧୀନ ଧର୍ମମତ ପ୍ରଚାର କରି ବୁଲୁଥିଲେ । ସେମାନେ ବେଦ ଓ ବୈଦିକ ପୁରୋହିତ ପ୍ରତି ଶ୍ରଦ୍ଧାବାନ୍ ନ ଥିଲେ, ବେଦବିଧି ମାନୁ ନ ଥିଲେ, ଏପରିକି ସେମାନଙ୍କ ମଧ୍ୟରୁ କେତେକ ମଧ୍ୟ ନାସ୍ତିକ-ମତାବଲମ୍ବୀ ଥିଲେ । କର୍ମବାଦ, ଜନ୍ମାନ୍ତରବାଦ ପ୍ରଭୃତିରେ ବିଶ୍ୱାସ କରୁଥିଲେ ସୁଦ୍ଧା ସେମାନେ ପ୍ରଚାର କରୁଥିଲେ ଯେ, ସଦାଚରଣହିଁ (Right Conduct) କର୍ମବନ୍ଧନ ଓ ସଂସାରବନ୍ଧନ ଛିନ୍ନ କରିବାର ଏକମାତ୍ର ଉପାୟ । ଏହି ସଦାଚରଣର ମୁଖ୍ୟ ବିଷୟ ଥିଲା, ଜୀବନରେ ଅହିଂସାବ୍ରତ ପାଳନ । ସେ ଯୁଗର ସମସ୍ତ ଲୋକଶିକ୍ଷକ ଓ ଧର୍ମ ପ୍ରଚାରକଙ୍କ ମଧ୍ୟରେ ଶ୍ରେଷ୍ଠସ୍ଥାନ ଅଧିକାର କରିଥିଲେ ଦୁଇଜଣ

କ୍ଷତ୍ରିୟ ସନ୍ତାନ; ଜଣେ ବର୍ଦ୍ଧମାନ ମହାବୀର ଓ ଅନ୍ୟ ଜଣଙ୍କ ଗୌତମ ବୁଦ୍ଧ ।

**ବର୍ଦ୍ଧମାନ ମହାବୀର:**—ଉତ୍ତର ବିହାର ଅନ୍ତର୍ଗତ ବୈଶାଳୀ ନିକଟବର୍ତ୍ତୀ କୁଣ୍ଡପୁର ବା କୁଣ୍ଡଗ୍ରାମ ନାମକ ସ୍ଥାନରେ ଜ୍ଞାତିକ କ୍ଷତ୍ରିୟକୁଳରେ ବର୍ଦ୍ଧମାନଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ସିଦ୍ଧାର୍ଥ ଓ ମାତାଙ୍କ ନାମ ତ୍ରିଶଳା । ଯୌବନରେ ସେ ଯଶୋଦା ନାମ୍ନୀ ରାଜକୁମାରୀଙ୍କ ପାଣି ଗ୍ରହଣ କରିଥିଲେ । ତିରିଶ ବର୍ଷ ବୟସରେ ସେ ସଂସାର ତ୍ୟାଗ କରି ସନ୍ନ୍ୟାସ ଅବଲମ୍ବନପୂର୍ବକ ବାର ବର୍ଷ କାଳ କଠୋର ତପସ୍ୟାରେ ନିୟୁକ୍ତ ରହି ଅବଶେଷରେ ପୂର୍ବ ଭାରତର ଋଜୁପାଳିକା ନାମକ ନଦୀ ତୀରରେ ଦିବ୍ୟଜ୍ଞାନ ଲାଭ କରିଥିଲେ ଏବଂ ଜିନ ( ରିପୁଜୟୀ ) ଓ ମହାବୀର ନାମରେ ପରିଚିତ ହୋଇଥିଲେ । "ନିର୍ଗ୍ରନ୍ଥ" ନାମକ ସଂସାର ବନ୍ଧନମୁକ୍ତ ସନ୍ନ୍ୟାସୀ ସମ୍ପ୍ରଦାୟର ନେତୃତ୍ୱ ଗ୍ରହଣ କରି ସେ ତିରିଶ ବର୍ଷକାଳ ନାନାସ୍ଥାନରେ ଧର୍ମପ୍ରଚାର କରି ବୁଲିଥିଲେ । ତାଙ୍କ ପ୍ରଚାରିତ ଧର୍ମ ଜୈନଧର୍ମ ନାମରେ ପ୍ରସିଦ୍ଧ ଏବଂ ଉକ୍ତ **ଧର୍ମାବଲମ୍ବୀ**ମାନେ ଜୈନ ନାମରେ



ମହାବୀର

ପରିଚିତ । ମହାବୀର ୭୨ ବର୍ଷ ବୟସରେ ଦକ୍ଷିଣ ବିହାର ଅନ୍ତର୍ଗତ ପାବା ନାମକ ସ୍ଥାନରେ ଇହଲୀଳା ସମ୍ବରଣ କରିଥିଲେ । ସମ୍ଭବତଃ ଖ୍ରୀ: ପୂ: ୬୨୮ ରେ ତାଙ୍କର ପରଲୋକ ପ୍ରାପ୍ତି ହୋଇଥିଲା । କେତେକ ଐତିହାସିକଙ୍କ ମତରେ ଖ୍ରୀ: ପୂ: ୪୬୮ ତାଙ୍କର ଦେହତ୍ୟାଗର ସମୟ ।

ଜୈନମାନଙ୍କ ମତରେ ଚବିଶ ଜଣ ତୀର୍ଥଙ୍କର ବା ମୁକ୍ତିମାର୍ଗ ପ୍ରଦର୍ଶକ ମହାପୁରୁଷ ଜୈନଧର୍ମ ପ୍ରଚାର କରିଥିଲେ । ସେମାନଙ୍କର ମଧ୍ୟରେ ଋଷଭ ପ୍ରଥମ, ପାର୍ଶ୍ୱନାଥ ତ୍ରୟୋବିଂଶ ଓ ବର୍ଦ୍ଧମାନ ମହାବୀର ଚତୁର୍ବିଂଶ ତୀର୍ଥଙ୍କର । ତେବେ ସାଧାରଣତଃ ମହାବୀରଙ୍କୁ ଜୈନଧର୍ମର ପ୍ରକୃତ ପ୍ରବର୍ତ୍ତକ ବୋଲି ଧରାଯାଏ ।

**ଜୈନଧର୍ମ:**—ମହାବୀରଙ୍କ ପୂର୍ବରୁ ତୀର୍ଥଙ୍କର ପାର୍ଶ୍ୱନାଥ ଚାରୋଟି ନୀତି ପ୍ରଚାର କରି ଯାଇଥିଲେ ଯଥା—ଅହିଂସା, ସତ୍ୟ, ଅଚୌର୍ଯ୍ୟ ଓ ଅପରିଗ୍ରହ । ଅର୍ଥାତ୍; ଜୀବହିଂସା କରିବ ନାହିଁ, ମିଥ୍ୟା କହିବ ନାହିଁ, ଚୋରି କରିବ ନାହିଁ ଓ ବିଷୟାସକ୍ତି ରଖିବ ନାହିଁ । ମହାବୀର ମଧ୍ୟ ଏହି ଚାରୋଟି ନୀତି ଗ୍ରହଣ କରିଥିଲେ ଓ ସେଗୁଡ଼ିକ ସାଙ୍ଗକୁ ପଞ୍ଚମ ନୀତି "ବ୍ରହ୍ମଚର୍ଯ୍ୟ" ବା ଜିତେନ୍ଦ୍ରିୟ ଯୋଗକରିଥିଲେ । ସେ କହିଥିଲେ, ଜୀବନରେ ଏହି ପାଞ୍ଚଟି ନୀତି ପାଳନ କରି ସତ୍ ବିଶ୍ୱାସ, ସତ୍ ଜ୍ଞାନ ଓ ସତ୍ ଆଚରଣ ରୂପକ "ତ୍ରିମାର୍ଗ" ଅବଲମ୍ବନ କରି ଚାଲିଲେ; ଲୋକ ଅକ୍ଳେଶରେ "ସିଦ୍ଧଶୀଳା" ବା ଜନ୍ମମୁକ୍ତି ଲାଭ କରିପାରେ । ଜୈନଧର୍ମ ବିଶ୍ୱସ୍ରଷ୍ଟା କୌଣସି ପରମେଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର କରେ ନାହିଁ; ମନୁଷ୍ୟର ଅନ୍ତର୍ନିହିତ ଯୁକ୍ତିର ପରିପୂର୍ଣ୍ଣ ବିକାଶକୁ ଐଶୀଶକ୍ତି ବୋଲି ମନେକରେ । ଜୈନମାନେ ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷ, ଲତା, ଜଳ, ଶୈଳ ପ୍ରଭୃତି ସମସ୍ତଙ୍କର ଆତ୍ମା ଅଛି ବୋଲି ବିଶ୍ୱାସ କରନ୍ତି । ସେମାନେ ବେଦ

ଓ ଜାତିଭେଦ ମାନନ୍ତି ନାହିଁ, ଅତିମାତ୍ରାରେ ଅହିଂସା ଆଚରଣ କରନ୍ତି, ନିର୍ବାଣ ବା ମୁକ୍ତିଲାଭ ପାଇଁ ଆତ୍ମପୀଡ଼ନ, ଏପରିକି, ଆତ୍ମହତ୍ୟାକୁ ମଧ୍ୟ ଅନୁମୋଦନ କରନ୍ତି ଓ ହିନ୍ଦୁମାନଙ୍କ ପରି ସେମାନେ କର୍ମବାଦ ଓ ପୁନର୍ଜନ୍ମରେ ବିଶ୍ୱାସ ରଖନ୍ତି । କାଳକ୍ରମେ ଜୈନମାନେ ଶ୍ୱେତାମ୍ବର ଓ ଦିଗମ୍ବର ନାମକ ଦୁଇ ସମ୍ପ୍ରଦାୟରେ ବିଭକ୍ତ ହୋଇପଡ଼ିଥିଲେ । ଯେଉଁମାନେ ଶ୍ୱେତବସ୍ତ୍ର ପରିଧାନ କରୁଥିଲେ ସେମାନଙ୍କୁ ଶ୍ୱେତାମ୍ବର ଓ ଯେଉଁମାନେ ଉଲଗ୍ନ ରହୁଥିଲେ, ସେମାନଙ୍କୁ ଦିଗମ୍ବର କୁହାଯାଉଥିଲା । ଦିଗମ୍ବରମାନେ ମହାବୀରଙ୍କର ନୀତିନିର୍ଦ୍ଦେଶ ସମ୍ପୂର୍ଣ୍ଣରୂପେ ପାଳନ କରୁଥିଲେ । ଶ୍ୱେତାମ୍ବରମାନେ ଭଦ୍ରବାହୁ ନାମକ ଜୈନ ସନ୍ନ୍ୟାସୀଙ୍କ ନିର୍ଦ୍ଦେଶ-କ୍ରମେ ଉଲଗ୍ନତା ବର୍ଜନ କରିଥିଲେ ।

ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀର ଶେଷ ବେଳକୁ ପାଟଳୀପୁତ୍ର ନଗରୀରେ ଅନୁଷ୍ଠିତ ଜୈନ ମହାସଭାରେ ଜୈନଧର୍ମର ନୀତିଗୁଡ଼ିକ ଦ୍ୱାଦଶଖଣ୍ଡରେ ସଙ୍କଳିତ ହୋଇ ଅଙ୍ଗ ନାମରେ ପ୍ରାକୃତ ଭାଷାରେ ଲିଖିତ ହୋଇଥିଲା । ପଞ୍ଚମ ବା ଷଷ୍ଠ ଶତାବ୍ଦୀରେ ଗୁଜରାଟ ଅନ୍ତର୍ଗତ ବଲଭୀଠାରେ ଆଉ ଗୋଟିଏ ଜୈନ ମହାସଭାରେ ଜୈନଧର୍ମର ନୀତି ସମ୍ପୂର୍ଣ୍ଣ ରୂପେ ସଂକଳିତ ହେଲା । ଏହି ସଂକଳିତ ଶାସ୍ତ୍ର ଅଙ୍ଗ, ଉପାଙ୍ଗ, ମୂଳସୂତ୍ର ପ୍ରଭୃତି ନାନାଖଣ୍ଡରେ ବିଭକ୍ତ ହେଲା ।

**ଜୈନଧର୍ମର ପ୍ରସାର:**—ଜୈନଧର୍ମ ପ୍ରଥମେ ପୂର୍ବ ଭାରତରେ ପ୍ରଚଳିତ ହୋଇ, କ୍ରମେ ପଶ୍ଚିମ ଓ ଦକ୍ଷିଣ ଭାରତକୁ ପ୍ରସାରଲାଭ କରିଥିଲା । ପ୍ରବାଦ ଅଛି, ମୌର୍ଯ୍ୟ ସମ୍ରାଟ ଚନ୍ଦ୍ରଗୁପ୍ତ ଏହି ଧର୍ମ ଗ୍ରହଣ କରିଥିଲେ । ଭାରତ ବାହାରେ ଜୈନଧର୍ମ ପ୍ରଚଳିତ ହୋଇ ନ ଥିଲା । ଅନେକ ଦିନ ପର୍ଯ୍ୟନ୍ତ ତାହା ଦକ୍ଷିଣ ଓ ପଶ୍ଚିମ ଭାରତରେ ପ୍ରବଳ ହୋଇ ରହିପାରିଥିଲା । ଅଦ୍ୟାବଧି ଗୁଜରାଟ ଓ ରାଜପୁତନାରେ

ଅନେକ ଜୈନଧର୍ମାବଲମ୍ବୀ ଦେଖାଯାନ୍ତି । ଆମ ଓଡ଼ିଶାରେ ଜୈନଧର୍ମ ତାର ପ୍ରଭାବ ବିସ୍ତାର କରିଥିଲା । ଖଣ୍ଡଗିରିର ଜୈନ ମନ୍ଦିର ଓ ଉଦୟଗିରିର ଗୁମ୍ଫାମାନ ଉକ୍ତ ପ୍ରଭାବର ପରିଚୟ ଦିଏ । କଥିତ ଅଛି; ସମ୍ରାଟ ଖାରବେଳ ଜୈନ ସନ୍ନ୍ୟାସୀ ରୂପେ ଶେଷ ଜୀବନ କଟାଇଥିଲେ ।

**ଗୌତମ ବୁଦ୍ଧ** ମହାବୀରଙ୍କ ସମସାମୟିକ ଧର୍ମପ୍ରବର୍ତ୍ତକ ଗୌତମ ବୁଦ୍ଧ ହିମାଳୟ ପାଦଦେଶରେ ଅବସ୍ଥିତ କପିଳବାସ୍ତୁ ନାମକ ଗଣତାନ୍ତ୍ରିକ ରାଜ୍ୟର ଶାକ୍ୟବଂଶୀୟ ରାଜା ଶୁଦ୍ଧୋଦନଙ୍କ ପୁତ୍ର ଥିଲେ । ଦେବଦହର ରାଜକନ୍ୟା ମାୟା ତାଙ୍କର ଜନନୀ । ଗୌତମଙ୍କର ଅନ୍ୟ ନାମ ସିଦ୍ଧାର୍ଥ । ସିଦ୍ଧାର୍ଥଙ୍କ ଜନ୍ମ ପରେ ମାୟା ଦେବୀଙ୍କର ମୃତ୍ୟୁ ହେବାରୁ, ବିମାତା ଗୌତମୀ ତାଙ୍କର ଲାଳନପାଳନର ଭାର ନେଲେ । ଷୋହଳ ବର୍ଷ ବୟସରେ ଯଶୋଧାରା ନାମ୍ନୀ ରୂପବତୀ ରାଜକନ୍ୟାଙ୍କ ସହିତ ତାଙ୍କର ବିବାହ ସମ୍ପନ୍ନ ହେଲା । ଯଶୋଧାରାଙ୍କ ଗର୍ଭରୁ ତାଙ୍କର



ବୁଦ୍ଧଦେବ

ଏକ ପୁତ୍ର ସନ୍ତାନ ଜାତ ହେଲା ପରେ ସେ ଊନତ୍ରିଂଶ ବର୍ଷ ବୟସରେ ସଂସାରବିରାଗୀ ହୋଇ ସନ୍ନ୍ୟାସବ୍ରତ ଅବଲମ୍ବନ କଲେ । ଜରା-ବ୍ୟାଧି-ମୃତ୍ୟୁପୂର୍ଣ୍ଣ ସଂସାରରେ ମାନବ ଜୀବନ କେବଳ ଦୁଃଖପୂର୍ଣ୍ଣ—ଏହା ଅନୁଭବ କରି ସେ ମୁକ୍ତିଲାଭର ଉପାୟ ଅନୁସନ୍ଧାନ କଲେ । ଗଭୀର ଶାସ୍ତ୍ରାଧ୍ୟୟନ ଓ କଠୋର ତପସ୍ୟା ପରେ କୌଣସି ଫଳଲାଭ ନ ହେବାରୁ ଗୌତମ ନିରଞ୍ଜନା ନଦୀକୂଳବର୍ତ୍ତୀ ଏକ ପିପ୍‌ପଳ ବୃକ୍ଷତଳେ ଧ୍ୟାନମଗ୍ନ ରହି ଅବଶେଷରେ ଦିବ୍ୟଜ୍ଞାନ ଲାଭ କଲେ । ସେହିଦିନଠାରୁ ସେ "ବୁଦ୍ଧ" ନାମରେ ପରିଚିତ ହେଲେ । ପ୍ରଥମେ ସେ କାଶୀ ନିକଟବର୍ତ୍ତୀ ସାରନାଥଠାରେ ଧର୍ମପ୍ରଚାର ଆରମ୍ଭ କଲେ । ତାଙ୍କ ପ୍ରଚାରିତ ଧର୍ମକୁ ବୌଦ୍ଧଧର୍ମ କୁହାଯାଏ । ବୁଦ୍ଧ ଏକ ଶକ୍ତିଶାଳୀ ସଂଘ ପ୍ରତିଷ୍ଠା କରି ୪୫ ବର୍ଷକାଳ ଧର୍ମ ପ୍ରଚାର କରି ବୁଲିଲେ । ଅବଶେଷରେ ୮୦ ବର୍ଷ ବୟସରେ ଆଧୁନିକ ଉତ୍ତର ପ୍ରଦେଶ ଅନ୍ତର୍ଗତ କୁଶୀନଗର (କାଶିଆ ନାମକ ସ୍ଥାନରେ ପ୍ରାୟ ଖ୍ରୀ: ପୂ: ୪୮୬ରେ ସେ ଦେହତ୍ୟାଗ କରି "ପରିନିର୍ବାଣ" ଲାଭକଲେ ।

ବୌଦ୍ଧଧର୍ମ ବୁଦ୍ଧ ଚାରୋଟି ମୂଳସତ୍ୟ ବା "ଆର୍ଯ୍ୟ ସତ୍ୟ" ନିର୍ଣ୍ଣୟ କରିଥିଲେ । ତାହା ହେଉଛି:—୧ ଜୀବନ ଦୁଃଖପୂର୍ଣ୍ଣ, ୨) ଦୁଃଖର କାରଣ ତୃଷ୍ଣା ବା କାମନା, (୩) ତୃଷ୍ଣାର ବିନାଶରେ ଦୁଃଖର ବିନାଶ ବା ନିର୍ବାଣ ଓ (୪) ସନ୍ମାର୍ଗ ଅବଲମ୍ବନହିଁ ନିର୍ବାଣଲାଭର ଉପାୟ । ବୁଦ୍ଧ ନିର୍ବାଣପ୍ରାପ୍ତିର ଆଠଟି ପନ୍ଥା ନିର୍ଦ୍ଦେଶ କରିଯାଇଅଛନ୍ତି । ସେହି "ଅଷ୍ଟପନ୍ଥା" ହେଉଛି—ସତ୍‌ବାକ୍ୟ, ସତ୍‌ଚିନ୍ତା, ସତ୍‌କର୍ମ, ସତ୍‌ସଂକଳ୍ପ, ସତ୍‌ଜୀବନ, ସତ୍‌ଚେଷ୍ଟା, ସତ୍-ଦର୍ଶନ ଓ ସତ୍‌ସମାଧି । ଏହି ଅଷ୍ଟାଙ୍ଗ ସାଧନାରେ କଠୋର ତପସ୍ୟାର ବା ସାଂସାରିକ ଭୋଗବିଳାସର ସ୍ଥାନ ନାହିଁ । ବୁଦ୍ଧ ଶିକ୍ଷା

ଦେଇଯାଇଛନ୍ତି—ଜୀବହିଂସା କରିବ ନାହିଁ, ମିଥ୍ୟା କହିବ ନାହିଁ, ଚୋରି କରିବ ନାହିଁ, କାହାର ନିନ୍ଦାରଟନା କରିବ ନାହିଁ, ଦୋଷ ଦେଖିବ ନାହିଁ, ବ୍ୟଭିଚାର କରିବ ନାହିଁ, ଜିହ୍ୱା କଳୁଷିତ କରିବ ନାହିଁ, ଲୋଭବର୍ଜନ କରିବ ଓ ଆତ୍ମଜ୍ଞାନ ଅର୍ଜନ କରିବ । ଏହି ଦଶଟି ନୀତିର ନାମ "ଦଶଶୀଳ" । ବୌଦ୍ଧମାନେ ବେଦର ମାହାତ୍ମ୍ୟ ସ୍ୱୀକାର କରନ୍ତି ନାହିଁ, ଯାଗଯଜ୍ଞରେ ବିଶ୍ୱାସ କରନ୍ତି ନାହିଁ, ବିଶ୍ୱସ୍ରଷ୍ଟା କୌଣସି ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ, କିନ୍ତୁ କର୍ମବାଦ ଓ ଜନ୍ମାନ୍ତରବାଦ ମାନନ୍ତି । ବୌଦ୍ଧଧର୍ମ ଗ୍ରନ୍ଥ "ତ୍ରିପିଟକ"ନାମରେ ଅଭିହିତ । ଏହା ତିନି ଭାଗରେ ବିଭକ୍ତ ଯଥା:— (୧) ସୂତ୍ରପିଟକ ( ବୁଦ୍ଧଙ୍କ ଉପଦେଶାବଳୀ ), (୨) ବିନୟପିଟକ (ବୌଦ୍ଧଭିକ୍ଷୁ ଓ ଭିକ୍ଷୁଣୀଙ୍କ ପାଇଁ ନିୟମାବଳୀ) ଓ (୩) ଅଭିଧର୍ମ ପିଟକ (ବୌଦ୍ଧ ଦର୍ଶନ ) ।

**ସମସାମୟିକ ସମାଜ ଉପରେ ବୌଦ୍ଧଧର୍ମର ପ୍ରଭାବ:—** ବୌଦ୍ଧଧର୍ମ ନାନା କାରଣରୁ ତତ୍କାଳୀନ ସମାଜକୁ ନାନା ଭାବରେ ପ୍ରଭାବିତ କରିଥିଲା । ବୌଦ୍ଧଧର୍ମର ନୀତି ଖୁବ୍ ସରଳ ଥିଲା । ଏହା ସହଜରେ ଜନସମାଜକୁ ଆକର୍ଷଣ କରିପାରିଥିଲା । ଏଥିରେ ଜାତିଭେଦ ଓ ଜଟିଳ ବୈଦିକ ଯାଗ ଯଜ୍ଞାଦିର ଅନୁଷ୍ଠାନ ନ ଥିବାରୁ ଏହା ଜନସମାଜର ଆଦର ଲାଭ କରିଥିଲା । ବୌଦ୍ଧଧର୍ମ ସମୟୋପଯୋଗୀ ଧର୍ମ ଥିଲା । ବୁଦ୍ଧଙ୍କର ଧର୍ମନୀତିରେ ଲୋକେ ଉଦାରତାର ସନ୍ଧାନ ପାଇଥିଲେ । ବୁଦ୍ଧ ସବୁ ଜାତିର ଲୋକଙ୍କୁ ସମାନ ମନେ କରୁଥିଲେ ଓ ତଦନୁସାରେ ଶିଷ୍ୟ ଗ୍ରହଣ କରୁଥିଲେ । ତଦ୍ୱାରା ସମାଜରେ ଭେଦଭାବ ବହୁ ପରିମାଣରେ ହ୍ରାସ ପାଇଥିଲା । ଧନୀଦରିଦ୍ର, ବ୍ରାହ୍ମଣଅବ୍ରାହ୍ମଣ, ଉଚ୍ଚନୀଚ—ଏହି ଭେଦଭାବ ମୂଳରେ ବୌଦ୍ଧଧର୍ମ ପ୍ରବଳ କୁଠାରାଘାତ କରିଥିଲା ।

ସମାଜରେ ସାମ୍ୟମୈତ୍ରୀର ଆଦର ଓ ପ୍ରଭାବ ବୃଦ୍ଧିଲାଭ କରିଥିଲା । ବୁଦ୍ଧଙ୍କର ଅହିଂସାନୀତି ସମାଜରେ ଅହିଂସାର ନୂତନ ବାତାବରଣ ସୃଷ୍ଟି କରିଥିଲା । ଲୋକେ ପୂର୍ବରୁ ଯେତେ ପରିମାଣରେ ଆମିଷାଶୀ ଥିଲେ, ଆଜ ସେତେ ପରିମାଣରେ ଆମିଷାଶୀ ରହିଲେ ନାହିଁ, ଅନେକେ ନିରାମିଷ ଭୋଜନର ପକ୍ଷପାତୀ ହେଲେ । ପଶୁବଳି ନିନ୍ଦନୀୟ ବିବେଚିତ ହେଲା । ବୌଦ୍ଧନୀତି ପାଲିଭାଷାରେ ପ୍ରଚାରିତ ହେବା ଫଳରେ ଉକ୍ତ ଭାଷା ଜନସମାଜରେ ସମ୍ମାନଜନକ ସ୍ଥାନ ଲାଭକଲା । ପ୍ରଥମେ ବ୍ରାହ୍ମଣମାନେ ବୌଦ୍ଧ ଧର୍ମର ବିରୋଧ କରିଥିଲେ, କିନ୍ତୁ ଅଶୋକ, କନିଷ୍କ ଓ ହର୍ଷବର୍ଦ୍ଧନଙ୍କ ଭଳି ପ୍ରବଳ ପରାକ୍ରାନ୍ତ ରାଜାମାନଙ୍କର ସମର୍ଥନ ଲାଭକରି ତାହା ଦେଶରେ ବହୁକାଳପର୍ଯ୍ୟନ୍ତ ପ୍ରଭାବଶାଳୀ ହୋଇ ରହିଥିଲା । ଭାରତୀୟ ଚିତ୍ରଶିଳ୍ପ ଓ ସ୍ଥାପତ୍ୟ ଉପରେ ବୌଦ୍ଧଧର୍ମ ବିଶେଷ ପ୍ରଭାବ ବିସ୍ତାର କରିଥିଲା ଓ ତାହାଫଳରେ ସେଗୁଡ଼ିକର ଉତ୍କର୍ଷ ସାଧିତ ହୋଇଥିଲା। ଅଜନ୍ତା ଗୁମ୍ଫାର ଅପୂର୍ବ ଚିତ୍ରଗୁଡ଼ିକ ତତ୍କାଳୀନ କଳା-ବୈଶିଷ୍ଟ୍ୟର ପରିଚୟ ଦିଏ । ସାଞ୍ଚି, ଏଲୋରା,



ବୁଦ୍ଧଗୟା

ସାରନାଥ, ବୁଦ୍ଧଗୟା ପ୍ରଭୃତି ସ୍ଥାନର ଶିଳ୍ପ ସ୍ଥାପତ୍ୟ ଗୌରବମୟ ସ୍ତରରେ ଉପନୀତ ହୋଇଥିଲା ।

**ମହାରାଜ ଅଶୋକ ଓ ବୌଦ୍ଧଧର୍ମର ପ୍ରସାର:—** ବୌଦ୍ଧଧର୍ମ "ଦେବାନାଂ ପ୍ରିୟ ପ୍ରିୟ-ଦର୍ଶୀ" ମହାରାଜ ଅଶୋକଙ୍କ-ଠାରେ ବିଶେଷ ଭାବରେ ଋଣୀ । ଅଶୋକ ବୌଦ୍ଧଧର୍ମକୁ ରାଷ୍ଟ୍ର ଧର୍ମରେ ପରିଣତ କରି ଉକ୍ତ ଧର୍ମର ପ୍ରଚାର ପାଇଁ ଅଶେଷ ଯତ୍ନ କରିଥିଲେ । ଦେଶରେ ଧର୍ମ ମହାମାତ୍ର ନାମକ ଏକ ଉଚ୍ଚ କର୍ମଚାରୀ ଗୋଷ୍ଠୀ ନିଯୁକ୍ତ ହୋଇ ଧର୍ମ ପ୍ରଚାର ପ୍ରତି ଦୃଷ୍ଟି ଦେଉଥିଲେ । ଅଶୋକ ନିଜ ପୁତ୍ର ମହେନ୍ଦ୍ର ଓ କନ୍ୟା ସଂଘମିତ୍ରାଙ୍କୁ ସିଂହଳ ପଠାଇ ସେ ଦେଶରେ ବୌଦ୍ଧଧର୍ମ ପ୍ରଚାର କରାଇଥିଲେ । ତା ଛଡ଼ା, ସେ ସୁବର୍ଣ୍ଣଭୂମି ବା ନିମ୍ନବ୍ରହ୍ମଦେଶ ଓ ସୁମାତ୍ରା ଦ୍ୱୀପକୁ ପ୍ରଚାରକ ପ୍ରେରଣ କରିଥିଲେ ବୋଲି କଥିତ ଅଛି । ମହାରାଜ ଅଶୋକ ସିରିଆ, ମେସିଡୋନିଆ, ଏପିରସ, ମିଶର ପ୍ରଭୃତି ଦେଶକୁ ଦୂତ ପଠାଇ ସେଠାରେ "ଧର୍ମବିଜୟ" ପ୍ରତିଷ୍ଠା କରିଥିଲେ ବୋଲି ତାଙ୍କ ତ୍ରୟୋଦଶ ଶିଳାଲିପିରୁ ଜଣାଯାଏ । ଅଶୋକଙ୍କ ଚେଷ୍ଟାରେ ବୌଦ୍ଧଧର୍ମ ଅନ୍ତର୍ଜାତୀୟ ବିଶ୍ୱ-ଧର୍ମରେ ପରିଣତ ହୋଇଥିଲା । ଅଶୋକଙ୍କ ପରେ ମହାରାଜ



ଅଶୋକ

କନିଷ୍କଙ୍କ ସମୟରେ ତାହା ଚୀନ୍ ଦେଶରେ ପ୍ରଚଳିତ ହୋଇଥିଲା । କାଳକ୍ରମେ ବୌଦ୍ଧଧର୍ମ ଜାପାନ, ଶ୍ୟାମ, କାମ୍ବୋଡ଼ିଆ, ତିବ୍ବତ ପ୍ରଭୃତି ଅଞ୍ଚଳରେ ପ୍ରତିଷ୍ଠାଲାଭ କରିଥିଲା ।

**ବିଦେଶରେ ଭାରତୀୟ ସଭ୍ୟତାର ପ୍ରସାର:—** ଧର୍ମବିସ୍ତାର ସଙ୍ଗେ ସଙ୍ଗେ ଭାରତୀୟ ସଭ୍ୟତା ଓ ସଂସ୍କୃତି ମଧ୍ୟ ବିଦେଶରେ ବିସ୍ତାରଲାଭ କରିଥିଲା । ମହାରାଜ ଅଶୋକ ବୌଦ୍ଧ-ପ୍ରଚାରକମାନଙ୍କୁ ପଶ୍ଚିମ ଏସିଆ, ଉତ୍ତର ଆଫ୍ରିକା ଏବଂ ଦକ୍ଷିଣ-ପୂର୍ବ ଇଉରୋପକୁ ପ୍ରେରଣ କରିଥିଲେ ଏବଂ ବୌଦ୍ଧ ମତ ସେ ସମସ୍ତ ଅଞ୍ଚଳରେ ପ୍ରଚଳିତ ହୋଇଥିଲା । ଅଶୋକଙ୍କ ରାଜତ୍ୱର ବହୁକାଳ ପରେ ମଧ୍ୟ ଆଲେକଜାଣ୍ଡ୍ରିଆର ଅଧିବାସୀମାନଙ୍କର ବୌଦ୍ଧଧର୍ମରେ ଆଗ୍ରହ ଅକ୍ଷୁଣ୍ଣ ଥିବାର ଇତିହାସରୁ ଜଣାଯାଏ । ପଶ୍ଚିମ ଏସିଆର ବିଭିନ୍ନାଞ୍ଚଳରେ ବୌଦ୍ଧ ଓ ବ୍ରାହ୍ମଣ୍ୟଧର୍ମର ପ୍ରଭାବ ଇସଲାମ୍‌ଧର୍ମର ଆବିର୍ଭାବ ପୂର୍ବରୁ ବିସ୍ତୃତ ଭାବରେ ଅନୁଭୂତ ହେଉଥିଲା । ପାଶ୍ଚାତ୍ୟ-ଖଣ୍ଡରେ ଭାରତୀୟ ଦର୍ଶନ ଓ ସାହିତ୍ୟ ଅଜ୍ଞାତ ନ ଥିଲା । ମଧ୍ୟ-ଏସିଆର କାସ୍ପିୟାନ ହ୍ରଦକୂଳରୁ ଆରମ୍ଭ କରି ଚୀନ୍‌ର ବିରାଟ ପ୍ରାଚୀର ପର୍ଯ୍ୟନ୍ତ ସମଗ୍ର ଭୂଖଣ୍ଡରେ ବୌଦ୍ଧଧର୍ମର ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇଥିଲା । ଆଧୁନିକ ଖୋଟାନ୍‌ର ଚତୁଷ୍ପାର୍ଶ୍ୱରେ ଭାରତୀୟ ଲୋକେ ବହୁସଂଖ୍ୟାରେ ଯାଇ ବାସ କରିଥିଲେ । ଆଜିକାଲି ସାର୍ ଅରେଲ ଷ୍ଟିନ୍ Sir Aurel Stein ନାମକ ପ୍ରତ୍ନତତ୍ତ୍ୱ ଗବେଷକଙ୍କ ଉଦ୍ୟମରେ ପ୍ରତ୍ନତତ୍ତ୍ୱର ଅନୁସନ୍ଧାନ କରାଯାଇ ଏହି ଅଞ୍ଚଳରେ ଅସଂଖ୍ୟ ବୌଦ୍ଧସ୍ତୂପ ଓ ବିହାରର ଭଗ୍ନାବଶେଷ ଆବିଷ୍କୃତ ହୋଇଅଛି । ତା ଛଡ଼ା, ଏଠାରୁ ଅନେକ ବୌଦ୍ଧ ବିଗ୍ରହ ଓ ହିନ୍ଦୁ ଦେବଦେବୀଙ୍କ ମୂର୍ତ୍ତି ସହିତ ବହୁ ଭାରତୀୟ ଭାଷାର ପାଣ୍ଡୁଲିପି ମଧ୍ୟ

ମିଳିଅଛି । ଭାରତୀୟ ସଭ୍ୟତା ଓ ସଂସ୍କୃତି ମଧ୍ୟ-ଏସିଆରେ ବହୁକାଳ ପର୍ଯ୍ୟନ୍ତ ପ୍ରଭାବ ବିସ୍ତାର କରି ରହିଥିଲା । ଏପରିକି, ସପ୍ତମ ଶତାବ୍ଦୀରେ ହୁଏନ୍‌ସାଂଙ୍କ ସ୍ୱଦେଶ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ଏହି ପ୍ରଭାବ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା । ହୁଏନ୍‌ସାଂ ବୌଦ୍ଧ ଓ ଭାରତୀୟ ସଂସ୍କୃତିର ଏହି ପ୍ରାଧାନ୍ୟ ବିଷୟ ଉଲ୍ଲେଖ କରିଯାଇ ଅଛନ୍ତି । ଏପରିକି ତ୍ରୟୋଦଶ ଶତାବ୍ଦୀର ପ୍ରସିଦ୍ଧ ମଙ୍ଗୋଲ ନେତା ଚେଙ୍ଗିଜ୍ ଖାଁ ବୌଦ୍ଧଧର୍ମାବଲମ୍ବୀ ଥିଲେ ବୋଲି କେହି କେହି ବିଶ୍ୱାସ କରନ୍ତି ।

ମଧ୍ୟ-ଏସିଆରୁ ବୌଦ୍ଧଧର୍ମ ଚୀନ୍‌ଦେଶକୁ ବ୍ୟାପ୍ତି ଲାଭ କରିଥିଲା । ଚୈନିକ ସଭ୍ୟତା ଉପରେ ଭାରତୀୟ ସଭ୍ୟତାର ବିଶେଷତଃ, ବୌଦ୍ଧ ସଂସ୍କୃତିର ପ୍ରଭାବ ଅପରିସୀମ କହିଲେ ଅତ୍ୟୁକ୍ତି ହେବ ନାହିଁ । ଶତ ଶତ ଭାରତୀୟ ମନୀଷୀ ଚୀନକୁ ଯାଇ ସେଠାରେ ନିଜର କାର୍ଯ୍ୟକ୍ଷେତ୍ର ପ୍ରତିଷ୍ଠା କରିଥିଲେ । ସେହିପରି ଚୀନ ଦେଶରୁ ବହୁ ମନୀଷୀ ଆସି ଭାରତରେ ରହି ବୌଦ୍ଧଧର୍ମ ସମ୍ବନ୍ଧରେ ଜ୍ଞାନ ଅର୍ଜନ କରିବାକୁ ଚେଷ୍ଟା କରିଥିଲେ । ହଜାର ହଜାର ବୌଦ୍ଧଗ୍ରନ୍ଥ ଭାରତରୁ ଚୀନ୍‌କୁ ନିଆଯାଇ ଚୈନିକ ଭାଷାରେ ଅନୁଦିତ ଓ ପ୍ରଚାରିତ ହୋଇଥିଲା । ବୌଦ୍ଧଧର୍ମ ଚୀନ୍‌ଦେଶରୁ କୋରିଆକୁ ବ୍ୟାପ୍ତି ଲାଭ କରି କୋରିଆରୁ ଜାପାନକୁ ପ୍ରସାରିତ ହୋଇଥିଲା । ସପ୍ତମ ଶତାବ୍ଦୀରେ ସ୍ରୋଙ୍ଗ୍‌ସାନ ଗାମ୍ପୋ (Srong-tsan Gampo) ନାମକ ପ୍ରସିଦ୍ଧ ତିବ୍ବତୀୟ ନରପତି ତିବ୍ବତରେ ବୌଦ୍ଧଧର୍ମ ଓ ଭାରତୀୟ ଲିପି ପ୍ରଚଳନ କରିଥିଲେ । ନାଳନ୍ଦା ଓ ବିକ୍ରମଶିଳା ବିଦ୍ୟାଳୟରେ ବହୁ ତିବ୍ବତୀୟ ଧର୍ମାର୍ଥୀଗଣ ଆସି ଶିଷ୍ୟତ୍ୱ ଗ୍ରହଣ କରିଥିଲେ ଏବଂ ବହୁ ବୌଦ୍ଧଗ୍ରନ୍ଥ ତିବ୍ବତୀୟ ଭାଷାରେ ଅନୁଦିତ ହୋଇଥିଲା । ତନ୍ମଧ୍ୟରୁ 'ତଞ୍ଜୁର୍' ଓ 'କଞ୍ଜୁର୍' ନାମକ ଦୁଇଟି ପ୍ରସିଦ୍ଧ ସଂକଳନ ଅଦ୍ୟାପି ବିଦ୍ୟମାନ ।

**ମୌର୍ଯ୍ୟ ଓ ଗୁପ୍ତଯୁଗରେ ସାଂସ୍କୃତିକ ବିକାଶ:—** ପ୍ରାଚୀନ ଭାରତର ଇତିହାସରେ ମୌର୍ଯ୍ୟ ଓ ଗୁପ୍ତଯୁଗ ଚିରପ୍ରସିଦ୍ଧ। ସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କଠାରୁ ମୌର୍ଯ୍ୟଯୁଗର ଆରମ୍ଭ। ଖ୍ରୀ: ପୂ: ଚତୁର୍ଥ ଶତାବ୍ଦୀରୁ ମୌର୍ଯ୍ୟ ସାମ୍ରାଜ୍ୟ ବିକାଶଲାଭ କଲା। ଚନ୍ଦ୍ରଗୁପ୍ତ ଓ ଅଶୋକ ଏହି ସାମ୍ରାଜ୍ୟର ଖ୍ୟାତନାମା ନୃପତି। ଅଶୋକଙ୍କ ପରେ ମୌର୍ଯ୍ୟସାମ୍ରାଜ୍ୟର ପତନ ଆରମ୍ଭ ହେଲା। ମୌର୍ଯ୍ୟବଂଶର ପତନ ଫଳରେ ଭାରତରେ ବହୁକାଳ ପର୍ଯ୍ୟନ୍ତ କୌଣସି ସାର୍ବଭୌମ ଶକ୍ତି ରହିଲା ନାହିଁ। ଦେଶର ଐକ୍ୟ-ବନ୍ଧନ ଛିନ୍ନ ହୋଇଗଲା। ବୈଦେଶିକ ଜାତିମାନଙ୍କର ଆକ୍ରମଣ ପ୍ରବଳ ହେଲା। ଏହି ବୈଦେଶିକ ଜାତିମାନଙ୍କ ମଧ୍ୟରୁ କୁଶାଣ ବଂଶର ଆଧିପତ୍ୟ ଏକ ଉଲ୍ଲେଖଯୋଗ୍ୟ ଘଟଣା। କୁଶାଣ ସମ୍ରାଟ୍ କନିଷ୍କ ପୁରୁଷପୁର ବା ଆଧୁନିକ ପେଶାବାରଠାରେ ରାଜଧାନୀ ପ୍ରତିଷ୍ଠା କରି ଭାରତର ଏକ ବିସ୍ତୃତ ଅଞ୍ଚଳ ନିଜର ଶାସନାଧୀନ କଲେ। ବୌଦ୍ଧଧର୍ମର ସେ ଜଣେ ବିଶିଷ୍ଟ ପୃଷ୍ଠପୋଷକ ଥିଲେ। ତାଙ୍କ କଥା ପୂର୍ବରୁ କୁହା-ଯାଇଅଛି। କନିଷ୍କଙ୍କ ପରେ କୁଶାଣମାନଙ୍କର ପ୍ରଭାବ ଓ ପ୍ରତିପତ୍ତି କମି ଆସିଲା ଏବଂ ଅବଶେଷରେ ସେମାନଙ୍କର ପତନ ଘଟିଲା।

କିଛିକାଳ ଉତ୍ତାରୁ ୩୨୦ ଖ୍ରୀଷ୍ଟାବ୍ଦ ବେଳକୁ ପୁଣି ଏକ ପ୍ରବଳ ରାଜଶକ୍ତିର ଉତ୍‌ଥାନ ଆରମ୍ଭ ହେଲା। ଏହି ପ୍ରବଳ ରାଜଶକ୍ତି ଗୁପ୍ତ ବଂଶ ନାମରେ ପ୍ରସିଦ୍ଧ। ପ୍ରଥମ ଚନ୍ଦ୍ରଗୁପ୍ତଙ୍କୁ ଉକ୍ତ ବଂଶର ପ୍ରଥମ ସମ୍ରାଟ୍ ବୋଲି ଧରାଯାଏ। ସେ 'ମହାରାଜାଧିରାଜ' ଉପାଧି ଧାରଣ କରି ଗୁପ୍ତାବ୍ଦ ନାମକ ଏକ ଅବ୍ଦ ପ୍ରଚଳନ କଲେ। ତାଙ୍କ ପରେ ସମୁଦ୍ରଗୁପ୍ତ, ଦ୍ୱିତୀୟ ଚନ୍ଦ୍ରଗୁପ୍ତ, ବିକ୍ରମାଦିତ୍ୟ ପ୍ରଭୃତି ସମ୍ରାଟ୍‌ମାନେ ରାଜତ୍ୱ କରି ଗୁପ୍ତ ସାମ୍ରାଜ୍ୟର ବୃଦ୍ଧି ଓ ବିକାଶ ସାଧନ କରିଥିଲେ।

ମୌର୍ଯ୍ୟ ଓ ଗୁପ୍ତରାଜତ୍ୱରେ ନାନା ଦିଗରେ ଦେଶର ଉନ୍ନତି ସାଧିତ ହୋଇଥିଲା । ଗୁପ୍ତଯୁଗକୁ ଭାରତର "ସୁବର୍ଣ୍ଣ-ଯୁଗ" ବୋଲି କୁହାଯାଏ । ସମ୍ରାଟ୍ ଅଶୋକଙ୍କ ସମୟରେ ବୌଦ୍ଧଧର୍ମର ଅପୂର୍ବ ପ୍ରସାର ମୌର୍ଯ୍ୟଯୁଗର ପ୍ରଧାନ ବୈଶିଷ୍ଟ୍ୟ । ଏହି ଯୁଗରେ କୌଟିଲ୍ୟଙ୍କ ଅର୍ଥ ଶାସ୍ତ୍ର, ଭଦ୍ରବାହୁଙ୍କ କଳ୍ପସୂତ୍ର ଓ ବୌଦ୍ଧଗ୍ରନ୍ଥ "କଥାବତ୍‌ଥୁ" ( Katha vatthu ) ରଚିତ ହୋଇଥିଲା । ମହାଭାରତର କେତେକାଂଶ ଏହି ସମୟରେ ମଧ୍ୟ ଲିଖିତ ହୋଇଥିଲା । ପତଞ୍ଜଳିଙ୍କ ରଚିତ ପାଣିନୀର ମହାଭାଷ୍ୟ ମୌର୍ଯ୍ୟଯୁଗର ଏକ ବିଶିଷ୍ଟ ଦାନ । ପତଞ୍ଜଳି ଅନେକ କାବ୍ୟ, ନାଟକ ଓ ଆଖ୍ୟାୟିକାର ନାମ ତାଙ୍କ ମହାଭାଷ୍ୟରେ ଉଲ୍ଲେଖ କରିଅଛନ୍ତି । ତନ୍ମଧ୍ୟରୁ ଅନେକଗୁଡ଼ିଏ ମୌର୍ଯ୍ୟଯୁଗରେ ରଚିତ ବୋଲି ଧରାଯାଏ । ସାଂସ୍କୃତିକ କ୍ଷେତ୍ରରେ ମୌର୍ଯ୍ୟଯୁଗ ତୁଳନାରେ ଗୁପ୍ତଯୁଗର ଅବଦାନ ଅଧିକ ଗୁରୁତ୍ୱପୂର୍ଣ୍ଣ । ଗୁପ୍ତସମ୍ରାଟମାନଙ୍କର ରାଜସଭାରେ କବିତ୍ୱ ଓ ପାଣ୍ଡିତ୍ୟର ବିଶେଷ ଆଦର ଥିଲା । ସମ୍ରାଟ ସମୁଦ୍ରଗୁପ୍ତ ନିଜକୁ "କବିରାଜ" ବୋଲି ଅଭିହିତ କରି ସୁଖବୋଧ କରୁଥିଲେ ଏବଂ ଅନେକ ଦରିଦ୍ର କବିଙ୍କର ପୋଷକ ଥିଲେ । ସେମାନଙ୍କ ମଧ୍ୟରେ ହରିସେନଙ୍କ ନାମ ଖୁବ୍ ପ୍ରସିଦ୍ଧ । ମହାରାଜ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ରାଜସଭା ବହୁ କବି ଓ ପଣ୍ଡିତଙ୍କ ଦ୍ୱାରା ମଣ୍ଡିତ ହୋଇଥିଲା । ବିକ୍ରମାଦିତ୍ୟଙ୍କର ଜଣେ ବିଶିଷ୍ଟ ମନ୍ତ୍ରୀ ଥିଲେ କବି ବୀରସେନ । କିମ୍ବଦନ୍ତୀ ଅନୁସାରେ ମହାକବି କାଳିଦାସ ଏହି ବିକ୍ରମାଦିତ୍ୟଙ୍କ ରାଜସଭାର ପ୍ରଧାନ କବି । ତାଙ୍କର କାବ୍ୟ ଓ ନାଟକଗୁଡ଼ିକ ସଂସ୍କୃତ ସାହିତ୍ୟର ଅମରଗ୍ରନ୍ଥ ।*

---

*ସେ ରଘୁବଂଶ, କୁମାରସମ୍ଭବ ଓ ମେଘଦୂତ ନାମକ ପ୍ରସିଦ୍ଧ କାବ୍ୟ ଏବଂ ଅଭିଜ୍ଞାନଶକୁନ୍ତଳମ୍ ନାମକ ଉତ୍କୃଷ୍ଟ ନାଟକ ରଚନା କରି ପୃଥିବୀର ଶ୍ରେଷ୍ଠକବି ଓ ନାଟ୍ୟକାରମାନଙ୍କ ମଧ୍ୟରେ ସମ୍ମାନିତ ସ୍ଥାନ ଲାଭ କରିଅଛନ୍ତି ।

କବି ଦିଙ୍‌ନାଗ ମଧ୍ୟ ସମ୍ଭବତଃ ଏହି ସମୟର ଲେଖକ । ମୃଚ୍ଛକଟିକ, ମୁଦ୍ରାରାକ୍ଷସ ଓ ଦେବୀଚନ୍ଦ୍ରଗୁପ୍ତମ୍ ନାମକ ନାଟକତ୍ରୟ ଗୁପ୍ତଯୁଗର ରଚନା ବୋଲି ଅନେକଙ୍କର ମତ । ମୃଚ୍ଛକଟିକର ଲେଖକ ଥିଲେ ଶୂଦ୍ରକ ଓ ମୁଦ୍ରାରାକ୍ଷସର ଲେଖକ ବିଶାଖଦତ୍ତ । ଏହି ଯୁଗରେ ମହାଭାରତ ମର୍ଯ୍ୟାଦା ଲାଭ କରିଥିଲା ବୋଲି ମନେ କରାଯାଏ । ବିଖ୍ୟାତ ଜ୍ୟୋତିର୍ବିଦ ଆର୍ଯ୍ୟଭଟ୍ଟ ଓ ବରାହମିହିର ଗୁପ୍ତ-ଯୁଗର ଲୋକ । ପ୍ରସିଦ୍ଧ ସଂସ୍କୃତ ଆଭିଧାନିକ ଅମରସିଂହ ଏହି ସମୟରେ ତାଙ୍କର "ଅମରକୋଷ" ନାମକ ଅଭିଧାନ ରଚନା କରିଥିଲେ । ଆର୍ଯ୍ୟଭଟ୍ଟଙ୍କ ବୀଜଗଣିତ ଓ ଆର୍ଯ୍ୟସିଦ୍ଧାନ୍ତ ଏବଂ ବରାହ-ମିହିରଙ୍କ "ବୃହତ୍ ସଂହିତା" ଗଣିତ ଓ ଜ୍ୟୋତିର୍ବିଜ୍ଞାନର ପ୍ରସିଦ୍ଧଗ୍ରନ୍ଥ । ବ୍ରହ୍ମଗୁପ୍ତ ନାମକ ଗାଣିତିକ ମଧ୍ୟ ଏହି ସମୟରେ ଖ୍ୟାତି ଅର୍ଜନ କରିଥିଲେ ।

**ମୌର୍ଯ୍ୟ ଓ ଗୁପ୍ତଯୁଗର କଳା ଓ ସ୍ଥାପତ୍ୟ**—ମୌର୍ଯ୍ୟ ସମ୍ରାଟ୍ **ଅଶୋକଙ୍କ** ସମୟରେ କଳା ଓ ସ୍ଥାପତ୍ୟର ସମୁନ୍ନତି ସାଧିତ ହୋଇଥିଲା । ସେ ଯୁଗରେ ନିର୍ମିତ ନାନା ସ୍ତମ୍ଭ, ସ୍ତୂପ, ଚୈତ୍ୟ ଓ ବିହାରମାନଙ୍କରୁ ତାର ପରିଚୟ ମିଳେ । **ଅଶୋକ-ସ୍ତମ୍ଭ** ଗୁଡ଼ିକ ଗୋଟିଏ ଗୋଟିଏ ପଥରରେ ନିର୍ମିତ ହୋଇ ସେଗୁଡ଼ିକର ଶୀର୍ଷଦେଶରେ ସିଂହମୂର୍ତ୍ତି ବା ଅନ୍ୟ କୌଣସି ପଶୁମୂର୍ତ୍ତି ସ୍ଥାପିତ ହୋଇଥିବାର ଦେଖାଯାଏ । ସିଂହମୂର୍ତ୍ତି ତଳେ ଅଶୋକଚକ୍ର ଓ ତାର ନିମ୍ନଦେଶରେ ଓଲଟକମଳ ରହିଅଛି । କୌଣସି କୌଣସି ସ୍ତମ୍ଭଶୀର୍ଷରେ ଗୋଟିଏ ସିଂହମୂର୍ତ୍ତି ଓ ଅନ୍ୟ କେତେକ ସ୍ତମ୍ଭଉପରେ ଚତୁଃ ସିଂହମୂର୍ତ୍ତି ଅବସ୍ଥିତ । ଅଶୋକ ସ୍ତମ୍ଭମାନଙ୍କ ମଧ୍ୟରୁ ସାରନାଥ ଓ ନନ୍ଦନଗଡ଼ର ସ୍ତମ୍ଭ ଅତ୍ୟନ୍ତ ରମଣୀୟ । ପଶୁମୂର୍ତ୍ତିଗୁଡ଼ିକ ଶିଳ୍ପୀର ଅପୂର୍ବ କଳାନୈପୁଣ୍ୟ ପ୍ରକାଶ କରେ । ତା ଛଡ଼ା ମୌର୍ଯ୍ୟ ଯୁଗର ରତ୍ନାଳଙ୍କାର ଗୁଡ଼ିକ ମଧ୍ୟ ମନୋହର

କଳାପାଟବର ନିଦର୍ଶନ । ମହାରାଜ ଅଶୋକଙ୍କ ସମୟରେ ରାଜପ୍ରାସାଦ ପଥରରେ ତିଆରି ହୋଇଥିଲା । ଗ୍ରୀକ୍ ଲେଖକମାନଙ୍କ ବିବରଣୀରୁ ଜଣାଯାଏ ଯେ,ପାଟଳିପୁତ୍ର ନଗରୀର ରାଜହର୍ମ୍ୟ ପରି ସୁନ୍ଦର ରାଜହର୍ମ୍ୟ ପୃଥିବୀରେ ଅନ୍ୟତ୍ର ପରିଦୃଷ୍ଟ ହେଉ ନ ଥିଲା । ଚୀନ୍ ପରିବ୍ରାଜକ ଫାହିଆନଙ୍କ ଆଗମନପର୍ଯ୍ୟନ୍ତମୌର୍ଯ୍ୟଯୁଗର ସୁରମ୍ୟ ହର୍ମ୍ୟାବଳୀ ବୈଦେଶିକପର୍ଯ୍ୟଟକମାନଙ୍କର ବିସ୍ମୟ ଉତ୍ପାଦନ କରୁଥିଲା । କିମ୍ବଦନ୍ତୀରୁ ଜଣାଯାଏ, ମହାରାଜ ଅଶୋକ ଭାରତ ଓ ଆଫଗାନିସ୍ଥାନରେ ୮୪୦୦୦ ସ୍ତୂପ ନିର୍ମାଣ କରିଥିଲେ । ତନ୍ମଧ୍ୟରୁ ଭୋପାଳ ଅନ୍ତର୍ଗତ ସାଞ୍ଚିର ପ୍ରକାଣ୍ଡ ସ୍ତୂପ ଅନ୍ୟତମ । ଏହାର ପ୍ରବେଶଦ୍ୱାର ଗାତ୍ରରେ ବୌଦ୍ଧ



ଅଶୋକସ୍ତମ୍ଭ

ଜାତକର ଗଳ୍ପ ଓ ବୁଦ୍ଧଙ୍କର ଜୀବନ କଥା ରମଣୀୟ ସ୍ଥାପତ୍ୟଶିଳ୍ପରେ ପ୍ରତିଫଳିତ ।

ଗୁପ୍ତଯୁଗରେ ଭାରତୀୟ ସ୍ଥାପତ୍ୟ ଖୁବ୍ ଉନ୍ନତ ସ୍ତରକୁ ଉଠିଥିବାର ପ୍ରମାଣ ମିଳେ । ଭାରତ ବାହାରେ ମାଳୟ, ସୁମାତ୍ରା, ଜାଭା, ଆନାମ୍, କାମ୍ବୋଡ଼ିଆ ପ୍ରଭୃତି ଅଞ୍ଚଳରେ ମଧ୍ୟ ତାହା ପ୍ରସାରଲାଭ କରିଥିଲା । ଏହି ଯୁଗରେ ଅନେକ ମନୋହର ବୁଦ୍ଧବିଗ୍ରହ ଓ

ହିନ୍ଦୁ ଦେବଦେବୀଙ୍କ ମୂର୍ତ୍ତି ନିର୍ମିତ ହୋଇଥିଲା । ବାରଣସୀ ନିକଟବର୍ତ୍ତୀ ସାରନାଥଠାରେ ବହୁ ବୁଦ୍ଧବିଗ୍ରହ ଭୂଗର୍ଭରୁ ଆବିଷ୍କୃତ ହୋଇଅଛି । ଝାନ୍‌ସି ଜିଲ୍ଲାର ଦେଓଗଡ଼ ଦେବାଳୟରେ ଥିବା ଶିବ, ବିଷ୍ଣୁ ଓ ଅନ୍ୟାନ୍ୟ ଦେବତାଙ୍କର ମୂର୍ତ୍ତିଗୁଡ଼ିକ ଗୁପ୍ତଯୁଗର କୀର୍ତ୍ତି । ମଥୁରାରେ ଏହି ଯୁଗରେ ନିର୍ମିତ ବୁଦ୍ଧଙ୍କର ଏକ ବ୍ରୋଞ୍ଜମୂର୍ତ୍ତି ପ୍ରତିଷ୍ଠିତ ଥିବାର ଦେଖାଯାଏ । ଚୀନ ପରିବ୍ରାଜକ ହୁଏନ୍‌ସାଂ



ଦିଲ୍ଲୀର ଲୌହସ୍ତମ୍ଭ

ନାଳନ୍ଦାରେ ଏକ ୨୪½ ମିଟର ଉଚ୍ଚତା ବିଶିଷ୍ଟ ବୁଦ୍ଧଙ୍କ ତାମ୍ରମୂର୍ତ୍ତି ଦେଖିଥିଲେ ବୋଲି ଲେଖିଯାଇଛନ୍ତି । ଦିଲ୍ଲୀର ପ୍ରସିଦ୍ଧ ଲୌହସ୍ତମ୍ଭ

ଗୁପ୍ତଯୁଗରେ ନିର୍ମିତ ହୋଇଥିଲେହେଁ ଏପର୍ଯ୍ୟନ୍ତ ସଦ୍ୟ ନିର୍ମିତଭଳି ପ୍ରତୀୟମାନ ହୁଏ । ଏହି ଯୁଗରେ ଚିତ୍ରକଳାର ଚରମ ଉନ୍ନତି ସଂଘଟିତ ହୋଇଥିଲା । ଅଜନ୍ତା ଗୁମ୍ଫାମାନଙ୍କର ଅପୂର୍ବ ଚିତ୍ରାବଳି ତାହାର ଉତ୍କୃଷ୍ଟ ନିଦର୍ଶନ । ଚିତ୍ରଗୁଡ଼ିକରୁ ଶିଳ୍ପୀର ଚରମ ହସ୍ତନୈପୁଣ୍ୟ ସଙ୍ଗେ ସଙ୍ଗେ ଉଚ୍ଚ ଧରଣର କଳ୍ପନାବିକାଶ ଓ ମନୋହରଚିତ୍ରଣ ପଦ୍ଧତିର ସୂଚନା ମିଳେ । ଗୁପ୍ତଯୁଗରେ ପ୍ରଚଳିତ ନାନାଢଙ୍ଗର ସ୍ୱର୍ଣ୍ଣମୁଦ୍ରାରୁ ମଧ୍ୟ ତତ୍କାଳୀନ ଶିଳ୍ପୀର କଳାକୁଶଳତା ପ୍ରମାଣିତ ହୁଏ ।

**ମୌର୍ଯ୍ୟ ଓ ଗୁପ୍ତଯୁଗରେ ବାଣିଜ୍ୟବିସ୍ତାର ଏବଂ ଉପନିବେଶ ସ୍ଥାପନ:**-ମୌର୍ଯ୍ୟଯୁଗରେ ସିରିଆ, ମିଶର ଓ ଅନ୍ୟାନ୍ୟ କେତେକ ଦେଶ ସହିତ ପ୍ରତ୍ୟକ୍ଷ ବାଣିଜ୍ୟ ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା । କଥିତ ଅଛି, ଖ୍ରୀଷ୍ଟପୂର୍ବ ତୃତୀୟ ଶତକରେ ପାଶ୍ଚାତ୍ୟ ଦେଶର ମଧୁର ମଦ୍ୟ ଓ ଶୁଷ୍କ ଡିମିରିଫଳ (dried figs) ଜଣେ ମୌର୍ଯ୍ୟ ନରପତିଙ୍କର ପ୍ରିୟ ଖାଦ୍ୟ ଥିଲା । ପାଶ୍ଚାତ୍ୟ ଦେଶର ବଣିକମାନେ ଭାରତରୁ ନାନା ବିଳାସ ସାମଗ୍ରୀ କ୍ରୟ କରୁଥିଲେ । ଐତିହାସିକ ପ୍ଲିନିଙ୍କ ଲେଖାରୁ ଜଣାଯାଏ, ଉକ୍ତ ବିଳାସ ସାମଗ୍ରୀମାନ କ୍ରୟ କରିବା ପାଇଁ ଭାରତକୁ ପାଶ୍ଚାତ୍ୟ ଖଣ୍ଡରୁ ପ୍ରଚୁର ଅର୍ଥ ବୋହି ଆସୁଥିଲା । ପାଟଳୀପୁତ୍ର ନଗରୀରେ ବାଣିଜ୍ୟ ବ୍ୟାପାର ନିୟନ୍ତ୍ରଣ ଓ ଶୁଳ୍କ ପ୍ରଭୃତି ଆଦାୟ କରିବା ପାଇଁ ଗୋଟିଏ ସ୍ୱତନ୍ତ୍ର ସଂସ୍ଥା ପ୍ରତିଷ୍ଠିତ ହୋଇଥିଲା । ମୌର୍ଯ୍ୟ ଯୁଗରେ ବାଣିଜ୍ୟ ଶୁଳ୍କରୁ ରାଜ୍ୟ ସରକାର ପ୍ରଚୁର ଅର୍ଥ ଉପାର୍ଜନ କରୁଥିଲେ । ସରକାରୀ ଖର୍ଚ୍ଚରେ ବୋଇତମାନ ଗଢ଼ା ହୋଇ ବଣିକମାନଙ୍କୁ ଭଡ଼ା ଦିଆଯାଉଥିଲା । ଖ୍ରୀଷ୍ଟପୂର୍ବ ପ୍ରଥମ ଶତକରେ ଭାରତ ଓ ରୋମ ମଧ୍ୟରେ ବାଣିଜ୍ୟ

ହିନ୍ଦୁ ଦେବଦେବୀଙ୍କ ମୂର୍ତ୍ତି ନିର୍ମିତ ହୋଇଥିଲା । ବାରାଣସୀ ନିକଟବର୍ତ୍ତୀ ସାରନାଥଠାରେ ବହୁ ବୁଦ୍ଧବିଗ୍ରହ ଭୂଗର୍ଭରୁ ଆବିଷ୍କୃତ ହୋଇଅଛି । ଝାନ୍ସି ଜିଲ୍ଲାର ଦେଓଗଡ଼ ଦେବାଳୟମାନଙ୍କରେ ଥିବା ଶିବ, ବିଷ୍ଣୁ ଓ ଅନ୍ୟାନ୍ୟ ଦେବତାଙ୍କର ମୂର୍ତ୍ତିଗୁଡ଼ିକ ଗୁପ୍ତଯୁଗର କୀର୍ତ୍ତି । ମଥୁରାରେ ଏହି ଯୁଗରେ ନିର୍ମିତ ବୁଦ୍ଧଙ୍କର ଏକ ବ୍ରୋଞ୍ଜମୂର୍ତ୍ତି ପ୍ରତିଷ୍ଠିତ ଥିବାର ଦେଖାଯାଏ । ଚୀନ ପରିବ୍ରାଜକ ହୁଏନ୍‌ସାଂ



ଦିଲ୍ଲୀର ଲୌହସ୍ତମ୍ଭ

ନାଳନ୍ଦାରେ ଏକ ୨୪½ ମିଟର ଉଚ୍ଚତା ବିଶିଷ୍ଟ ବୁଦ୍ଧଙ୍କ ତାମ୍ରମୂର୍ତ୍ତି ଦେଖିଥିଲେ ବୋଲି ଲେଖିଯାଇଛନ୍ତି । ଦିଲ୍ଲୀର ପ୍ରସିଦ୍ଧ ଲୌହସ୍ତମ୍ଭ

ଗୁପ୍ତଯୁଗରେ ନିର୍ମିତ ହୋଇଥିଲେହେଁ ଏପର୍ଯ୍ୟନ୍ତ ସଦ୍ୟ ନିର୍ମିତଭଳି ପ୍ରତୀୟମାନ ହୁଏ । ଏହି ଯୁଗରେ ଚିତ୍ରକଳାର ଚରମ ଉନ୍ନତି ସଂଘଟିତ ହୋଇଥିଲା । ଅଜନ୍ତା ଗୁହାମାନଙ୍କର ଅପୂର୍ବ ଚିତ୍ରାବଳି ତାହାର ଉତ୍କୃଷ୍ଟ ନିଦର୍ଶନ । ତହିଁରୁ ଶିଳ୍ପୀର ଚରମ ହସ୍ତନୈପୁଣ୍ୟ ସଙ୍ଗେ ସଙ୍ଗେ ଉଚ୍ଚ ଧରଣର କଳ୍ପନାବିକାଶ ଓ ମନୋହରଶଷଣ ପଦ୍ଧତିର ସୂଚନା ମିଳେ । ଗୁପ୍ତଯୁଗରେ ପ୍ରଚଳିତ ନାନାଭଙ୍ଗୀର ସ୍ୱର୍ଣ୍ଣମୁଦ୍ରାରୁ ମଧ୍ୟ ତତ୍କାଳୀନ ଶିଳ୍ପୀର କଳାକୁଶଳତା ପ୍ରମାଣିତ ହୁଏ ।

**ମୌର୍ଯ୍ୟ ଓ ଗୁପ୍ତଯୁଗରେ ବାଣିଜ୍ୟବିସ୍ତାର ଏବଂ ଉପନିବେଶ ସ୍ଥାପନ:-** ମୌର୍ଯ୍ୟଯୁଗରେ ସିରିଆ, ମିଶର ଓ ଅନ୍ୟାନ୍ୟ କେତେକ ଦେଶ ସହିତ ପ୍ରତ୍ୟକ୍ଷ ବାଣିଜ୍ୟ ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା । କଥିତ ଅଛି, ଖ୍ରୀଷ୍ଟପୂର୍ବ ତୃତୀୟ ଶତକରେ ପାଶ୍ଚାତ୍ୟ ଦେଶର ମଧୁର ମଦ୍ୟ ଓ ଶୁଷ୍କ ଡମିରିଫଳ (dried figs) ଜଣେ ମୌର୍ଯ୍ୟ ନରପତିଙ୍କର ପ୍ରିୟ ଖାଦ୍ୟ ଥିଲା । ପାଶ୍ଚାତ୍ୟ ଦେଶର ବଣିକମାନେ ଭାରତରୁ ନାନା ବିଳାସ ସାମଗ୍ରୀ କ୍ରୟ କରୁଥିଲେ । ଐତିହାସିକ ପ୍ଲିନିଙ୍କ ଲେଖାରୁ ଜଣାଯାଏ, ଉକ୍ତ ବିଳାସ ସାମଗ୍ରୀମାନ କ୍ରୟ କରିବା ପାଇଁ ଭାରତକୁ ପାଶ୍ଚାତ୍ୟ ଖଣ୍ଡରୁ ପ୍ରଚୁର ଅର୍ଥ ବୋହି ଆସୁଥିଲା । ପାଟଳୀପୁତ୍ର ନଗରରେ ବାଣିଜ୍ୟ ବ୍ୟାପାର ନିୟନ୍ତ୍ରଣ ଓ ଶୁଳ୍କ ପ୍ରଭୃତି ଆଦାୟ କରିବା ପାଇଁ ଗୋଟିଏ ସ୍ୱତନ୍ତ୍ର ସଂସ୍ଥା ପ୍ରତିଷ୍ଠିତ ହୋଇଥିଲା । ମୌର୍ଯ୍ୟ ଯୁଗରେ ବାଣିଜ୍ୟ ଶୁଳ୍କରୁ ରାଜ୍ୟ ସରକାର ପ୍ରଚୁର ଅର୍ଥ ଉପାର୍ଜନ କରୁଥିଲେ । ସରକାରୀ ଖର୍ଚ୍ଚରେ ବୋଇତମାନ ଗଢ଼ା ହୋଇ ବଣିକମାନଙ୍କୁ ଭଡ଼ା ଦିଆଯାଉଥିଲା । ଖ୍ରୀଷ୍ଟପୂର୍ବ ପ୍ରଥମ ଶତକରେ ଭାରତ ଓ ରୋମ ମଧ୍ୟରେ ବାଣିଜ୍ୟ

ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା । ଭାରତୀୟ ସୂକ୍ଷ୍ମ ମସଲିନ ବସ୍ତ୍ର ପ୍ରଚୁର ପରିମାଣରେ ବିଦେଶକୁ ରପ୍ତାନି ହେଉଥିଲା ।

କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରୁ ଜଣାଯାଏ, ପୂର୍ବବଙ୍ଗ ଓ ଗାଙ୍ଗେୟ ତ୍ରିକୋଣଭୂମି ଅଞ୍ଚଳରେ ଅତି ମସୃଣ ଶୁକ୍ଳ "ଦୁକୂଳ" ପ୍ରସ୍ତୁତ ହେଉଥିଲା । ମୌର୍ଯ୍ୟ ଯୁଗରେ ବର୍ବ୍ବାଚ (ତତ୍କାଳୀନ ବାରିଗାଜା), ସୁପରର, ଓଡାର ପ୍ରଭୃତି ବନ୍ଦରରୁ ବାଣିଜ୍ୟ ଦ୍ରବ୍ୟ ନେଇ ବଣିକମାନେ ପଶ୍ଚିମଉପକୂଳରେ ବାଣିଜ୍ୟ ଚଳାଉଥିଲେ । ଗୁପ୍ତଯୁଗରେ ଭାରତର ପୂର୍ବଉପକୂଳରେ ଗଙ୍ଗା ମୁହାଣଠାରୁ ଆରମ୍ଭ କରି କୁମାରିକା ପର୍ଯ୍ୟନ୍ତ ଅସଂଖ୍ୟ ବନ୍ଦର ଥିବାର ପ୍ରମାଣ ମିଳେ । ଐତିହାସିକ ଟୋଲେମି (Ptolemy) ଲେଖିଅଛନ୍ତି—ସେତେବେଳେ ଗଞ୍ଜାମର ଅଦୂରବର୍ତ୍ତୀ ପାଲୁର୍ ବନ୍ଦରଠାରୁ ମାଳୟ ଦ୍ୱୀପପୁଞ୍ଜକୁ ଯିବାପାଇଁ ଏକ ସରଳ ସାମୁଦ୍ରିକ ପଥ ବଣିକମାନେ ବ୍ୟବହାର କରୁଥିଲେ । ତାମ୍ରଲିପ୍ତି ଓ ନାଗାପଟ୍ଟମ ବନ୍ଦର ମଧ୍ୟ ସେ ସମୟର ଅନ୍ୟ ଦୁଇଟି ବଣିଷ୍ଟ ବନ୍ଦର । ଫାହିଆନ ତାମ୍ରଲିପ୍ତ ବନ୍ଦରରୁ ଚୀନ ପରିବ୍ରାଜକ ଫାହିଆନ ସିଂହଳ ଓ ଜାଭା ଦେଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଭାରତୀୟ ବଣିକମାନେ ସୁବର୍ଣ୍ଣଭୂମିକୁଯାଇ ଧନରତ୍ନ ଏ ଦେଶକୁ ବୋହି ଆଣୁଥିଲେ । ମାଳୟ, କାମ୍ବୋଡ଼ିଆ, ଆନ୍ନାମ, ଜାଭା, ସୁମାତ୍ରା, ବାଲୀ ଓ ବୋର୍ଣ୍ଣିଓରେ ଭାରତୀୟମାନେ ଉପନିବେଶ ସ୍ଥାପନ କରିଥିଲେ ।

ଇଣ୍ଡୋଚୀନରେ ଦୁଇଟି ଶକ୍ତିଶାଳୀ ରାଜ୍ୟ ଗଠିତ ହୋଇଥିଲା । ଗୋଟିକର ନାମ 'ଚମ୍ପା' ଓ ଅନ୍ୟର ନାମ 'କମ୍ବୁଜ' । ଆଧୁନିକ ଆନ୍ନାମର ମୁଖ୍ୟଭାଗ ଚମ୍ପା ରାଜ୍ୟର ଅନ୍ତର୍ଗତ ଥିଲା । ଆଧୁନିକ କାମ୍ବୋଡ଼ିଆର ଦକ୍ଷିଣାଞ୍ଚଳକୁ ନେଇ କମ୍ବୁଜ ରାଜ୍ୟ ଗଠିତହୋଇଥିଲା । ପରେ ଏହା ବିଶାଳ ସାମ୍ରାଜ୍ୟରେ ପରିଣତ ହେଲା । ସମଗ୍ର କାମ୍ବୋଡ଼ିଆ, କୋଚିନଚ୍ଚାଇନା, ଲାଓସ, ଶ୍ୟାମ, ବ୍ରହ୍ମଦେଶର

କେତେକାଂଶ ଓ ମାଳୟ ଦ୍ୱୀପପୁଞ୍ଜର କେତେକ ଅଞ୍ଚଳ ଏହାର ଅନ୍ତର୍ଭୁକ୍ତ ହେଲା । ଗୁପ୍ତଯୁଗ ପରେ ଜାଭା, ସୁମାତ୍ରା, ବାଲି ଓ ବୋର୍ଣ୍ଣିଓରେ ଶୈଳେନ୍ଦ୍ର ରାଜବଂଶ ରାଜତ୍ୱ କରିଥିଲେ (୮ମଶତାବ୍ଦୀ । ସେମାନଙ୍କର ରାଜ୍ୟ ଅତ୍ୟନ୍ତ ଧନଶାଳୀ ଥିଲା । ସେଥିରୁ ପ୍ରତ୍ୟହ ରାଜକର ସ୍ୱରୂପ ଦୁଇଶହ ମହଣ ସ୍ୱର୍ଣ୍ଣ ଆଦାୟ ହେଉଥିଲା । ଏହି ସମସ୍ତ ଉପନିବେଶରେ ଭାରତୀୟ ସଂସ୍କୃତି ବହୁକାଳ ପ୍ରଭାବ ବିସ୍ତାର କରି ରହିଥିଲା । କମ୍ବୁଜ ରାଜ୍ୟର ଅନ୍ତର୍ଗତ ଅଙ୍ଗ୍‌କୋର ଥୋମ (Angkor Thom) ନାମକ ସ୍ଥାନରେ ସୁନ୍ଦର ଦେବାଳୟମାନ ନିର୍ମିତ ହୋଇଥିଲା । ଉକ୍ତ ରାଜ୍ୟର 'ଅଙ୍ଗ୍‌କୋରବଟ'ଠାରେପ୍ରତିଷ୍ଠିତ ଅପୂର୍ବ ବିଷ୍ଣୁମନ୍ଦିର ଦର୍ଶକର ବିସ୍ମୟ ଉତ୍ପାଦନ କରୁଥିଲା ।

## ଅନୁଶୀଳନୀ

୧ । ବନ୍ଧନୀରେ ଥିବା ଶବ୍ଦଗୁଡ଼ିକ ମଧ୍ୟରୁ ଭ୍ରମାତ୍ମକ ଶବ୍ଦବାଛି କାଟିଦିଅ:—

(କ) ମହାବୀର (ମଗଧରେ, କୁଣ୍ଡଗ୍ରାମରେ, ତକ୍ଷଶିଳାରେ) ଜନ୍ମଗ୍ରହଣ କରିଥିଲେ ।

(ଖ) ଶୁଦ୍ଧୋଦନ ( କଳିଙ୍ଗ, ବଙ୍ଗ, କପିଳବାସ୍ତୁ)ର ରାଜା ଥିଲେ ।

(ଗ) ମହାବୀରଙ୍କ ମାତାଙ୍କ ନାମ ( ତ୍ରିବେଣୀ, ବିଶାଖା, ତ୍ରିଶଳା ) ।

(ଘ) ମହାବୀର (ଗଙ୍ଗା, ଗୋଦାବରୀ,ନିରଞ୍ଜନା,ଋଜୁପାଲିକା) ନଦୀ ତୀରରେ ଦିବ୍ୟଜ୍ଞାନ ଲାଭ କରିଥିଲେ ।

(ଙ) ଗୌତମ ବୁଦ୍ଧଙ୍କର ଜନନୀ ଥିଲେ (ଯଶୋଦା, ମାୟା, ଗୌତମୀ ) ।

(ଚ) ବୌଦ୍ଧମାନେ ବେଦର ମାହାତ୍ମ୍ୟ (ସ୍ୱୀକାର କରନ୍ତି, ସ୍ୱୀକାର କରନ୍ତି ନାହିଁ )।

(ଛ) ସିଂହଳରେ ବୌଦ୍ଧଧର୍ମ ପ୍ରଚାର ପାଇଁ ମହାରାଜା ଅଶୋକ ତାଙ୍କର ପୁତ୍ର (ରାଜେନ୍ଦ୍ର, କୁନାଳ, ମହେନ୍ଦ୍ର, ଶୈଳେନ୍ଦ୍ର)ଙ୍କୁ ଓ କନ୍ୟା (ସୁରଶୀଳା, ଦେବମିତ୍ରା, ମନ୍ଦାରିକା, ସଂଘମିତ୍ରା)ଙ୍କୁ ପଠାଇଥିଲେ।

(ଜ) ଶ୍ୱେତାମ୍ବର ଜୈନଧର୍ମ ଗ୍ରନ୍ଥଗୁଡ଼ିକର ନାମ (ଅଙ୍ଗ, ବିନୟପିଟକ, ସୁତ୍ତପିଟକ, ମୂଳସୂତ୍ର, ଉପାଙ୍ଗ, ଅଭିଧର୍ମପିଟକ, ଉପନିଷଦ)।

(ଝ) କବି କାଳିଦାସ, (ମୃଚ୍ଛକଟିକ, ଅଭିଜ୍ଞାନଶକୁନ୍ତଳମ୍ ମୁଦ୍ରାରାକ୍ଷସ, ମାଳବିକାଗ୍ନିମିତ୍ରମ୍) ନାମକ ନାଟକ ରଚନା କରିଥିଲେ।

(ଞ) ସମୁଦ୍ରଗୁପ୍ତ ( କବିରତ୍ନ, କବିଶେଖର, କବିରାଜ ) ଉପାଧି ଧାରଣ କରିଥିଲେ।

୨। ଗୋଟିଏ ଶବ୍ଦରେ ଉତ୍ତର ଦିଅ:—

(କ) ଗୁପ୍ତାବ୍ଦ କିଏ ପ୍ରଚଳନ କରିଥିଲେ ?

(ଖ) ମହାବୀର କେଉଁ ସ୍ଥାନରେ ଦେହତ୍ୟାଗ କରିଥିଲେ ?

(ଗ) ମହାବୀରଙ୍କ ପତ୍ନୀଙ୍କର ନାମ କ'ଣ ?

(ଘ) ଦିଲ୍ଲୀର ଲୌହସ୍ତମ୍ଭ କେଉଁ ଯୁଗରେ ନିର୍ମିତ ହୋଇଥିଲା ?

(ଙ) ଭାରତର କେଉଁ ବନ୍ଦରରୁ ପରିବ୍ରାଜକ ଫାହିଆନ୍ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ ?

୩। ମହାବୀର ବା ବୁଦ୍ଧଙ୍କ ଜୀବନୀ ସଂକ୍ଷେପରେ ବର୍ଣ୍ଣନା କର।

୪ । ଜୈନଧର୍ମ ସହିତ ବୌଦ୍ଧଧର୍ମ ତୁଳନା କର ।

୫ । ଇତିହାସରେ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀର ଗୁରୁତ୍ୱ ନିର୍ଣ୍ଣୟ କର ।

୬ । ସମସାମୟିକ ଭାରତୀୟ ସମାଜ ଉପରେ ବୌଦ୍ଧଧର୍ମର କି ପ୍ରଭାବ ପଡ଼ିଥିଲା ?

୭ । ମହାରାଜ ଅଶୋକ ବୌଦ୍ଧଧର୍ମର ଉନ୍ନତିକଳ୍ପେ କ'ଣ କରିଥିଲେ ?

୮ । ମୌର୍ଯ୍ୟ ବା ଗୁପ୍ତ ଯୁଗର ସ୍ଥାପତ୍ୟ ସମ୍ବନ୍ଧରେ ଯାହା ଜାଣ ଲେଖ ।

୯ । ମୌର୍ଯ୍ୟ ଓ ଗୁପ୍ତଯୁଗରେ ଭାରତୀୟମାନେ ନାନା ଦେଶ ସହିତ ବାଣିଜ୍ୟ କରି ପ୍ରଚୁର ଧନରତ୍ନ ଆହରଣ କରିଥିଲେ—ଏହା ଉଦାହରଣ ଦ୍ୱାରା ବୁଝାଇ ଦିଅ ।

୧୦ । ନିମ୍ନଲିଖିତ ଘଟଣାବଳୀ ଐତିହାସିକ କାଳକ୍ରମରେ ସଜାଇ ଦିଅ:—

ସମୁଦ୍ରଗୁପ୍ତଙ୍କ ରାଜତ୍ୱ, ମହାବୀରଙ୍କ ଦେହତ୍ୟାଗ, ହୁଏନସାଂଙ୍କ ଭାରତ ଆଗମନ, ଗୌତମ ବୁଦ୍ଧଙ୍କ ମହାନିର୍ବାଣ, ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ରାଜତ୍ୱ, ଶୈଳେନ୍ଦ୍ର ରାଜବଂଶର ପ୍ରତିଷ୍ଠା ।



# ଚତୁର୍ଥ ପରିଚ୍ଛେଦ

## ଭାରତରେ ବିଭିନ୍ନ ବୈଦେଶିକ ସଭ୍ୟତାର ସମାବେଶ ଓ ଭାରତ ଉପରେ ସେଗୁଡ଼ିକର ପ୍ରଭାବ ବିସ୍ତାର

(ଇସ୍‌ଲାମ ଧର୍ମ ଓ ଭାରତରେ ତାର ପ୍ରସାର—ଇସ୍‌ଲାମୀୟ କଳା ଓ ସ୍ଥାପତ୍ୟର ବିକାଶ—ଉର୍ଦ୍ଦୁ ଭାଷାର ସୃଷ୍ଟି ଓ ତାର ଉନ୍ନତି—ତୁର୍କଆଫଗାନ ଯୁଗରେ ଭାରତଶାସନ—ମୋଗଲ ରାଜତ୍ୱରେ ଭାରତୀୟ ସମାଜ, କଳାବିକାଶ, ଶିଳ୍ପ ସ୍ଥାପତ୍ୟ, ଶିକ୍ଷା ବ୍ୟବସ୍ଥା, ରାଜ୍ୟଶାସନ ଓ ଅର୍ଥନୈତିକ ଜୀବନ ।)

**ଇସ୍‌ଲାମ ଧର୍ମ**—ସପ୍ତମ ଶତାବ୍ଦୀର ପ୍ରଥମ ପାଦରେ ମରୁମୟ ଆରବ ଦେଶରେ ଏକ ନୂତନ ଧର୍ମର ଆବିର୍ଭାବ ଘଟିଥିଲା । ଭାରତରେ ସେତେବେଳେ ହର୍ଷବର୍ଦ୍ଧନଙ୍କର ରାଜତ୍ୱ । ସେହି ନୂତନ ଧର୍ମର ନାମ "ଇସ୍‌ଲାମ" । ତା'ର ପ୍ରବର୍ତ୍ତକ ହଜରତ୍ ମହମ୍ମଦ ୫୭୦ ଖ୍ରୀଷ୍ଟାବ୍ଦରେ ଆରବ ଅନ୍ତର୍ଗତ ମକ୍‌କାନଗରୀରେ ଜନ୍ମଗ୍ରହଣ କରି ୬୩୨ ଖ୍ରୀଷ୍ଟାବ୍ଦରେ ଦେହତ୍ୟାଗ କରିଥିଲେ । ମହମ୍ମଦ ଆରବୀୟମାନଙ୍କର ପୌତ୍ତଳିକତା ବିରୁଦ୍ଧରେ ଦଣ୍ଡାୟମାନ ହୋଇ, ଈଶ୍ୱର ଏକ ଓ ଅଦ୍ୱିତୀୟ ବୋଲି ପ୍ରଚାର କରିଥିଲେ । ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇ ସେ ଅବଶେଷରେ ସମଗ୍ର ଆରବ ଜାତିକୁ ଇସ୍‌ଲାମ ଧର୍ମରେ ଦୀକ୍ଷିତ କରିପାରିଥିଲେ । ଧର୍ମଗତ ଏକତା ବନ୍ଧନରେ ଆବଦ୍ଧ ହୋଇ ଆରବ ଜାତି ଏକ ପରାକ୍ରାନ୍ତ ଜାତିରେ ପରିଣତ ହୋଇଥିଲା । ମହମ୍ମଦଙ୍କ ମୃତ୍ୟୁ ପରେ ଇସ୍‌ଲାମ ଧର୍ମାବଲମ୍ବୀମାନେ ବିଶାଳ ଆରବ ସାମ୍ରାଜ୍ୟ ଗଠନ କରିଥିଲେ । ଏସିଆ, ଆଫ୍ରିକା ଓ ଇଉରୋପର ଅନେକ ଅଞ୍ଚଳରେ ସେମାନେ ପ୍ରଭାବ ବିସ୍ତାର କରିବାକୁ ସମର୍ଥ ହୋଇଥିଲେ । ଏବେ ଇସ୍‌ଲାମ

ଧର୍ମ ଆମ ଭାରତରେ ଆସି ପ୍ରବେଶ କରିଥିଲା ଏବଂ କାଳକ୍ରମେ ମୁସଲମ୍ ବା ମୁସଲମାନ ନାମରେ ପରିଚିତ ଉକ୍ତ ଧର୍ମାବଲମ୍ବୀମାନେ ଭାରତର ଶାସକ ହୋଇଥିଲେ । ଭାରତୀୟ ସମାଜ ଓ ସଂସ୍କୃତି ଉପରେ ଏହି ଧର୍ମ ବିଶେଷ ପ୍ରଭାବ ବିସ୍ତାର କରିଥିଲା ।

ଭାରତରେ ମୁସଲମାନ ଧର୍ମର ଆବିର୍ଭାବ ପରେ ଭାରତୀୟ ସଭ୍ୟତା ଏକ ଅଭିନବ ପରିସ୍ଥିତିର ସମ୍ମୁଖୀନ ହେଲା ।ପୂର୍ବରୁ ଗ୍ରୀକ୍, ଶକ, କୁଶାଣ, ହୁନ୍ ପ୍ରମୁଖ ବୈଦେଶିକମାନେ ଭାରତ ଆକ୍ରମଣ କରି ଭାରତରେ ପ୍ରଭାବ ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଥିଲେ, ମାତ୍ର ଅବଶେଷରେ ସେମାନେ ଭାରତୀୟ ସମାଜର ଅଙ୍ଗୀଭୂତ ହୋଇ ଯାଇଥିଲେ ଏବଂ ଭାରତୀୟ ଭାଷା, ଧର୍ମ, ରୀତିନୀତି ପ୍ରଭୃତି ଗ୍ରହଣ କରି ନେଇଥିଲେ । କିନ୍ତୁ ଇସ୍‌ଲାମ ଧର୍ମାବଲମ୍ବୀମାନେ ନିଜର ସ୍ୱାତନ୍ତ୍ର୍ୟ ହରାଇ ନ ଥିଲେ । ଜାତିଭେଦ, ମୂର୍ତ୍ତିପୂଜା ପ୍ରଭୃତି କେତେକ ଆଚାର ଓ ସଂସ୍କାର ହିନ୍ଦୁ ମୁସଲମ ମିଳନ ପଥରେ ଘୋର ଅନ୍ତରାୟ ସୃଷ୍ଟି କରିଥିଲା । ଫଳତଃ, ଗୋଟିଏ ସଂସ୍କୃତି ପରିବର୍ତ୍ତରେ, ହିନ୍ଦୁ ସଂସ୍କୃତି ଓ ମୁସଲମାନ ସଂସ୍କୃତି ନାମରେ ଦୁଇଟି ସ୍ୱତନ୍ତ୍ର ସଂସ୍କୃତି ଏ ଦେଶରେ ପ୍ରତିଷ୍ଠିତ ହେଲା ଏବଂ ଉଭୟ ମଧ୍ୟରେ ବହୁକାଳ ପର୍ଯ୍ୟନ୍ତ ସଂଘର୍ଷ ଲାଗି ରହିଲା । ଅବଶ୍ୟ ଏହି ସଂଘର୍ଷ ମଧ୍ୟରେ ଉଭୟ ସଂସ୍କୃତିର ମିଳନ ଓ ସମନ୍ୱୟ ପାଇଁ ଉଦ୍ୟମ କରାଯାଇଛି, ମାତ୍ର ତାହା ସମ୍ପୂର୍ଣ୍ଣ ସଫଳତା ଅର୍ଜନ କରିପାରି ନାହିଁ ।

**ଇସ୍‌ଲାମ ଧର୍ମର ମୂଳତଥ୍ୟ :**—ଇସ୍‌ଲାମ ଧର୍ମ ଏକେଶ୍ୱର ବାଦ ଉପରେ ପ୍ରତିଷ୍ଠିତ । ଏହି ଧର୍ମର ପ୍ରଚଳିତ ମତ ହେଉଛି—"ଅଲ୍ଲା" (ଈଶ୍ୱର) ଏକ ଏବଂ ମହମ୍ମଦ ତାଙ୍କର "ରସୁଲ୍" ବା ପ୍ରେରିତ ପୁରୁଷ । ଏତଦ୍‌ବ୍ୟତୀତ ଇସ୍‌ଲାମର ଅନ୍ୟ ପାଞ୍ଚୋଟି

ପ୍ରଧାନ କଥା ହେଉଛି—(୧) ଇମାନ୍ ବା ମୁସଲମାନ ଧର୍ମଗ୍ରନ୍ଥ 'କୋରାନ'ରେ ବିଶ୍ୱାସ, (୨) ନମାଜ (ପ୍ରାର୍ଥନା), (୩) ରୋଜା (ଉପବାସ), (୪) ଜାକାତ (ବାଧ୍ୟତାମୂଳକ ଦାନ) ଓ (୫) ହଜ୍ (ତୀର୍ଥଯାତ୍ରା) ।

**ଭାରତରେ ଇସ୍‌ଲାମ ଧର୍ମର ପ୍ରସାର:**—ହଜରତ୍ ମହମ୍ମଦଙ୍କ ମୃତ୍ୟୁ ପରେ ମୁସଲମାନମାନଙ୍କର ନେତୃତ୍ୱ ଗ୍ରହଣ କରିଥିଲେ ଖଲିଫାମାନେ । ସେମାନଙ୍କ ନେତୃତ୍ୱରେ ମୁସଲମାନମାନେ ନାନା ଦିଗରେ ଅଗ୍ରସର ହୋଇ ଇରାନଠାରୁ ସ୍ପେନ୍‌ପର୍ଯ୍ୟନ୍ତ ଇସ୍‌ଲାମ ଧର୍ମର ଗୌରବକେତନ ଉଡ଼ାଇ ପାରିଥିଲେ । ମହମ୍ମଦଙ୍କ ମୃତ୍ୟୁର ପାଞ୍ଚବର୍ଷ ପରେ ଦ୍ୱିତୀୟ ପୁଲକେଶୀଙ୍କ ରାଜତ୍ୱକାଳରେ ଆରବମାନେ ଆଧୁନିକ ବମ୍ବେର ନିକଟବର୍ତ୍ତୀ ଠାନା (Thana)ନାମକ ସ୍ଥାନରେ ଅବତରଣ କରିଥିଲେ । କିନ୍ତୁ ତତ୍କାଳୀନ ଖଲିଫା ଭାରତରେ ରାଜ୍ୟ ବିସ୍ତାର କରିବାକୁ ସଙ୍ଗତ ମନେକରି ନଥିଲେ । କାଳକ୍ରମେ ଆରବ-ମାନେ ଆଫଗାନିସ୍ଥାନ ଓ ବେଲୁଚିସ୍ଥାନ ଜୟକରି ନେଇଥିଲେ । ଅଷ୍ଟମ ଶତାବ୍ଦୀର ପ୍ରଥମ ଭାଗରେ ଭାରତର ସମୃଦ୍ଧିଶାଳୀ ଅଞ୍ଚଳ-ଗୁଡ଼ିକ ଉପରେ ସେମାନଙ୍କର ଲୋଲୁପଦୃଷ୍ଟି ପଡ଼ିଥିଲା ।

ସେତେବେଳେ ସିନ୍ଧୁ ରାଜ୍ୟରେ ଦାହିର ନାମକ ଜଣେ ରାଜବଂଶୀୟ ବ୍ରାହ୍ମଣ ରାଜା ରାଜତ୍ୱ କରୁଥିଲେ । ଉକ୍ତ ରାଜ୍ୟ ଅନ୍ତର୍ଗତ ଦେବଲ ବନ୍ଦରରେ କେତେକ ଜଳଦସ୍ୟୁ ଆରବମାନଙ୍କର ବାଣିଜ୍ୟ-ତରୀ ଲୁଣ୍ଠନ କରିବାରୁ ଇରାକର ଆରବ ଶାସନକର୍ତ୍ତା ଆଲହେଜ୍ଜାଜ ଦାହିରଙ୍କଠାରୁ କ୍ଷତିପୂରଣ ଦାବୀ କଲେ । ମାତ୍ର ଜଳଦସ୍ୟୁମାନଙ୍କ ଉପରେ ତାଙ୍କର କୌଣସି କର୍ତ୍ତୃତ୍ୱ ନାହିଁ ବୋଲି କହି ଦାହିର କ୍ଷତିପୂରଣ ଦେବାକୁ ଅସ୍ୱୀକୃତ ହେଲେ । ତେଣୁ ଆଲହେଜ୍ଜାଜ ଖଲିଫାଙ୍କ ସମ୍ମତିକ୍ରମେ ସିନ୍ଧୁରାଜ୍ୟ ଆକ୍ରମଣ କଲେ । ଯୁଦ୍ଧରେ ଆରବମାନେ ପରାସ୍ତ ହେଲେ । ତେଣୁ ଆଲହେଜ୍ଜାଜ ୭୧୨

ଖ୍ରୀଷ୍ଟାବ୍ଦରେ ନିଜର ଭ୍ରାତୁଷ୍ପୁତ୍ର ଓ ଜାମାତା ମହମ୍ମଦ ଇବନ୍ କାସିମଙ୍କୁ ଏକ ବିଶାଳ ସୈନ୍ୟବାହିନୀ ଦେଇ ସିନ୍ଧୁ ଆକ୍ରମଣ କରିବାକୁ ପଠାଇଲେ । ଏଥର ଦାହିର ରାଓର (Raor) ନାମକ ଯୁଦ୍ଧରେ ପରାସ୍ତ ଓ ନିହତ ହେଲେ । ରାଜମହିଷୀ ଅଧୀର ସାହସର ସହିତ କିଛୁଦିନ ଯୁଦ୍ଧ ଚଳାଇଲେ, ମାତ୍ର ବ୍ୟର୍ଥ ମନୋରଥ ହୋଇ ଅଗ୍ନିରେ ଝାସ ଦେଇ ମୃତ୍ୟୁବରଣ କଲେ । ସିନ୍ଧୁ ରାଜ୍ୟ ଆରବମାନଙ୍କର ପଦାନତ ହେଲା । ଆରବମାନେ ଏହା ପରେ କଚ୍ଛ, ସୌରାଷ୍ଟ୍ର, ରାଜପୁତାନାର କେତେକାଂଶ ଓ ଅନ୍ୟାନ୍ୟ କେତେକ ସ୍ଥାନ ଦଖଲ କରିନେଲେ; ମାତ୍ର ଦକ୍ଷିଣରେ ଚାଲୁକ୍ୟମାନେ, ଉତ୍ତରରେ କାର୍କୋଟମାନେ ଏବଂ ପୂର୍ବରେ ପ୍ରତିହାରମାନେ ସେମାନଙ୍କୁ ପ୍ରବଳ ବାଧା ଦେବାରୁ ସେମାନେ ଆଉ ଅଗ୍ରସର ହୋଇ ପାରି ନଥିଲେ । ଆରବ ଶାସନ ସିନ୍ଧୁଦେଶରେ ଅଳ୍ପକାଳ ସ୍ଥାୟୀ ହୋଇଥିଲା; କିନ୍ତୁ ଏହା ଫଳରେ ମୁସଲମାନ ଧର୍ମ ଭାରତରେ ପ୍ରବର୍ତ୍ତିତ ହେବାକୁ ଆରମ୍ଭ କରିଥିଲା ଓ ଆରବୀ ଭାଷାର ପ୍ରଚଳନ ହୋଇଥିଲା । ବହୁ ଆରବ ସୈନିକ ଓ ବଣିକ ଶ୍ରେଣୀର ଲୋକ ଭାରତର ପଶ୍ଚିମ ସୀମାନ୍ତରେ ସ୍ଥାୟୀ ଭାବରେ ବାସ କରିଥିଲେ । ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଭାବର ଆଦାନ-ପ୍ରଦାନ ଘଟିଥିଲା ଓ ଭାରତୀୟ ସଂସ୍କୃତି ଆରବୀୟ ମାଧ୍ୟମରେ ବିଦେଶରେ ପ୍ରସାରଲାଭ କରିଥିଲା । ଆରବମାନେ ଭାରତୀୟ ଧର୍ମ, ଦର୍ଶନ, ଚିକିତ୍ସାବିଜ୍ଞାନ, ଗଣିତ, ଜ୍ୟୋତିଷ ପ୍ରଭୃତି ନାନା ବିଷୟରେ ଜ୍ଞାନ ଅର୍ଜନ କରି ତାହା ନିଜ ଦେଶ ତଥା ଇଉରୋପ ମହାଦେଶରେ ପ୍ରଚାର କରିଥିଲେ ।

**ମୁସଲମାନମାନଙ୍କ ଦ୍ୱାରା ପଞ୍ଜାବ ଜୟ:**—ସିନ୍ଧୁ ବିଜୟ ତୁଳନାରେ ମୁସଲମାନମାନଙ୍କର ପଞ୍ଜାବ ବିଜୟ ଅଧିକ ଗୁରୁତ୍ୱପୂର୍ଣ୍ଣ । ପ୍ରାୟ ୯୬୨ ଖ୍ରୀଷ୍ଟାବ୍ଦରେ ଗଜନୀ ରାଜ୍ୟ ନାମକ

ଏକ ମୁସଲମାନ ରାଜ୍ୟ ଭାରତଠାରୁ ଅଳ୍ପ ଦୂରରେ ଆଲପ୍ତ-ଗୀନଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଅଲପ୍ତଗୀନଙ୍କ ମୃତ୍ୟୁ ପରେ ତାଙ୍କର ଜାମାତା ସବକ୍ତଗୀନ ଗଜନୀର ଅଧିପତି ହୋଇ ଭାରତରେ ତୁର୍କରାଜ୍ୟ ସ୍ଥାପନର ମାର୍ଗ ପ୍ରସ୍ତୁତ କରିଥିଲେ । ଏହି ସମୟରେ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତରେ ଶାହିବଂଶୀୟ ହିନ୍ଦୁ ରାଜା ଜୟପାଳ ରାଜତ୍ୱ କରୁଥିଲେ । ତାଙ୍କ ରାଜଧାନୀର ନାମ ଥିଲା ଉଦଭାଣ୍ଡପୁର । ସବକ୍ତଗୀନ ଧର୍ମଯୁଦ୍ଧ ଆରମ୍ଭ କରି ସେହି ସୂତ୍ରରେ ଜୟପାଳଙ୍କ ରାଜ୍ୟର କେତେକ ଅଂଶ ଲୁଣ୍ଠନ କରିଥିଲେ ଓ କେତୋଟି ଦୁର୍ଗ ଅଧିକାର କରିନେଇଥିଲେ । ଏଥିରେ କ୍ରୁଦ୍ଧ ହୋଇ ଜୟପାଳ ସବକ୍ତଗୀନଙ୍କ ରାଜ୍ୟ ଜୟ କରିବାକୁ ବାହାରିଥିଲେ, ମାତ୍ର ଭୀଷଣ ତୁଷାରପାତ ଓ ପ୍ରବଳବାତ୍ୟା ଫଳରେ ତାଙ୍କ ସୈନ୍ୟବାହିନୀ ବିଧ୍ୱସ୍ତ ହୋଇଯିବାରୁ ସେ ସବକ୍ତଗୀନଙ୍କ ସହିତ ହୀନ ସର୍ତ୍ତରେ ସନ୍ଧି କରିବାକୁ ବାଧ୍ୟ ହେଲେ । ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରି ସେ ଉକ୍ତ ସନ୍ଧି ସର୍ତ୍ତ ଅବମାନନା କଲେ । ତେଣୁ ସବକ୍ତଗୀନ ଜୟପାଳଙ୍କ ରାଜ୍ୟ ଆକ୍ରମଣ କଲେ । ଜୟପାଳ ଯୁଦ୍ଧରେ ପରାସ୍ତ ହେଲେ । ଲମଘାନ ଓ ପେଶାବାରର ମଧ୍ୟବର୍ତ୍ତୀ ଅଞ୍ଚଳ ଗଜନୀ ରାଜ୍ୟର ଅନ୍ତର୍ଭୁକ୍ତ ହେଲା ।

**ସୁଲତାନ ମାହମୁଦଙ୍କ ଭାରତ ଆକ୍ରମଣ:**—ସବକ୍ତ-ଗୀନଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ମାହମୁଦ୍ ପିତୃଶତ୍ରୁ ଜୟପାଳଙ୍କୁ ଶାସ୍ତି ଦେବାପାଇଁ ଓ ହିନ୍ଦୁ ଦେବ ମନ୍ଦିର ଧ୍ୱଂସ କରି ଭାରତର ଧନରତ୍ନ ଲୁଣ୍ଠନ କରିବା ପାଇଁ ଭାରତ-ଅଭିଯାନ ଆରମ୍ଭ କଲେ । ସେ ସତରଥର ଭାରତ ଆକ୍ରମଣ କରିଥିଲେ ବୋଲି କଥିତ ଅଛି ( ଖ୍ରୀ: ଅ: ୧୦୦୦—୧୦୨୭ ) । ମାହମୁଦଙ୍କ ଆକ୍ରମଣ ଫଳରେ

ଶାହିଗଜ ବଂଶର ପତନ ଘଟିଲା । ପଞ୍ଜାବ ଅଧିକାର କରି ମାହମୁଦ୍ ଥାନେଶ୍ୱର ଜୟ କଲେ ଓ ମଥୁରା, କନୌଜ, କାଲଞ୍ଜର ପ୍ରଭୃତି ଲୁଣ୍ଠନ କଲେ । ସେତେବେଳେ କାଠିଆବାଡ଼ର ସୋମନାଥ ମନ୍ଦିର ଖୁବତ ପ୍ରସିଦ୍ଧ ଥିଲା । ୧୦୨୬ ଖ୍ରୀଷ୍ଟାବ୍ଦରେ ମାହମୁଦ୍ **ସୋମନାଥ ମନ୍ଦିର** ଧ୍ୱଂସ କରି ବହୁ ଧନରତ୍ନ ଲୁଣ୍ଠନ କରିନେଲେ । ଭାରତରେ ସାମ୍ରାଜ୍ୟ ଗଠନ କରିବା ମାହମୁଦ୍‌ଙ୍କର



ସୋମନାଥ ମନ୍ଦିର

ଇଚ୍ଛା ନ ଥିଲା । ତାଙ୍କର ଭାରତ ଅଭିଯାନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଧନରତ୍ନ ଲୁଣ୍ଠନ । କେବଳ ହିନ୍ଦୁ ଶାହିରାଜ୍ୟ ତଥା ପଞ୍ଜାବ ପ୍ରଦେଶ ଓ ତାର ପାର୍ଶ୍ୱବର୍ତ୍ତୀ କେତେକ ଅଞ୍ଚଳ ସେ ନିଜର ଶାସନାଧୀନ କରିନେଇଥିଲେ । ଏହା ଫଳରେ ଭାରତରେ ମୁସଲିମ୍ ଅଧିକାର ପ୍ରତିଷ୍ଠାର ପଥ ପ୍ରଶସ୍ତ ହୋଇ ଯାଇଥିଲା । ଉତ୍ତରୋତ୍ତରରେ, ମହମ୍ମଦ ଘୋରୀଙ୍କ ଅଭିଯାନ ସମୟରେ ଲାହୋର ଦୁର୍ଗ ମୁସଲମାନ ଆକ୍ରମଣର ସୁଦୃଢ଼ ପୃଷ୍ଠ ଭୂମିରୂପେ ବ୍ୟବହୃତ ହୋଇଥିଲା ।

**ମହମ୍ମଦ ଘୋରୀଙ୍କ ବିଜୟ:**—ମହମ୍ମଦ ଘୋରୀଙ୍କ ଭାରତ ଆକ୍ରମଣ ୧୧୭୫ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିଲା । ସେ ପଞ୍ଜାବରୁ ଗଜନୀଶାସନ ଲୋପ କରିଥିଲେ । ସେତେବେଳେ କନୌଜର ରାଜା ଜୟଚନ୍ଦ୍ର ଏବଂ ଦିଲ୍ଲୀ ଓ ଆଜମୀରର ରାଜା ପୃଥ୍ୱୀରାଜଙ୍କ ମଧ୍ୟରେ ଘୋର ଶତ୍ରୁତା ଚାଲିଥାଏ । ମହମ୍ମଦ ଘୋରୀ ଏହାର ସୁଯୋଗ ନେଇ ୧୧୯୧ ଖ୍ରୀଷ୍ଟାବ୍ଦରେ ପୃଥ୍ୱୀରାଜଙ୍କ ବିରୁଦ୍ଧରେ ଅଗ୍ରସର ହେଲେ, ମାତ୍ର ପ୍ରଥମ ତରାଇନ ବା ତିରୋରୀ ଯୁଦ୍ଧରେ ପରାସ୍ତ ଓ ଆହତ ହୋଇ ଫେରିଗଲେ । ପରବର୍ଷ ବିଶାଳ ବାହିନୀ ଆଣି ସେ ପୁନଶ୍ଚ ପୃଥ୍ୱୀରାଜଙ୍କ ସମ୍ମୁଖୀନ ହେଲେ ଏବଂ ପୂର୍ବୋକ୍ତ ତିରୋରୀ ଯୁଦ୍ଧକ୍ଷେତ୍ରରେ ପୃଥ୍ୱୀରାଜଙ୍କୁ ପରାସ୍ତ ଓ ବନ୍ଦୀ କଲେ । ପରେ ପୃଥ୍ୱୀରାଜଙ୍କ ପ୍ରାଣ ନାଶ କରି ଓ ଜୟଚନ୍ଦ୍ରଙ୍କୁ ପରାସ୍ତ କରି ମହମ୍ମଦ ଘୋରୀ ଉତ୍ତର ଭାରତରେ ମୁସଲମାନ ରାଜ୍ୟର ମୂଳଭିତ୍ତି ସ୍ଥାପନ କଲେ । ତାଙ୍କର ସେନାପତି କୁତବୁଦ୍ଦିନ ଓ ଇଖ୍ତିଆରୁଦ୍ଦିନ ଉତ୍ତର ଭାରତର ବିଭିନ୍ନ ଅଞ୍ଚଳ ଜୟ କଲେ ।



ମହମ୍ମଦ ଘୋରୀ

ମହମ୍ମଦ ଘୋରୀଙ୍କ ମୃତ୍ୟୁ ପରେ କୁତବୁଦ୍ଦିନ ସୁଲତାନ ଉପାଧି ଧାରଣ କରି ଭାରତରେ ତୁର୍କ ଶାସନ ପ୍ରବର୍ତ୍ତନ କଲେ । ତାଙ୍କ ପ୍ରତିଷ୍ଠିତ ବଂଶକୁ "ଦାସବଂଶ" ବୋଲି କୁହାଯାଏ । ଦାସ ବଂଶର ବିଶିଷ୍ଟ ରାଜା ଥିଲେ ଇଲତୁତମିସ୍ ଓ ଗିୟାସୁଦ୍ଦିନ ବଲ୍ବନ । ୧୨୦୬ ରୁ ୧୨୯୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦାସବଂଶ ରାଜତ୍ୱ କଲା ।

ତତ୍ପରେ ଖିଲଜୀ ରାଜବଂଶର ରାଜତ୍ୱ ଆରମ୍ଭ ହେଲା । ଏହି ବଂଶର ପ୍ରତିଷ୍ଠାତାଙ୍କ ନାମ ଜଲାଲୁଦ୍ଦିନ ଖିଲଜୀ । ଅଲ୍ଲାଉଦ୍ଦିନ ଖିଲଜୀ ଏହି ବଂଶର ପ୍ରସିଦ୍ଧ ସୁଲତାନ ।



ପୃଥ୍ୱୀରାଜ

ଖିଲଜୀ ରାଜତ୍ୱ ପରେ ୧୩୨୦ ଖ୍ରୀଷ୍ଟାବ୍ଦରେ ତୁଘଲକ ବଂଶର ରାଜତ୍ୱ ଆରମ୍ଭ ହେଲା । ଗିୟାସୁଦ୍ଦିନ ତୁଘଲକ୍ ଏହାର ପ୍ରତିଷ୍ଠାତା । ମହମ୍ମଦ ତୁଘଲକ ଓ ଫିରୋଜ ତୁଘଲକ୍ ଏହି ବଂଶର ପ୍ରସିଦ୍ଧ ନରପତି । ୧୪୧୩ ଖ୍ରୀଷ୍ଟାବ୍ଦରେ ତୁଘଲକ ବଂଶ ଲୋପ ପାଇଲା । ତତ୍ପରେ ସୈୟଦ ବଂଶ ଓ ଲୋଦୀ-ବଂଶର ଶାସକମାନେ କିଛି କାଳ ପାଇଁ ଦିଲ୍ଲୀର ସୁଲତାନ ହୋଇ ରାଜତ୍ୱ କଲେ । ଅବଶେଷରେ କାବୁଲର ମୋଗଲ ଅଧିପତି ବାବର ୧୫୨୬ ଖ୍ରୀଷ୍ଟାବ୍ଦରେ ପ୍ରଥମ ପାନିପଥ ଯୁଦ୍ଧରେ ଜୟଲାଭ କରି ଭାରତରେ ମୋଗଲ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପନ କଲେ ।

**ଭାରତୀୟ ଓ ଇସଲାମୀୟ ସଭ୍ୟତାର ସଂଘର୍ଷ ଓ ସହାବସ୍ଥାନ:**—ପୂର୍ବରୁ କୁହାଯାଇଛି ଯେ, ମୁସଲମାନ ଆକ୍ରମଣ ପୂର୍ବରୁ ଗ୍ରୀକ୍, ଶକ, ହୂନ ପ୍ରଭୃତି ବୈଦେଶିକମାନେ ଭାରତକୁ ଆସି ଏବଂ ଭାରତରେ ଅବସ୍ଥାନ କରି ସେମାନଙ୍କର ସ୍ୱାତନ୍ତ୍ର୍ୟ ହରାଇଥିଲେ,

କିନ୍ତୁ ତୁର୍କ ଆଫଗାନ ଆକ୍ରମଣକାରୀମାନେ ସେମାନଙ୍କର ସ୍ୱାତନ୍ତ୍ର୍ୟ ହରାଇ ନଥିଲେ । ଅନେକ ସମୟରେ ବିଜେତା ଓ ବିଜିତ ସମ୍ପ୍ରଦାୟ ମଧ୍ୟରେ ରାଜନୈତିକ ସମ୍ପର୍କ ନେଇ ଘୋର ତିକ୍ତତା ପ୍ରକାଶ ପାଇଥିଲା କିନ୍ତୁ ଦୁଇ ବିପରୀତ ସଂସ୍କୃତି ପରସ୍ପରର ଘନିଷ୍ଠ ସମ୍ପର୍କରେ ଆସି, ଅନେକ କ୍ଷେତ୍ରରେ ପରସ୍ପର ଉପରେ ପ୍ରଭାବ ବିସ୍ତାର କରିଥିଲେ । ଅନେକ ହିନ୍ଦୁ ନରନାରୀ ମୁସଲମାନ ଧର୍ମରେ ଦୀକ୍ଷିତ ହୋଇଥିଲେ ଏବଂ ଦେଶରେ ଏକ ଧର୍ମାନ୍ତରିତ ସମ୍ପ୍ରଦାୟର ସୃଷ୍ଟି ହୋଇଥିଲା । ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟ ପରସ୍ପରର ସଂସ୍କୃତି ପ୍ରତି ଆକୃଷ୍ଟ ହୋଇଥିଲେ । ହିନ୍ଦୁମାନେ କେତେକ ମୁସଲମାନ ଫକୀରଙ୍କ ପ୍ରତି ଗଭୀର ଶ୍ରଦ୍ଧା ପ୍ରକାଶ କରିଥିଲେ ଓ ମୁସଲମାନମାନେ କେତେକ ହିନ୍ଦୁ ସନ୍ନ୍ୟାସୀଙ୍କଠାରେ ଆସ୍ଥା ସ୍ଥାପନ କରିଥିଲେ । ଏହା ଫଳରେ ଦେଶରେ ସତ୍ୟପୀର ପୂଜା ପ୍ରବର୍ତ୍ତିତ ହୋଇଥିଲା । ବହୁ ହିନ୍ଦୁ ଗ୍ରନ୍ଥ ମୁସଲମାନୀ ଭାଷାରେ ଅନୂଦିତ ହୋଇଥିଲା । କେତେକ ମୁସଲମାନ ମନୀଷୀ ହିନ୍ଦୁର ଯୋଗ ଓ ବେଦାନ୍ତ ଦର୍ଶନ ଆଡ଼କୁ ଆକୃଷ୍ଟ ହୋଇଥିଲେ । ହିନ୍ଦୁମାନେ ଫାର୍ସୀ ଭାଷାରେ ଓ ମୁସଲମାନମାନେ ଭାରତୀୟ ଭାଷାମାନଙ୍କରେ ଦକ୍ଷତା ଅର୍ଜନ କରିଥିଲେ ।

ହିନ୍ଦୁ ମୁସଲିମ ସଂସ୍କୃତିର ସହଯୋଗ ଫଳରେ ନୂତନ ଧରଣର କଳା, ସ୍ଥାପତ୍ୟ, ଚିତ୍ରଶିଳ୍ପ ଓ ସଙ୍ଗୀତର ସୃଷ୍ଟି ହୋଇଥିଲା । ଏପରିକି, ହିନ୍ଦୁର ସତୀଦାହ ଓ ଜୌହର ପ୍ରଥା ମଧ୍ୟ କେତେକ ମୁସଲମାନ ଗୃହରେ ପ୍ରବେଶଲାଭ କରିପାଇଥିଲା । ଦେଶରେ ବିଭିନ୍ନ ଧର୍ମସଂସ୍କାରକମାନଙ୍କର ଆବିର୍ଭାବ ଘଟିଥିଲା । ସେମାନେ ପ୍ରଚାର କରିଥିଲେ ଯେ ସବୁ ଧର୍ମ ସମାନ, ସବୁ ଧର୍ମର ଈଶ୍ୱର ଏକ ଏବଂ ମନୁଷ୍ୟ ନିଜର ଆଭିଜାତ୍ୟ ବଳରେ ପ୍ରତିଷ୍ଠା ଲାଭ ନ କରି ସତ୍‌କର୍ମ ବଳରେ ହିଁ ପ୍ରତିଷ୍ଠା ଲାଭ କରେ ।

## ଇସ୍‌ଲାମୀୟ ଶିଳ୍ପକଳା ଓ ସ୍ଥାପତ୍ୟର ବିକାଶ:—

ଭାରତରେ ଇସ୍‌ଲାମର ଆବିର୍ଭାବ ପୂର୍ବରୁ କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ବ୍ରାହ୍ମଣ, ବୌଦ୍ଧ ଓ ଜୈନ ଧାରାର ପ୍ରଚଳନ ଥିଲା । ତଥାପି ସପ୍ତମ ଶତାବ୍ଦୀର ମଧ୍ୟ ଭାଗରୁ ଆରମ୍ଭ କରି ଇସ୍‌ଲାମୀୟ ପ୍ରଭାବ ଧୀରେ ଧୀରେ ଉକ୍ତ କ୍ଷେତ୍ରରେ ପ୍ରବେଶ ଲାଭକଲା । ଆରବ, ପାରସିକ ଓ ତୁର୍କ ପ୍ରଭୃତି ମୁସଲମାନ ଧର୍ମାବଲମ୍ବୀମାନେ ଏ ଦେଶକୁ ପଶ୍ଚିମ-ଏସିଆ, ମଧ୍ୟ-ଏସିଆ, ଉତ୍ତର-ଆଫ୍ରିକା ଓ ଦକ୍ଷିଣ-ପଶ୍ଚିମ ଇଉରୋପରୁ ନୂତନ କଳା ପଦ୍ଧତି ଆନୟନ କରି ଭାରତୀୟ କଳା ପଦ୍ଧତି ସହିତ ତାର ମିଶ୍ରଣ ସାଧନ କରିଥିଲେ । ଏହା ଫଳରେ ଏଦେଶରେ ଏକ ନୂତନ ଧରଣର କଳା ପଦ୍ଧତିର ସୃଷ୍ଟି ହୋଇଥିଲା । ଏହାକୁ ଇଣ୍ଡୋ-ଇସଲାମୀୟ କଳା (Indo-Islamic Art) ବୋଲି କୁହାଯାଏ । ମାତ୍ର ଏହି କଳାପଦ୍ଧତିରେ ନାନା ଆଞ୍ଚଳିକ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠିତ ଥିବାର ଦେଖାଯାଏ । ଦିଲ୍ଲୀର ଶିଳ୍ପକଳା ଓ ସ୍ଥାପତ୍ୟରେ ଇସ୍‌ଲାମୀୟ ପ୍ରଭାବ ଅଧିକ ପରିମାଣରେ ପରିଲକ୍ଷିତ ହୁଏ; କିନ୍ତୁ ଜୌନପୁର, ବଙ୍ଗ, ଗୁଜରାଟ ଓ ଦାକ୍ଷିଣାତ୍ୟରେ ଲୌକିକ ପ୍ରଭାବ ଅଧିକ ଦେଖାଯାଏ ।

ମୁସଲମାନମାନେ ଭାରତୀୟ ଶିଳ୍ପୀମାନଙ୍କୁ ବହୁ ସଂଖ୍ୟାରେ ନିର୍ମାଣ କାର୍ଯ୍ୟରେ ନିଯୁକ୍ତ କରିଥିଲେ । ତେଣୁ ସେମାନଙ୍କ କାର୍ଯ୍ୟରେ ଭାରତୀୟ ଶିଳ୍ପ ପଦ୍ଧତିର ଛାୟା ପ୍ରତିଫଳିତ ହେବା ସ୍ୱାଭାବିକ । ତା ଛଡ଼ା, ପ୍ରଥମେ ପ୍ରଥମେ ମୁସଲମାନ ଶାସକମାନେ ହିନ୍ଦୁ ଓ ଜୈନ ମନ୍ଦିରମାନ ଭାଙ୍ଗି ସେହି ଉପକରଣରେ ମସଜିଦ୍ ବା ମୁସଲମାନ-ପ୍ରାର୍ଥନାଗାରମାନ ଗଠନ କରିଥିଲେ । କେତେକ ସ୍ଥଳରେ ହିନ୍ଦୁ ମନ୍ଦିରଗୁଡ଼ିକର ଆଂଶିକ ପରିବର୍ତ୍ତନ କରାଯାଇ ମସଜିଦ୍‌ମାନ ନିର୍ମିତ ହୋଇଥିଲା । ତେଣୁ ସେ ସମସ୍ତ କାର୍ଯ୍ୟରେ ହିନ୍ଦୁ ରୀତିର ପ୍ରଭାବ ପରିଦୃଷ୍ଟ ହେବାର କଥା । ଦିଲ୍ଲୀରେ ଯେଉଁ ଧରଣର ଶିଳ୍ପଭାସ୍କର୍ଯ୍ୟ

ଗଢ଼ିଉଠିଥିଲା, ତାହାର ପ୍ରକୃଷ୍ଟ ଉଦାହରଣ କୁତବ୍‌ମିନାର । ଆଲ୍ଲାଉଦ୍ଦିନଙ୍କ ଅମଳରେ ନିର୍ମିତ ଜମାଏତଖାନା ମସ୍‌ଜିଦ ଓ କୁତବ୍‌-ମିନାର୍‌ ନିକଟସ୍ଥ ଆଲାଇ ଦରୱାଜାରେ ଇସ୍‌ଲାମୀୟ ପରିକଳ୍ପନା ପରିସ୍ଫୁଟ ହୋଇଥିବାର ପରିଲକ୍ଷିତ ହୁଏ । ତୁଘଲକ ସୁଲତାନମାନଙ୍କ ଅମଳରେ କଳା ଓ ସ୍ଥାପତ୍ୟ କେତେକ ପରିମାଣରେ ନିମ୍ନ ସ୍ତରକୁ ଅବତରଣ କରି ଆସିଥିଲା । ସେତେବେଳେ ରାଜସରକାରର ଆର୍ଥିକ ଅବସ୍ଥା ଭଲ ନ ଥିଲା । ତେଣୁ କଳାର ଉତ୍କର୍ଷ ପ୍ରତି ଯଥେଷ୍ଟ ଦୃଷ୍ଟି ଦିଆଯାଇ ପାରିନଥିଲା । ସୟଦ ଓ ଲୋଦୀମାନଙ୍କ ଅମଳରେ ଖିଲ୍‌ଜୀ ଯୁଗର କଳାପାଟବ ପୁନଃ ପ୍ରତିଷ୍ଠିତ କରିବାର ଉଦ୍ୟମ ହୋଇଥିଲା ସତ, କିନ୍ତୁ ତାହା ବିଶେଷ ସଫଳତା ଲାଭ କରିଥିଲା ବୋଲି ମନେ ହୁଏ ନାହିଁ ।



କୁତବ୍‌ମିନାର

ତୁର୍କ ଆଫଗାନ ଯୁଗରେ ଭାରତର ବିଭିନ୍ନ ପ୍ରଦେଶରେ ଅନେକ ସମାଧିମନ୍ଦିର, ମସ୍‌ଜିଦ ଓ ରାଜପ୍ରାସାଦ ନିର୍ମିତ ହୋଇଥିଲା । ଜୌନପୁରର ଅଟାଲଦେବୀ ମସ୍‌ଜିଦ, ବଙ୍ଗ ଅନ୍ତର୍ଗତ ପାଣ୍ଡୁଆର ଅଦିନା ମସ୍‌ଜିଦ, ଉକ୍ତ ପ୍ରଦେଶର ଛୋଟସୁନା ଓ ବଡ଼ାସୁନା ମସ୍‌ଜିଦ ( Smaller Golden Mosque and Greater Golden Mosque ) ଏବଂ କଦମରସୁଲ, ଗୁଜରାଟର ଜାମୀମସ୍‌ଜିଦ, ମାଳବ ଅନ୍ତର୍ଗତ ମାଣ୍ଡୁର ଅନ୍ୟତମ ଜାମୀ ମସ୍‌ଜିଦ, ହିନ୍ଦୋଳା ମହଲ ଓ

ଜହାଜ ମହଲ, ହିନ୍ଦୋଲଙ୍କ ସମାଧି, ତଥା ବଜ୍‌ବାହାଦୁର ଓ ରୁପମତୀଙ୍କ ପ୍ରାସାଦଦ୍ୱୟ ଏହି ଯୁଗର ଶିଳ୍ପକୃତିର ପରିଚୟ ଦିଏ । ଦକ୍ଷିଣ ଭାରତରେ ବାହମନୀ ସୁଲତାନମାନେ କଳା ଓ ଭାସ୍କର୍ଯ୍ୟର ପରମ ପୃଷ୍ଠପୋଷକ ଥିଲେ । କୁଲବର୍ଗାର ଜାମୀ ମସଜିଦ୍ ଓ ଦୌଲତାବାଦର ଚାନ୍ଦ ମିନାରରେ ପାରସିକ କଳାଶୈଳୀ ସ୍ପଷ୍ଟଭାବରେ ପ୍ରତିଫଳିତ ।

**ଉର୍ଦ୍ଦୁ ଭାଷାର ଉତ୍ପତ୍ତି** :—ହିନ୍ଦୁ ମୁସଲମାନ ଦୁଇ ସମ୍ପ୍ରଦାୟର ଘନିଷ୍ଠ ସମ୍ପର୍କ ଫଳରେ ଭାରତରେ ଏକ ଅଭିନବ ଭାଷାର ଆବିର୍ଭାବ ଘଟିଥିଲା । ଏହି ଭାଷାର ନାମ ଉର୍ଦ୍ଦୁ ଭାଷା । ଏକ ପକ୍ଷରେ ଫାର୍ସୀ, ଆରବୀ ଓ ତୁର୍କିଭାଷାର ଶବ୍ଦସମ୍ଭାର ଓ ଅନ୍ୟ ପକ୍ଷରେ ସଂସ୍କୃତ-ଜାତ କେତେକ ଭାରତୀୟ ଭାଷାର ଶବ୍ଦାବଳୀ ନେଇ ଏହି ନୂତନ ଭାଷା ଗଠିତ । ଏହାର ବ୍ୟାକରଣ ହିନ୍ଦୀ ଭାଷାର ବ୍ୟାକରଣ ସହିତ ସମାନ । ତୁର୍କିଭାଷାରେ "ଉର୍ଦ୍ଦୁ" ହେଉଛି ଅର୍ଥ ଶିବିର । ସୈନ୍ୟ ଶିବିରରେ ହିନ୍ଦୁ ମୁସଲମାନ ଉଭୟ ସମ୍ପ୍ରଦାୟର ଲୋକ ବାସ କରି ପରସ୍ପର ମଧ୍ୟରେ ଭାବ ବିନିମୟ କରୁଥିଲେ । ଏହା ଫଳରେ ଏହି ମିଶ୍ରିତ ଉର୍ଦ୍ଦୁ ଭାଷାର ସୃଷ୍ଟି ହୋଇଥିଲା । ପ୍ରଥମେ ସୈନ୍ୟ ଶିବିରରେ ବ୍ୟବହୃତ ହୋଇ ପରେ ଏହା ଉତ୍ତର ଭାରତର ଏକ ବିଶିଷ୍ଟ କଥିତ ଭାଷାରେ ପରିଣତ ହେଲା । କାଳକ୍ରମେ ଏହାର ସାହିତ୍ୟ ଗଢ଼ି ଉଠିଲା । ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ଅନେକ ଲେଖକ ଏହି ଭାଷାର ଉନ୍ନତି ସାଧନ କରି ଯାଇଛନ୍ତି । ସୁଲତାନୀ ଅମଳର କବି ଅମୀର ଖସ୍ରୁ ଫାର୍ସୀଭାଷାରେ ଯେପରି ଦକ୍ଷତା ସହିତ କବିତା ରଚନା କରି ଯାଇଅଛନ୍ତି, ଉର୍ଦ୍ଦୁ ଭାଷାରେ ମଧ୍ୟ ସେହିପରି ଦକ୍ଷତା ସହ ଅନେକ କବିତା ଲେଖି ଯାଇଛନ୍ତି । ଏହି ସୂତ୍ରରେ ସେ ହିନ୍ଦୁ ମୁସଲମାନ ଭାବଧାରାର ସମ୍ମିଳନ ଓ ସମନ୍ୱୟ ସାଧନରେ

କୃତିତ୍ୱ ଅର୍ଜନ କରି, "ଭାରତର ଶୁକପକ୍ଷୀ" ଆଖ୍ୟାଲାଭ କରି ପାଇଅଛନ୍ତି । ଦାକ୍ଷିଣାତ୍ୟର ବାହମନୀ ରାଜ୍ୟରେ ଉର୍ଦ୍ଦୁ ଭାଷା ରାଷ୍ଟ୍ରଭାଷା ରୂପେ ଗୃହୀତ ହୋଇଥିଲା ।

**ସୁଶାସନର ଚେଷ୍ଟା (ଫିରୋଜ ସାହ)**:—ତୁର୍କ ଆଫଗାନ ଅମଳରେ ସୁଲତାନ ଥିଲେ ଏକଛତ୍ର ଶାସକ । ଶାସନକ୍ଷେତ୍ରରେ ତାଙ୍କର କ୍ଷମତା ଥିଲା ଅପ୍ରତିହତ । ସାମରିକ ଶକ୍ତି ଉପରେ ତାହା ପ୍ରତିଷ୍ଠିତ ଥିଲା । ସେତେବେଳେ କୌଣସି ପ୍ରକାର ଲୋକସଭା ବା ବ୍ୟବସ୍ଥା ପରିଷଦ ନ ଥିଲା । ସୁଲତାନଙ୍କ ଆଦେଶ ହିଁ ଥିଲା ଆଇନ । ତେବେ, ଶାହନ୍ ଯେତେ ସ୍ୱେଚ୍ଛାଚାରୀ ହେଲେ ସୁଦ୍ଧା, ଏକାକୀ ଶାସନକାର୍ଯ୍ୟ ପରିଚାଳନା କରିବା ତାଙ୍କ ପକ୍ଷରେ ସମ୍ଭବପର ହୁଏ ନାହିଁ । ତେଣୁ ଦିଲ୍ଲୀର ସୁଲତାନଙ୍କୁ ନାନା ଶ୍ରେଣୀର କର୍ମଚାରୀ ନିଯୁକ୍ତ କରି ନାନା ବିଭାଗର କାର୍ଯ୍ୟ ଚଳାଇବାକୁ ପଡ଼ୁଥିଲା । ରାଜ୍ୟର କେତେଜଣ ଉଚ୍ଚସ୍ତ କର୍ମଚାରୀ ଓ ବିଶିଷ୍ଟ ବନ୍ଧୁଙ୍କୁ ନେଇ ସୁଲତାନ-ମାନେ ଏକ "ମଜଲିସ୍" ଗଠନ କରୁଥିଲେ । ତାହାର ନାମ ଥିଲା "ମଜଲିସ୍-ଇ-ଖଲୱାତ୍" । ଗୁରୁତର ସମସ୍ୟାର ସମାଧାନ ପାଇଁ ସୁଲତାନ ଉକ୍ତ ମଜଲିସ୍‌ର ପରାମର୍ଶ ଗ୍ରହଣ କରୁଥିଲେ, କିନ୍ତୁ ସବୁ ସମୟରେ ତାହାର ପରାମର୍ଶ ବା ଉପଦେଶ ଅନୁସାରେ କାର୍ଯ୍ୟ କରିବାକୁ ବାଧ୍ୟ ନ ଥିଲେ । ରାଜ୍ୟର ସମସ୍ତ ଖାଁ, ମାଲିକ୍ ଓ ଅମୀରଙ୍କୁ ନେଇ ସୁଲତାନ ନିଜର ଦରବାର ଗଠନ କରୁଥିଲେ । ତାର ନାମ ଥିଲା ବାର୍-ଇ-ଖାସ (Bar-i-Khas)ମାଲିମୋକଦ୍ଦମା ବିଚାର କରିବା ପାଇଁ ସୁଲତାନଙ୍କର ଏକ ସ୍ୱତନ୍ତ୍ର ଅଦାଲତ ଥିଲା । ସେଥିରେ ସେ ପ୍ରଧାନ ବିଚାରପତି ସ୍ୱରୂପ କାର୍ଯ୍ୟ କରୁଥିଲେ । ତାହାକୁ କୁହାଯାଉଥିଲା ବାର୍-ଇ-ଆମ (Bar-i-Am) । ସୁଲତାନଙ୍କର ସର୍ବୋଚ୍ଚ କର୍ମଚାରୀ ଥିଲେ ଉଜିର୍ (Wazir) । ତାଙ୍କ ଅଧୀନରେ

ଅନେକଗୁଡ଼ିଏ ଶାସନ ବିଭାଗ ଥିଲା ଏବଂ ଉକ୍ତ ବିଭାଗମାନଙ୍କରେ ସ୍ୱତନ୍ତ୍ର ବଡ଼ ଅନେକ କର୍ମଚାରୀ ରହି କାର୍ଯ୍ୟ କରୁଥିଲେ । ଦଣ୍ଡବିଧି ବଡ଼ କଠୋର ଥିଲା । ମୃତ୍ୟୁଦଣ୍ଡ ଦେବା ବା ଅପରାଧୀକୁ ବିକଳାଙ୍ଗ କରିଦେବା ସେ ସମୟରେ ସାଧାରଣ ଦଣ୍ଡ ଥିଲା । ରାଜ୍ୟର ଦୂରବର୍ତ୍ତୀ ପ୍ରଦେଶମାନ ନାଏବ ସୁଲତାନଙ୍କ ଦ୍ୱାରା ଶାସିତ ହେଉଥିଲା । ଜଣେ ଜଣେ କ୍ଷୁଦ୍ର ସୁଲତାନ ରୂପେ ସେମାନେ ନିଜ ନିଜ ପ୍ରଦେଶ ଶାସନ କରୁଥିଲେ । ସାଧାରଣତଃ ସୁଲତାନ ବା ନାଏବ ସୁଲତାନମାନଙ୍କର ଜନମଙ୍ଗଳ ପ୍ରତି ବିଶେଷ ଦୃଷ୍ଟି ନଥିଲା । ଜନସାଧାରଣଙ୍କ ସୁଖସମୃଦ୍ଧି ବୃଦ୍ଧି ସୁଲତାନୀ ଶାସନର ଲକ୍ଷ୍ୟ ନଥିଲା କହିଲେ ଚଳେ ।

**ଫିରୋଜ ସାହ:**—ତୁର୍କଆଫଗାନ ଅମଳରେ ସୁଲତାନ ଫିରୋଜସାହ କେତେକ ପରିମାଣରେ ସୁଶାସନ ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଥିଲେ । ତାଙ୍କର ରାଜତ୍ୱକାଳ ଜଳସେଚନ, ପୟଃପ୍ରଣାଳୀ ଖନନ, ମଦ୍ରାସା ସ୍ଥାପନ, ସରାଇଗୃହ ନିର୍ମାଣ, ଦାତବ୍ୟ ଚିକିତ୍ସାଳୟ ପ୍ରତିଷ୍ଠା, ଦରିଦ୍ର ଲୋକଙ୍କୁ ସାହାଯ୍ୟ ଦାନ, ତୀର୍ଥଯାତ୍ରାର ବ୍ୟବସ୍ଥା ପ୍ରଭୃତି ଜନହିତକର କାର୍ଯ୍ୟ ପାଇଁ ପ୍ରସିଦ୍ଧ । ଫିରୋଜ ୧୩୫୧ ଖ୍ରୀଷ୍ଟାବ୍ଦରୁ ୧୩୮୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୩୭ ବର୍ଷକାଳ ରାଜତ୍ୱ କରିଥିଲେ ।

**ଫିରୋଜଙ୍କ ଶାସନ ସଂସ୍କାର:**—ଅନ୍ୟାନ୍ୟ ତୁର୍କ ଆଫଗାନ ସୁଲତାନଙ୍କ ରାଜତ୍ୱ ତୁଳନାରେ ଫିରୋଜଙ୍କ ରାଜତ୍ୱରେ ଲୋକେ ଅପେକ୍ଷାକୃତ ସୁଖଶାନ୍ତିରେ ବାସ କରୁଥିଲେ । ଫିରୋଜଙ୍କ ପୂର୍ବରୁ ଅନେକ ଅନ୍ୟାୟପୂର୍ଣ୍ଣ କର ଓ ଶୁଳ୍କ ଆଦାୟ ହେଉଥିଲା । ଫିରୋଜ ତନ୍ମଧ୍ୟରୁ ଅନ୍ତତଃ ତେଇଶ ପ୍ରକାର କର ଓ ଶୁଳ୍କ ଉଠାଇ ଦେଇ କେବଳ କୋରାନ-ଅନୁମୋଦିତ ଚାରି ପ୍ରକାର କର ଆଦାୟ କରୁଥିଲେ । ତାଙ୍କ ସମୟରେ ବଣିକମାନେ କେତେକ ବାଣିଜ୍ୟ

ଶୁଲ୍କରୁ ଅବ୍ୟାହତି ପାଇବାରୁ, ଦେଶ ଭିତରେ ଅବାଧ ବାଣିଜ୍ୟ ଚାଲିଥିଲା । ରାଜକର୍ମଚାରୀମାନେ ଅନ୍ୟାୟପୂର୍ବକ ପ୍ରଜାମାନଙ୍କଠାରୁ ଅର୍ଥ ଆଦାୟ କଲେ, ସୁଲତାନ ସେମାନଙ୍କୁ ଉପଯୁକ୍ତ ଦଣ୍ଡରେ ଦଣ୍ଡିତ କରୁଥିଲେ । ଏହା ଫଳରେ କୃଷୀମାନଙ୍କର ଅବସ୍ଥାର ଉନ୍ନତି ଘଟିଥିଲା ଓ ସେମାନେ ସନ୍ତୋଷଲାଭ କରିଥିଲେ । ଫିରୋଜଙ୍କ ରାଜତ୍ୱରେ ରାଜସରକାରର ଅବସ୍ଥା ମଧ୍ୟ ସ୍ୱଚ୍ଛଳ ଥିଲା । ଜିନିଷପତ୍ରର ମୂଲ୍ୟ କମ୍ ଥିବାରୁ ଲୋକେ ସୁଖ ସ୍ୱାଚ୍ଛନ୍ଦ୍ୟରେ କାଳଯାପନ କରୁଥିଲେ । ଫିରୋଜଙ୍କ ଆଦେଶରେ ଚାରୋଟି କେନାଲ୍ ଖୋଳାଯାଇ ଜଳସେଚନର ସୁବିଧା କରାଯାଇଥିଲା । ସୁଲତାନ ସେଥିପାଇଁ ଲୋକଙ୍କ ଉପରେ ଜଳକର ବସାଇଥିଲେ ସୁଦ୍ଧା ଲୋକେ ତାହା ଆନନ୍ଦରେ ପ୍ରଦାନ କରୁଥିଲେ । କେନାଲଗୁଡ଼ିକର ତତ୍ତ୍ୱାବଧାନ ପାଇଁ ସୁଲତାନ ସୁଦକ୍ଷ ଇଞ୍ଜିନିଅରମାନଙ୍କୁ ନିଯୁକ୍ତ କରିଥିଲେ । ଫିରୋଜଙ୍କ ସମୟରେ ଅନେକ ପତିତ ଅନାବାଦୀ ଜମି ଚାଷ ହେବାର ବ୍ୟବସ୍ଥା ହୋଇଥିଲା । ସେଗୁଡ଼ିକରୁ ଯେଉଁ ଭୂରାଜସ୍ୱ ଆଦାୟ ହେଉଥିଲା ତାହା ଶିକ୍ଷା ଓ ଧର୍ମ କାର୍ଯ୍ୟରେ ବ୍ୟୟିତ ହେଉଥିଲା ।

ଫିରୋଜ ହର୍ମ୍ୟାଦି ନିର୍ମାଣ କରିବାକୁ ବଡ଼ ଭଲ ପାଉଥିଲେ । ସେ କହୁଥିଲେ, "ଭଗବାନ ଦୟାକରି ମୋତେ ଅନେକ ପ୍ରବୃତ୍ତି ଦାନ କରିଛନ୍ତି, ତନ୍ମଧ୍ୟରୁ ଗୋଟିଏ ହେଉଛି ମସ୍‌ଜିଦ୍, ଶିକ୍ଷାୟତନ ପ୍ରଭୃତି ନିର୍ମାଣ କରିବାର ପ୍ରବୃତ୍ତି । ଲୋକେ ଉକ୍ତ ଅନୁଷ୍ଠାନଗୁଡ଼ିକଦ୍ୱାରା ଉପକୃତ ହୋଇ ସେଗୁଡ଼ିକର ନିର୍ମାତା ପ୍ରତି କୃପାମୟଙ୍କଠାରେ ପ୍ରାର୍ଥନା କଲେ, ମୁଁ ତାହାଁରୁ ଯଥେଷ୍ଟ ସାହାଯ୍ୟ ଓ ସହାୟତା ଲାଭ କରିପାରିବ ।" ଫିରୋଜ ଅନେକଗୁଡ଼ିଏ ନୂତନ ନଗର ପ୍ରତିଷ୍ଠା କରିଥିଲେ, ଯଥା:—ଜୌନପୁର, ଫତେବାଦ୍, ହିସ୍‌ସାର,

ଫିରୋଜନଗର ଓ ଫିରୋଜାବାଦ୍ । ନାନା ସ୍ଥାନରେ ସେ ମସ୍‌ଜିଦ୍, ରାଜଭବନ, ପାନ୍ଥଶାଳା, ଚିକିତ୍ସାଳୟ, ସ୍ନାନାଗାର, ସମାଧିମନ୍ଦିର, ସେତୁ, ଜଳଭଣ୍ଡାର, ସ୍ମୃତିସ୍ତମ୍ଭ ପ୍ରଭୃତି ନିର୍ମାଣ କରିଥିଲେ । ସୁଲତାନଙ୍କର ଅନ୍ୟତମ ପ୍ରିୟ କାର୍ଯ୍ୟ ଥିଲା ଉଦ୍ୟାନ ରଚନା । ଦିଲ୍ଲୀର ଆଖପାଖ ଅଞ୍ଚଳରେ ସେ ବାରଶହ ଉଦ୍ୟାନ ପ୍ରତିଷ୍ଠା କରିଥିଲେ ଓ ପୂର୍ବବର୍ତ୍ତୀ ସମ୍ରାଟ୍ ଆଲାଉଦ୍ଦିନଙ୍କ ପ୍ରତିଷ୍ଠିତ ତିରିଶଟି ପୁରାତନ ଉଦ୍ୟାନର ସଂସ୍କାର କରିଥିଲେ ।

ଫିରୋଜଙ୍କ ପୂର୍ବରୁ ଅନେକ ନୃଶଂସ ଦଣ୍ଡବିଧି ପ୍ରଚଳିତ ଥିଲା । ଅପରାଧୀର ହସ୍ତ, ପଦ, ନାସା, କର୍ଣ୍ଣ ଛେଦନ କରିବା; ଚକ୍ଷୁ ଉତ୍ପାଟନ କରି ତାକୁ ଅନ୍ଧ କରିଦେବା, ତାର ତଣ୍ଟି ଭିତରେ ଉଷ୍ଣ ତରଳ ସୀସା ଢାଳିବା, ହସ୍ତ ପଦର ଅସ୍ଥି ଚୂର୍ଣ୍ଣ କରିଦେବା, ଦେହ ଅଗ୍ନିରେ ଦଗ୍‌ଧ କରିବା ବା କରତ ସାହାଯ୍ୟରେ କର୍ତ୍ତନ କରିବା, ଗୁହ୍ୟରେ ଲୁହାକଣ୍ଟା ପିଟିବା, ଏହିପରି ନାନା ପ୍ରକାର ନିଷ୍ଠୁର ନିର୍ଯାତନାର ବ୍ୟବସ୍ଥା ଥିଲା । ଫିରୋଜ ଏ ସମସ୍ତ ନିର୍ଦ୍ଦୟ ଦଣ୍ଡ ଉଠାଇ ଦେଇଥିଲେ । ଦେଶରୁ ବେକାର ସମସ୍ୟା ଦୂର କରିବାପାଇଁ ସେ ଏକ ସରକାରୀ ନିଯୁକ୍ତି ସଂସ୍ଥା ଗଢ଼ିଥିଲେ ଓ ଲୋକର ଗୁଣ ଏବଂ କାର୍ଯ୍ୟଦକ୍ଷତା ପ୍ରତି ଦୃଷ୍ଟି ଦେଇ ତାଙ୍କୁ ବୃତ୍ତି ଯୋଗାଇବାର ବ୍ୟବସ୍ଥା କରିଥିଲେ । "ଦେୱାନୀ ଖଇରତ୍" ନାମକ ଏକ ସ୍ୱତନ୍ତ୍ର ବିଭାଗ ଖୋଲି ସେ ଦାନଖଇରାତର ମଧ୍ୟ ବ୍ୟବସ୍ଥା କରିଥିଲେ । ଅନେକ ଦରିଦ୍ର ମୁସଲମାନ ସେଥିରୁ ସାହାଯ୍ୟ ଲଭିକରି କନ୍ୟା ବିବାହ ଦାୟରୁ ମୁକ୍ତିଲାଭ କରୁଥିଲେ । ସେହିପରି ଅନେକ ବିଧବା ଓ ପିତୃମାତୃହୀନ ସନ୍ତାନ ମଧ୍ୟ ସେଥିରୁ ଆର୍ଥିକ ସାହାଯ୍ୟ ପାଇ ଉପକୃତ ହେଉଥିଲେ । ଫିରୋଜ "ଦାର-ଉଲ୍-ଶଫା" (Dar-ul-Shafa) ନାମକ ଏକ ଦାତବ୍ୟ ଚିକିତ୍ସାଳୟ ସ୍ଥାପନ କରିଥିଲେ ।

ଜକ୍ର ଚକତ୍ସାଳୟରେ ଉପଯୁକ୍ତ ଚକତ୍ସକମାନେ ନିଯୁକ୍ତ ହୋଇ ରୋଗୀମାନଙ୍କୁ ଔଷଧ ଓ ପଥ୍ୟ ବତରଣ କରୁଥିଲେ । ରାଜକୋଷରୁ ହେଥିପାଇଁ ଯଥେଷ୍ଟ ଅର୍ଥବ୍ୟୟ କରହେଉଥିଲା । ଏହି ସବୁ ଜନ-ହିତକର କାର୍ଯ୍ୟ ହୋଇ୍ଁ ଫିରୋଜଙ୍କ ଶାସନ ଲୋକପ୍ରିୟ ହୋଇ ପାରଥିଲା; କନ୍ତୁ ସୁଲତାନଙ୍କର ଜନହିତକର କାର୍ଯ୍ୟ କେବଳ ମୁସଲମାନ ସମାଜରେ ଆବଦ୍ଧ ଥିଲା ।

**ମୋଗଲ ଯୁଗ:**—ତୁର୍କଅଫଗାନ ଯୁଗ ପରେ ମୋଗଲ ଯୁଗର ଆରମ୍ଭ ହେଲା । ଏହି ଯୁଗର ପ୍ରଥମ ତିରିଶ ବର୍ଷ (ଅର୍ଥାତ୍, ୧୫୨୬ ଖ୍ରୀଷ୍ଟାବ୍ଦର ପ୍ରଥମ ପାନିପଥ ଯୁଦ୍ଧଠାରୁ ଆରମ୍ଭ କରି ୧୫୫୬ ଖ୍ରୀଷ୍ଟାବ୍ଦର ଦ୍ୱିତୀୟ ପାନିପଥ ଯୁଦ୍ଧ ପର୍ଯ୍ୟନ୍ତ) ଭାରତ ଇତିହାସରେ "ଆଫଗାନ-ମୋଗଲ-ସଙ୍ଘର୍ଷ ଯୁଗ" ନାମରେ ଅଭିହିତ । ମୋଗଲ ଜାତିର ବାବର ହୁମାୟୁନ ଓ ଆକବରଙ୍କ ସହିତ ଲୋଦୀ ଓ ଶୂରବଂଶୀୟ ଆଫଗାନ-ମାନଙ୍କର ପ୍ରତିଦ୍ୱନ୍ଦ୍ୱିତା ଏହି ଯୁଗର ବୈଶିଷ୍ଟ୍ୟ । ଖ୍ରୀ: ଅ: ୧୫୫୬ ଠାରୁ ଖାଣ୍ଟି ମୋଗଲ ଯୁଗର ସୂତ୍ରପାତ ହେଲା । ଏହି ଯୁଗର ଶ୍ରେଷ୍ଠ ସମ୍ରାଟ୍ ଥିଲେ ଆକବର । ଆକବରଙ୍କ ଠାରୁ ଆଉରଙ୍ଗଜେବଙ୍କ ପର୍ଯ୍ୟନ୍ତ ଏହି ଯୁଗର ଇତିହାସ ବିଶେଷ ଉଲ୍ଲେଖଯୋଗ୍ୟ । ଆଉରଙ୍ଗଜେବଙ୍କ ପରେ ମୋଗଲ ସାମ୍ରାଜ୍ୟର ପତନ ଆରମ୍ଭ ହେଲା ଓ ଅବଶେଷରେ ତାହା ଏକାବେଳକେ ଲୋପ ପାଇଲା ।

**ମୋଗଲ ଯୁଗର ଶିଳ୍ପ,ଭାସ୍କର୍ଯ୍ୟ** – ତୁର୍କଆଫଗାନ ଯୁଗରେ ଶିଳ୍ପକଳାର ଯେଉଁ ବିକାଶ ଘଟିଥିଲା, ମୋଗଲ ଯୁଗରେ ତାର ଚରମ ପରିଣତି ଲକ୍ଷିତ ହୁଏ । ହିନ୍ଦୁ-ମୁସଲମାନ ଶିଳ୍ପକଳାର ସମନ୍ୱୟ ତୁର୍କଅଫଗାନ ଯୁଗରେ ଏହି ଯୁଗର ମଧ୍ୟ ଏକ ଉଲ୍ଲେଖଯୋଗ୍ୟ ଘଟଣା । ପ୍ରଥମ ମୋଗଲ ନରପତି ବାବର ଆଗ୍ରା, ସିକ୍ରି, ଡୋଲପୁର, ଗୋଆଲିଅର, କଉଲ୍ ପ୍ରଭୃତି ସ୍ଥାନରେ

ଅନେକ କୋଠାବାଡ଼ି ନିର୍ମାଣ କରିଥିଲେ । ତନ୍ମଧ୍ୟରୁ ଅଧିକାଂଶ ଧ୍ୱଂସପ୍ରାପ୍ତ ହୋଇଅଛି । ସେହି ସମୟର ଶିଳ୍ପ ନିଦର୍ଶନ ମଧ୍ୟରୁ କେବଳ ତିନୋଟି ମାତ୍ର ମସଜିଦ୍ ଆଜି ବିଦ୍ୟମାନ । ଯଥା:—(୧) ପାନିପଥ ଅନ୍ତର୍ଗତ କାବୁଲିବାଗର ମସଜିଦ୍, (୨) ସମ୍ଭଲ ଅନ୍ତର୍ଗତ ଜାମି ମସଜିଦ (ଭଗ୍ନାବଶେଷ) ଓ (୩) ଆଗ୍ରାର ପୁରାତନ ଲୋଦୀଦୁର୍ଗ ମଧ୍ୟରେ ଥିବା ମସଜିଦ୍ । ଭାଗ୍ୟହୀନ ମୋଗଲ ନୃପତି ହୁମାୟୁନଙ୍କ ଅମଳରେ ନିର୍ମିତ ମସଜିଦ୍‌ମାନଙ୍କ ମଧ୍ୟରୁ ବର୍ତ୍ତମାନ ଦୁଇଟି ମାତ୍ର ଅର୍ଦ୍ଧଭଗ୍ନ ଅବସ୍ଥାରେ ଦେଖିବାକୁ ମିଳେ । ଗୋଟିଏ ଆଗ୍ରାରେ ଓ ଅନ୍ୟଟି ପଞ୍ଜାବ ଅନ୍ତର୍ଗତ ଫତେବାଦଠାରେ । ଶେଷୋକ୍ତ ମସଜିଦ୍‌ରେ ପାରସିକ ଢଙ୍ଗର କାରୁକାର୍ଯ୍ୟ ପରିଲକ୍ଷିତ ହୁଏ । ଶୂରବଂଶୀୟ ଶେରସାହଙ୍କ ଅମଳରେ ତିଆରି ହୋଇଥିବା ଦିଲ୍ଲୀର ପୁରୁଣାକିଲ୍ଲା ଏବଂ ସାସାରମର ଏକ ହ୍ରଦ ମଧ୍ୟରେ ନିର୍ମିତ ତାଙ୍କର ସମାଧି ହିନ୍ଦୁ-ମୁସଲିମ୍ କଳାକୌଶଳର ଅପୂର୍ବ ସମନ୍ୱୟ ।

ସମ୍ରାଟ୍ ଆକବରଙ୍କ ସମୟରେ ସ୍ଥାପତ୍ୟର ସବିଶେଷ ଉନ୍ନତି ସାଧିତ ହୋଇଥିଲା । ପାରସ୍ୟ ରମଣୀର ସନ୍ତାନ ସ୍ୱରୂପ ଆକବର ପାରସିକ କଳା ପ୍ରତି ଯେପରି ଅନୁରାଗ ପ୍ରଦର୍ଶନ କରିଥିଲେ, ହିନ୍ଦୁ ଶିଳ୍ପ ପଦ୍ଧତି ପ୍ରତି ମଧ୍ୟ ସେହିପରି ଅନୁରାଗ ପ୍ରକାଶ କରିଥିଲେ । ଫଳତଃ ସିନ୍ଧିର ଶିଳ୍ପସମୃଦ୍ଧିରେ ତାହା ସ୍ପଷ୍ଟରୂପେ ପ୍ରତିଫଳିତ । ତା ଛଡ଼ା, ଆଗ୍ରା ଦୁର୍ଗରେ ଜାହାଙ୍ଗୀର ମହଲରେ, ଲାହୋର ଦୁର୍ଗରେ ଓ ପୁରୁଣା ଦିଲ୍ଲୀର ହୁମାୟୁନ ସମାଧି ଭବନରେ ହିନ୍ଦୁ ଓ ଜୈନ ଶିଳ୍ପର ପ୍ରଭାବ ପରିଲକ୍ଷିତ ହୁଏ । ଫତେପୁର ସିକ୍ରିରେ ନିର୍ମିତ ଯୋଧବାଈଙ୍କ ପ୍ରାସାଦ, ଦେୱାନୀ ଆମ, ଦେୱାନୀ ଖାସ୍, ଜାମି ମସଜିଦ, ବୁଲନ୍ଦ-ଦରୱାଜା ଓ ପାଞ୍ଚ ମହଲ ଆକବରଙ୍କ ସମୟର ପ୍ରସିଦ୍ଧ କୀର୍ତ୍ତି । ଐତିହାସିକ ଫର୍ଗୁସନ ମର୍ମର ପ୍ରସ୍ତର ନିର୍ମିତ ଜାମି

ମସ୍‌ଜିଦ୍‌କୁ "ପ୍ରସ୍ତରମୟ ଉପନ୍ୟାସ" ଆଖ୍ୟା ଦେଇଅଛନ୍ତି । ସିକନ୍ଦରାରେ ଥିବା ଆକବରଙ୍କ ସମାଧିଭବନ ସମ୍ରାଟଙ୍କ ଜୀବିତାବସ୍ଥାରେ ହିଁ ପରିକଳ୍ପିତ ହୋଇଥିଲା । ତାହା ଭାରତୀୟ ବୌଦ୍ଧ ବିହାରର ଢଙ୍ଗରେ ଗଠିତ । ଏହାଛଡ଼ା, ଆକବରଙ୍କ ନିର୍ମିତ ଆଲ୍ଲାହାବାଦ ଦୁର୍ଗରେ ହିନ୍ଦୁ ଶୈଳୀର ବ୍ୟବହାର ଅତ୍ୟନ୍ତ ପରିସ୍ଫୁଟ ।



ଆକବରଙ୍କ କବର

ସମ୍ରାଟ ଜାହାଙ୍ଗୀରଙ୍କ ସମୟରେ ନୁରଜାହାନଙ୍କ ନିର୍ମିତ ଆଗ୍ରାର ଇତ୍‌ମାଦୌଲା ସମାଧିଭବନ ଏକ ମନୋରମ ସୃଷ୍ଟି । ଇତ୍‌ମାଦୌଲା ଥିଲେ ନୁରଜାହାନଙ୍କ ପିତା । ଏହି ସମାଧିଭବନ ଛଡ଼ା ଜାହାଙ୍ଗୀରଙ୍କ ରାଜତ୍ୱ କାଳରେ ଆକବରଙ୍କ ସମାଧିଭବନ

ମଧ୍ୟ ନିର୍ମିତ ହୋଇଥିଲା । ଉକ୍ତ ସମାଧିଭବନର କଥା ପୂର୍ବରୁ କୁହା-ଯାଇଅଛି ।

ସମସ୍ତ ମୋଗଲସମ୍ରାଟଙ୍କ ମଧ୍ୟରେ ସମ୍ରାଟ୍ ସାହାଜାହାନଙ୍କ କୀର୍ତ୍ତି ଏ ଦିଗରେ ଉଲ୍ଲେଖଯୋଗ୍ୟ । ଆଗ୍ରା, ଦିଲ୍ଲୀ, ଲାହୋର, କାବୁଲ, କଶ୍ମୀର, କାନ୍ଦାହାର, ଆଜମୀର, ଅହମ୍ମଦାବାଦ ପ୍ରଭୃତି ସ୍ଥାନରେ ତାହା ଦେଦୀପ୍ୟମାନ । ଆକବରଙ୍କ କଳ୍ପନାର ମୌଳିକତା ସେଗୁଡ଼ିକରେ ଲକ୍ଷିତ ନ ହେଲେ ସୁଦ୍ଧା, ସୁକୁମାର କାରୁକାର୍ଯ୍ୟ ଦୃଷ୍ଟିରୁ ତାହା ଅପୂର୍ବ । ଦିଲ୍ଲୀର ଦେବାନୀ ଆମ ଓ ଦେବାନୀ-



ଦେବାନୀ ଆମ

ଖାସ ନାନା କାରୁକାର୍ଯ୍ୟରେ ମଣ୍ଡିତ ଥିଲା । ଦେବାନୀଖାସର ନିମ୍ନସ୍ଥିତ ଭୈଦ୍ୟରେ ନିର୍ମିତ ହୋଇଥିଲା ଓ ଜାନୁଚ୍ଚବୃଢ଼କ ମର୍ମର ପ୍ରସ୍ତର, ସ୍ୱର୍ଣ୍ଣ ଓ ମଣିମାଣିକ୍ୟରେ ଖଚିତ ଥିଲା । ତାହାର ଗାତ୍ରରେ ନିମ୍ନ ମର୍ମରେ

ଦୃଇଟି ପଙ୍‌କ୍ତି ଖୋଦନ:—"ଭୂସ୍ୱର୍ଗ ଯଦି କେଉଁଠି ଥାଏ, ତାହା ଏଠି ।" ଆଗ୍ରାର ମୋତି ମସ୍‌ଜିଦ୍‌ ଓ ଜାମୀମସଜିଦ୍‌ ସାହାଜାହାନଙ୍କ ଅନ୍ୟତମ କୀର୍ତ୍ତି । ମାତ୍ର ସମସ୍ତ କଳାସୃଷ୍ଟି ମଧ୍ୟରେ ସମ୍ରାଟଙ୍କ ପତ୍ନୀ



ଦେୱାନୀ ଖାସ

ମମତାଜମହଲଙ୍କ ସମାଧିସୌଧ ତାଜମହଲ ଅତି ସୁନ୍ଦର । ତାହା ପୃଥିବୀର ଅନ୍ୟତମ ଆଶ୍ଚର୍ଯ୍ୟରୂପେ ପରିଗଣିତ । ଏ ସମସ୍ତ ବ୍ୟତୀତ ସାହାଜାହାନ ନିଜ ପାଇଁ ଏକ ମଣିମାଣିକ୍ୟଖଚିତ ଅଭିନବ ମୟୂର ସିଂହାସନ ନିର୍ମାଣ କରିଥିଲେ । ସାହାଜାହାନଙ୍କ ଅନ୍ତେ ମୋଗଲ ଯୁଗର ସ୍ଥାପତ୍ୟ-ଗୌରବ ଉତ୍ତରୋତ୍ତର ଅବନତିର ପଥରେ ଗଲା ।

ମୋଗଲ ଯୁଗରେ ଚିତ୍ରଶିଳ୍ପ ବିଶେଷ ଉତ୍କର୍ଷ ଲାଭ କରିଥିଲା । ଏହା ମଧ୍ୟ ହିନ୍ଦୁ ଓ ମୁସଲମାନଙ୍କର ମିଳିତ ଅବଦାନ ।

ଆକବରଙ୍କ ସମୟରେ ସତର ଜଣ ବିଖ୍ୟାତ ଚିତ୍ର ଶିଳ୍ପୀଙ୍କ ମଧ୍ୟରେ ତେର ଜଣ ଥିଲେ ହିନ୍ଦୁ । ମୋଗଲ ଯୁଗର ପ୍ରସିଦ୍ଧ ଚିତ୍ରକରଙ୍କ



ତାଜମହଲ

ମଧ୍ୟରେ ଅବ୍ଦୁସ୍ ସମଦ୍, ମୀର୍ ସୈୟଦ ଆଲି, ଅବ୍ଦୁଲ ହାସାନ, କୃଷ୍ଣଦାସ, କେଶବ ଓ ମାଧବଙ୍କ ନାମ ବିଶେଷ ପ୍ରସିଦ୍ଧ ।

ମୋଗଲ ଯୁଗରେ ସଙ୍ଗୀତକଳାର ମଧ୍ୟ ଖୁବ୍ ଆଦର ଥିଲା । ସମ୍ରାଟ୍ ଆକବରଙ୍କ ପୃଷ୍ଠପୋଷକତାରେ ଏହା ପରିପୁଷ୍ଟ ହୋଇଥିଲା । ତାନ୍‌ସେନ ପ୍ରମୁଖ ଛତିଶ ଜଣ ସଙ୍ଗୀତଜ୍ଞ ତାଙ୍କର ରାଜସଭା ମଣ୍ଡନ କରିଥିଲେ । ସ୍ୱୟଂ ଆକବର ମଧ୍ୟ ଗୁଣସମ୍ପନ୍ନ ସଙ୍ଗୀତଜ୍ଞ ବ୍ୟକ୍ତି ଥିଲେ । ସମ୍ରାଟ୍ ଆଉରଙ୍ଗଜେବଙ୍କ ସମୟରେ ସଙ୍ଗୀତ ଚର୍ଚ୍ଚା ନିଷିଦ୍ଧ ହେବାରୁ ଅବନତିପ୍ରାପ୍ତ ହୋଇଥିଲା ।

**ମୋଗଲ ଯୁଗରେ ଶିକ୍ଷା:**—ମୋଗଲଯୁଗରେ ସୁକଳ୍ପିତ ଶିକ୍ଷା ପ୍ରଣାଳୀ ନ ଥିଲେ ସୁଦ୍ଧା, ମୋଗଲ ସମ୍ରାଟମାନେ ଶିକ୍ଷାର ପୋଷକତା କରୁଥିଲେ । ପ୍ରତ୍ୟେକ ମସଜିଦ୍ ସହିତ ଗୋଟିଏ ଗୋଟିଏ ମକ୍ତାବ୍ ସଂଶ୍ଳିଷ୍ଟ ଥିଲା । ବାବରଙ୍କ ସମୟରେ ସ୍କୁଲ କଲେଜ ନିର୍ମାଣ କରିବା ଶୁହରତ୍-ଇ-ଆମ (Shuhrat-i-Am) ବା ପୂର୍ତ୍ତବିଭାଗର ଏକ ଦାୟିତ୍ୱ ଥିଲା । ହୁମାୟୁନ୍ ଦିଲ୍ଲୀରେ ଏକ ମଦ୍ରାସା ସ୍ଥାପନ କରିଥିଲେ । ଆକବର ମଦ୍ରାସାମାନଙ୍କରେ ମୁସଲମାନ ପିଲମାନଙ୍କ ସହିତ ହିନ୍ଦୁମାନଙ୍କର ଶିକ୍ଷାର ସୁବ୍ୟବସ୍ଥା କରିଥିଲେ ଓ ଉଚ୍ଚଶିକ୍ଷା ପାଇଁ ଫତେପୁର ସିକ୍ରି, ଆଗ୍ରା ଓ ଅନ୍ୟାନ୍ୟ କେତେକ ସ୍ଥାନରେ କଲେଜ ନିର୍ମାଣ କରିଥିଲେ । ଜାହାଙ୍ଗୀରଙ୍କ ସମୟରେ ଏକ ଆଦେଶ ଜାରି ହୋଇଥିଲା ଯେ, କୌଣସି ଧନୀ ଲୋକ ବା ଧର୍ମ ପରିବ୍ରାଜକ ଉତ୍ତରାଧିକାରୀଶୂନ୍ୟ ହୋଇ ଦେହତ୍ୟାଗ କଲେ, ତାର ସମ୍ପତ୍ତି ରାଜ୍ୟର ଖାସ୍ ଦଖଲକୁ ନିଆଯାଇ ତାହା ମଦ୍ରାସା ଓ ମଠବାଡ଼ି ନିର୍ମାଣରେ ବ୍ୟୟିତ ହେବ । ଜାହାଙ୍ଗୀର ଅନେକଗୁଡ଼ିଏ ପୁରାତନ ମଦ୍ରାସାର ଜୀର୍ଣ୍ଣ ସଂସ୍କାର କରିଥିଲେ । ସାହାଜାହାନ ଦିଲ୍ଲୀ ନଗରୀରେ ଏକ କଲେଜ ପ୍ରତିଷ୍ଠା କରିଥିଲେ ଏବଂ ଦାର-ଉଲ୍-ବଗା (Dar-ul-Baga) ନାମକ ଏକ ପୁରାତନ କଲେଜକୁ ନୂତନ କରି ଗଢ଼ି ଦେଇଥିଲେ । ଆଉରଙ୍ଗଜେବ କେବଳ ମୁସଲମାନମାନଙ୍କର ଶିକ୍ଷାକୁ ଉତ୍ସାହିତ କରୁଥିଲେ ଏବଂ ସେମାନଙ୍କ ପାଇଁ ବହୁ ସ୍କୁଲ କଲେଜ ପ୍ରତିଷ୍ଠା କରିଥିଲେ ।

**ସ୍ତ୍ରୀ ଶିକ୍ଷା:**—ମୋଗଲ ଯୁଗରେ ରାଷ୍ଟ୍ର ତରଫରୁ ସ୍ତ୍ରୀ ଶିକ୍ଷାର ବ୍ୟବସ୍ଥା ନ ଥିଲା । ମୋଗଲ ରାଜପରିବାରରେ ଓ ଧନୀ ଲୋକଙ୍କ ଗୃହରେ କନ୍ୟା ସନ୍ତାନମାନଙ୍କର ଘରେଇ ଶିକ୍ଷାର ବ୍ୟବସ୍ଥା ଥିଲା । ହିନ୍ଦୁ ମଧ୍ୟବିତ୍ତ ଶ୍ରେଣୀର ଝିଅମାନେ ବିଦ୍ୟାଳୟରେ ପ୍ରାଥମିକ ଶିକ୍ଷା

ଲାଭ କରୁଥିଲେ । ମୋଗଲ ରାଜପରିବାରର ଅନେକ ମହିଳା ଉଚ୍ଚଶିକ୍ଷିତା ଥିଲେ ଓ ସେମାନଙ୍କ ମଧ୍ୟରୁ କେତେକ ଗ୍ରନ୍ଥ ରଚନା କରି କୃତିତ୍ୱ ଅର୍ଜନ କରିଯାଇଅଛନ୍ତି । ସେମାନଙ୍କ ମଧ୍ୟରେ ବାବରଙ୍କ କନ୍ୟା ଗୁଲବଦନ୍ ବେଗମ୍, ହୁମାୟୁନଙ୍କ ଭ୍ରାତୃଷ୍ପୁତ୍ରୀ ସାଲିମା ସୁଲତାନା, ଜାହାଙ୍ଗୀରଙ୍କ ମହିଷୀ ନୂରଜାହାନ, ସାହାଜାହାନଙ୍କ ପତ୍ନୀ ମମତାଜମହଲ, ତାଙ୍କ କନ୍ୟା ଜାହାନାରା ବେଗମ୍ ଓ ଆଉରଙ୍ଗଜେବଙ୍କ କନ୍ୟା ଜେବୁନ୍ନିସା ପ୍ରଧାନ ।

ମୋଗଲ ସମ୍ରାଟମାନଙ୍କ ମଧ୍ୟରୁ ଅନେକେ ସାହିତ୍ୟର ପୃଷ୍ଠ-ପୋଷକ ଥିଲେ, ବିଶେଷତଃ ଆକବର । ତେଣୁ ମୋଗଲ ଯୁଗରେ ଅନେକ କାବ୍ୟ, କବିତା, ଇତିହାସ, ଜୀବନ ଚରିତ, ଧର୍ମ ପୁସ୍ତକ ଓ ଅନୁବାଦ ଗ୍ରନ୍ଥ ରଚିତ ହୋଇଥିଲା । ପାରସିକ ସାହିତ୍ୟର ଅଭୂତପୂର୍ବ ଉନ୍ନତି ସଙ୍ଗେ ସଙ୍ଗେ କେତେକ ପ୍ରାଦେଶିକ ସାହିତ୍ୟର ମଧ୍ୟ ଉନ୍ନତି ସାଧିତ ହୋଇଥିଲା । ତନ୍ମଧ୍ୟରୁ ହିନ୍ଦୁସ୍ଥାନୀ ସାହିତ୍ୟର ଉନ୍ନତି ବିଶେଷ ଉଲ୍ଲେଖଯୋଗ୍ୟ । ଖ୍ରୀଷ୍ଟୀୟ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀକୁ ହିନ୍ଦୁସ୍ଥାନୀ ସାହିତ୍ୟର ଅଗଷ୍ଟାନ ଯୁଗ (The Augustan Age of Hindusthani Literature) ବୋଲି କୁହାଯାଏ । କେବଳ ଆଉରଙ୍ଗଜେବଙ୍କ ରାଜତ୍ୱ କାଳରେ ରାଜପୃଷ୍ଠପୋଷକତା ଅଭାବରୁ ହିନ୍ଦି ସାହିତ୍ୟର ଅଗ୍ରଗତି କେତେକ ପରିମାଣରେ ବାଧା ପାଇଥିଲା ।

**ମୋଗଲ ଯୁଗର ଶାସନ**:—ମୋଗଲ ଶାସନ ପ୍ରଣାଳୀର ପ୍ରକୃତ ପ୍ରତିଷ୍ଠାତା ଥିଲେ ଆକବର । ଶେରସାହଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ରାଜ୍ୟରେ ବିଧିବଦ୍ଧ ଶାସନ ପ୍ରଣାଳୀ ପ୍ରତିଷ୍ଠା କରିଥିଲେ । ଉକ୍ତ ଶାସନପ୍ରଣାଳୀ ପାରସିକ, ଆରବୀୟ ଓ ଭାରତୀୟ ଉପାଦାନ ନେଇ ଗଠିତ ହୋଇଥିଲା । ତୁର୍କ-ଆଫଗାନ ଶାସନ

ପରି ଏହି ଶାସନ ପଦ୍ଧତି ସାମରିକ ଶକ୍ତି ଉପରେ ପ୍ରତିଷ୍ଠିତ ଥିଲା । ଏଥିରେ ସମ୍ରାଟ୍ ଥିଲେ ସର୍ବେସର୍ବା । ତାଙ୍କର ଅପରିସୀମ କ୍ଷମତା ଥିଲା । ସାମରିକ ବିଭାଗ, ବୈଧାନିକ ବିଭାଗ, ଧର୍ମକ୍ଷେତ୍ର ପ୍ରଭୃତି ସବୁଥିରେ ସେ ଥିଲେ ସର୍ବୋଚ୍ଚ କ୍ଷମତାର ଅଧିକାରୀ । ବର୍ତ୍ତମାନ ଯୁଗର ମନ୍ତ୍ରୀମଣ୍ଡଳ ଶାସନ ସେତେବେଳେ ଅଜ୍ଞାତ ଥିଲା । ଅବଶ୍ୟ ରାଜ୍ୟ ଶାସନ ଚଳାଇବା ପାଇଁ ସମ୍ରାଟ୍ ମନ୍ତ୍ରଣାଦାତାମାନଙ୍କୁ ନିଯୁକ୍ତ କରୁଥିଲେ, କିନ୍ତୁ ସେମାନଙ୍କର ମନ୍ତ୍ରଣା ଅନୁସାରେ କାର୍ଯ୍ୟ କରିବା ସମ୍ରାଟ୍ଙ୍କର ଇଚ୍ଛାଧୀନ ଥିଲା । ତଥାପି ବିଶିଷ୍ଟ ମୋଗଲ ସମ୍ରାଟ୍ମାନେ ପ୍ରଜାହିତୈଷୀ ସ୍ୱେଚ୍ଛାଚାରୀ ଶାସକରୂପେ ରାଜ୍ୟ ଶାସନ କରି ଯାଇଛନ୍ତି । ମାତ୍ର ସେମାନଙ୍କ ଅଧୀନସ୍ଥ କର୍ମଚାରୀମାନେ ଅନେକ କ୍ଷେତ୍ରରେ ଅତ୍ୟାଚାରୀ ଓ ପ୍ରଜାପୀଡ଼କ ହୋଇ ଶାସନ କଳୁଷିତ କରିବାକୁ ଛାଡ଼ି ନାହାନ୍ତି ।

ସାମ୍ରାଜ୍ୟର ପ୍ରତ୍ୟେକ ବଡ଼ କର୍ମଚାରୀ ଜଣେ ଜଣେ ମନସବ୍ଦାର ଥିଲେ । ସମ୍ରାଟଙ୍କଠାରୁ 'ମନସବ୍' ଲାଭକରି ସେମାନେ ଆବଶ୍ୟକ ବେଳେ ସମ୍ରାଟଙ୍କୁ ସୈନ୍ୟ ଯୋଗାଇବାକୁ ବାଧ୍ୟ ଥିଲେ । ମନସବ୍ଦାରଙ୍କ ମଧ୍ୟରେ ନାନା ଶ୍ରେଣୀବିଭାଗ ଥିଲା । ଆକବର ସେମାନଙ୍କୁ ତେତିଶ ଶ୍ରେଣୀରେ ବିଭକ୍ତ କରିଥିଲେ । ସର୍ବନିମ୍ନ ମନସବ୍ଦାରଙ୍କ ଅଧୀନରେ ଦଶ ଜଣ ଓ ସର୍ବୋଚ୍ଚ ମନସବ୍ଦାରଙ୍କ ଅଧୀନରେ ଦଶ ହଜାର ସୈନ୍ୟ ରହୁଥିଲେ । ଏହି ମନସବଦାରୀ ପ୍ରଥା ବଂଶାନୁକ୍ରମିକ ନଥିଲା । ରାଜକର୍ମଚାରୀମାନେ ଜାୟଗୀରଭୋଗୀ ବା ବେତନଭୋଗୀ ଥିଲେ । ସମ୍ରାଟ୍ ଆକବର ଜାୟଗୀର ଦେବା ପରିବର୍ତ୍ତେ ବେତନ ଦାନ କରିବା ଶ୍ରେୟସ୍କର ମନେ କରିଥିଲେ । ଜାୟଗୀରଦାରମାନଙ୍କର ଜାୟଗୀର ଉପରେ ସ୍ଥାୟୀ ସ୍ୱତ୍ୱ ନ ଥିଲା ।

ମୋଗଲ ସମ୍ରାଟ୍ ନିଜ ହାତରେ ସମସ୍ତ ଶାସନ କ୍ଷମତା ରଖି ଥିଲେ ସୁଦ୍ଧା, ବିଭିନ୍ନ ଶାସନ ବିଭାଗରେ ବିଭାଗୀୟ ଶାସନକର୍ତ୍ତା ନିଯୁକ୍ତ କରି ରାଜ୍ୟଶାସନ କରୁଥିଲେ । ରାଜ୍ୟରେ ମୁଖ୍ୟ ଶାସନ ବିଭାଗ ଥିଲା ଛଅଟି ଯଥା:—(୧) ଦେୱାନଙ୍କ ଦ୍ୱାରା ପରିଚାଳିତ ଅର୍ଥ ବିଭାଗ, (୨) ଖାନ୍-ଇ-ସାମାନ୍‌ଙ୍କ ଦ୍ୱାରା ପରିଚାଳିତ ସମ୍ରାଟ୍‌ଙ୍କ ଗୃହସଂସ୍ଥା, (୩) ମୀରବକସିଙ୍କ ପରିଚାଳିତ ସାମରିକ ବ୍ୟୟ ବିଭାଗ, ୪) କାଜି-ଉଲ୍-କାଜାତ୍‌ଙ୍କ ଦ୍ୱାରା ପରିଚାଳିତ ବିଚାର ବିଭାଗ ଓ (୫) ସଦର-ଅସ୍-ସଦରଙ୍କଦ୍ୱାରା ପରିଚାଳିତ ଦାନ-ଖଇରାତ୍ ବିଭାଗ ଓ ମୁହାତାସୀବଙ୍କ ଦ୍ୱାରା ନିୟନ୍ତ୍ରିତ ସାଧାରଣ ଦୁର୍ନୀତି ନିରୋଧ ବିଭାଗ । କର୍ମଚାରୀପୁଞ୍ଜ ମଧ୍ୟରେ ଦେୱାନ୍ ବା ଉଜୀର (Wazir)ଥିଲେ ସର୍ବୋଚ୍ଚ କର୍ମଚାରୀ । ଏହି ସବୁ ଉଚ୍ଚ କର୍ମଚାରୀ ଗୋଷ୍ଠୀ ଛଡ଼ା ନାନା ଶ୍ରେଣୀର ନିମ୍ନ କର୍ମଚାରୀ ମଧ୍ୟ ବିଭିନ୍ନ ବିଭାଗରେ କାର୍ଯ୍ୟ କରୁଥିଲେ ।

**ଶାନ୍ତିଶୃଙ୍ଖଳା ରକ୍ଷା:**—ଗ୍ରାମରେ ଶାନ୍ତି ଶୃଙ୍ଖଳା ରକ୍ଷାର ଭାର ପୂର୍ବପରି ଗ୍ରାମର ମୁଖ୍ୟ ବା ଗ୍ରାମ-ପ୍ରଧାନଙ୍କ ଉପରେ ନ୍ୟସ୍ତ ଥିଲା ଏବଂ ଗ୍ରାମ-ଚୌକିଦାର ସେ ବିଷୟରେ ତାଙ୍କୁ ସାହାଯ୍ୟ କରୁଥିଲେ । ମୋଗଲ ସମ୍ରାଟ୍‌ମାନେ ସେ ଦିଗରେ କୌଣସି ନୂତନ ବ୍ୟବସ୍ଥା ଅବଲମ୍ବନ କରି ନଥିଲେ । ସହର ଓ ନଗରମାନଙ୍କରେ ଶାନ୍ତି ରକ୍ଷାର ଭାର ଥିଲା କଟୁଆଲଙ୍କ ଉପରେ ଏବଂ ଜିଲା ବା ସରକାରରେ ଶାନ୍ତିଶୃଙ୍ଖଳା ରକ୍ଷାର ଦାୟିତ୍ୱ ଥିଲା ଫୌଜଦାରଙ୍କର । ଫୌଜଦାର ଅଧୀନରେ ଦଳେ ଫୌଜ ରହୁଥିଲେ । ଫୌଜ ସାହାଯ୍ୟରେ ସେ ବିଦ୍ରୋହ ପ୍ରଭୃତି ଦମନ କରୁଥିଲେ ଓ ଡକାଏତ ଦଳଙ୍କୁ ଧରିବାକୁ ଚେଷ୍ଟା କରୁଥିଲେ ।

**ରାଜସ୍ୱ ବିଭାଗ:**—ସମ୍ରାଟ୍ ଆକବରଙ୍କ ସମୟରେ ରାଜସ୍ୱ ବିଭାଗରେ ଗୁରୁତ୍ୱପୂର୍ଣ୍ଣ ସଂସ୍କାରମାନ ପ୍ରବର୍ତ୍ତିତ ହୋଇଥିଲା । ୧୫୮୨

ଖ୍ରୀଷ୍ଟାବ୍ଦରେ ଆକବର ଟୋଡରମଲ୍ଲଙ୍କୁ 'ଦେବାନୀଅସରଫ୍' ପଦରେ ନିଯୁକ୍ତ କରିଥିଲେ । ଟୋଡରମଲ୍ଲ ସାମ୍ରାଜ୍ୟର ସମସ୍ତ ଜମି ଜରିପ କରି ତା'ର ବିଭିନ୍ନ ଶ୍ରେଣୀବିଭାଗ କରିଥିଲେ ଓ ଉପଯୁକ୍ତ ରାଜସ୍ୱ ଧାର୍ଯ୍ୟ କରିଥିଲେ । ଜମିଗୁଡ଼ିକୁ ସେ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରିଥିଲେ, ଯଥା:—(୧) ପ୍ରତିବର୍ଷ ଚାଷ ହୋଇପାରୁଥିବା ଜମି, (୨) ପ୍ରତିବର୍ଷ ଚାଷ ହୋଇନପାରିବା ଜମି, (୩) ତିନି ଚାରି ବର୍ଷ ପଡ଼ିଆ ରହୁଥିବା ଜମି ଓ (୪) ପାଞ୍ଚବର୍ଷ ବା ପାଞ୍ଚବର୍ଷରୁ ଊର୍ଦ୍ଧ୍ୱ ପଡ଼ିଆ ରହୁଥିବା ଜମି । କେବଳ ଯେଉଁ ଜମି ପ୍ରକୃତରେ ଚାଷ ହେଉଥିଲା ଟୋଡରମଲ୍ଲ ତାହାରି ଉପରେ କର ଧାର୍ଯ୍ୟ କରିଥିଲେ । ଜମିରୁ ଉତ୍ପନ୍ନ ଶସ୍ୟର ଏକ ତୃତୀୟାଂଶ ରାଜ ସରକାରଙ୍କୁ କର ସ୍ୱରୂପ ଦେବାକୁ ପଡ଼ୁଥିଲା । କୃଷକମାନେ ତାହା ଶସ୍ୟାକାରରେ କିମ୍ବା ମୁଦ୍ରାକାରରେ ଦେଉଥିଲେ । ରାଜସ୍ୱ ଆଦାୟ ତଥା ସାଧାରଣ ଶାସନର ସୁବିଧା ପାଇଁ ସାମ୍ରାଜ୍ୟ ଅନେକଗୁଡ଼ିଏ ସୁବାରେ ବିଭକ୍ତ ହୋଇଥିଲା । ପ୍ରତି ସୁବା ସରକାରରେ, ପ୍ରତି ସରକାର ପ୍ରଗଣାରେ ଏବଂ ପ୍ରତି ପ୍ରଗଣା ଗ୍ରାମରେ ବିଭକ୍ତ ଥିଲା । ଜିଲ୍ଲା ବା ସରକାରର ପ୍ରଧାନ ରାଜସ୍ୱକର୍ମଚାରୀ ଥିଲେ 'ଅମଲଗୁଜାର' । ଅମଲଗୁଜାରଙ୍କ ଛଡ଼ା ରାଜସ୍ୱ ବିଭାଗରେ ଅନ୍ୟାନ୍ୟ ଅନେକ କର୍ମଚାରୀ ଥିଲେ, ଯଥା:—କାରକୁନ, କାନୁନ୍‌ଗୋ, ବିତକ୍‌ଚି, ପୋଦ୍ଦାର ପ୍ରଭୃତି ।

**ପ୍ରାଦେଶିକ ଶାସନ:**—ପୂର୍ବରୁ କୁହାଯାଇଛି, ଆକବର ସାମ୍ରାଜ୍ୟକୁ କେତେଗୁଡ଼ିଏ 'ସୁବା' ବା ପ୍ରଦେଶରେ ବିଭକ୍ତ କରିଥିଲେ । ଆକବରଙ୍କ ରାଜତ୍ୱର ଶେଷ ଆଡ଼କୁ ସୁବା ସଂଖ୍ୟା ବୃଦ୍ଧି ପାଇ ପନ୍ଦର ହୋଇଥିଲା । ଆଉରଙ୍ଗଜେବଙ୍କ ସମୟରେ ସାମ୍ରାଜ୍ୟ ୨୧ଟି ସୁବାରେ ବିଭକ୍ତ ଥିଲା । ସୁବାର ଶାସକଙ୍କୁ ସିପାସାଲାର,

ସାହେବସୁବା ବା ସୁବାଦାର ବୋଲି କୁହା ହେଉଥିଲା । ସୁବାଦାର ସାମରିକ ଓ ବେସାମରିକ ଉଭୟ ବିଭାଗର ମୁଖ୍ୟ ଥିଲେ । ତାଙ୍କ ଅଧୀନରେ ଦେବାନ୍, ବକ୍ସି, ଫୌଜଦାର, କୋଟୱାଲ, କାଜି, ଆମିଲ, ବିତକ୍‌ଚି, ପୋଦ୍ଦାର ପ୍ରଭୃତି ନାନା ଶ୍ରେଣୀର କର୍ମଚାରୀ ରହି କାର୍ଯ୍ୟ କରୁଥିଲେ ।



ବୃଦ୍ଧ ବୟସରେ ଆକବର

**ମୋଗଲ ଯୁଗରେ ସାମାଜିକ ଓ ଅର୍ଥନୈତିକ ଜୀବନ**—ସାମାଜିକ ଦୃଷ୍ଟିରୁ ମୋଗଲ ଯୁଗକୁ ସାମନ୍ତ ଯୁଗ ବୋଲି କୁହାଯାଇପାରେ । ଏହି ଯୁଗରେ ସମାଜର ଶୀର୍ଷସ୍ଥାନରେ ଥିଲେ ରାଜା ବା ସମ୍ରାଟ, ତାଙ୍କ ତଳେ ସାମନ୍ତ ଶ୍ରେଣୀ ଓ ମଧ୍ୟବିତ୍ତସମ୍ପ୍ରଦାୟ ଓ ସର୍ବନିମ୍ନ ସ୍ତରରେ ଥିଲେ ସାଧାରଣ ଶ୍ରେଣୀର ଲୋକ । ଏମାନଙ୍କ ମଧ୍ୟରେ ଏହି ସାଧାରଣ ଜନତା ହିଁ ଥିଲେ ଦରିଦ୍ରତମ । ଧନୀ ସାମନ୍ତ ଶ୍ରେଣୀର ଲୋକେ ବିଳାସବ୍ୟସନରେ ନିମଗ୍ନ ରହୁଥିଲେ ଏବଂ ଦରିଦ୍ର ଜନସାଧାରଣ ଦାରିଦ୍ର୍ୟରେ ସଢ଼ୁଥିଲେ । ଧନୀ ମହଲରେ ମଦ୍ୟପାନ ଓ ଇନ୍ଦ୍ରିୟ ସମ୍ଭୋଗ ଲାଗି ଉଚ୍ଛୃଙ୍ଖଳ ଓ ଆଡ଼ମ୍ବରର ସୀମା ନ ଥିଲା । ସେମାନେ ମୂଲ୍ୟବାନ୍ ପୋଷାକ ପରିଧାନ କରୁଥିଲେ, ମୂଲ୍ୟବାନ୍ ଖାଦ୍ୟ ଖାଉଥିଲେ ଓ ସୁସଜ୍ଜିତ ହର୍ମ୍ୟରେ ବାସ କରୁଥିଲେ । ରାଜାମାନଙ୍କର ଓ ଅନ୍ୟାନ୍ୟ ଧନୀ ଲୋକଙ୍କର ଅନ୍ତଃପୁର ବହୁ ପତ୍ନୀ ଓ ବହୁ ରକ୍ଷିତା ରମଣୀରେ ପୂର୍ଣ୍ଣ ଥିଲା । ଏପରିକି, ଭାରତ ପ୍ରସିଦ୍ଧ ସମ୍ରାଟ୍ ଆକବରଙ୍କ ଅନ୍ତଃପୁରରେ ପାଞ୍ଚ ହଜାର

ରମଣୀ ବାସ କରୁଥିଲେ ବୋଲି ଐତିହାସିକ ଆବୁଲଫଜଲ ଲେଖି ଯାଇଛନ୍ତି । ମୋଗଲ ରାଜଦରବାର ଥିଲା ଅନନ୍ତ ଆଡ଼ମ୍ବର ଓ ଅପରିସୀମ ବିଳାସର ଲୀଳାଭୂମି । ସାମନ୍ତମାନଙ୍କ ମଧ୍ୟରେ ଷଡ଼ଯନ୍ତ୍ର ପ୍ରାୟ ଲାଗି ରହୁଥିଲା । ଅଷ୍ଟାଦଶ ଶତାବ୍ଦୀରେ ଏହା ଚରମ ସୀମାରେ ପହଞ୍ଚିଥିଲା । ମଧ୍ୟବିତ୍ତ ଶ୍ରେଣୀର ଲୋକେ ଅପେକ୍ଷାକୃତ ମିତବ୍ୟୟୀ ଥିଲେ, ମାତ୍ର ମୋଗଲ ଯୁଗରେ ସେମାନଙ୍କ ସଂଖ୍ୟା ମୁଷ୍ଟିମେୟ ଥିଲା । ସେତେବେଳେ ମନୁଷ୍ୟ ଜୀବନରେ ଅଭାବ ଖୁବ୍ କମ୍ ଅନୁଭୂତ ହେଉଥିବାରୁ, ଦରିଦ୍ର ଲୋକେ ଅଭାବ ବୋଧ କରୁ ନଥିଲେ କିନ୍ତୁ ଦୁର୍ଭିକ୍ଷ ସମୟରେ ସେମାନଙ୍କର ଅବସ୍ଥା ଶୋଚନୀୟ ହୋଇପଡୁଥିଲା । ସାହାଜାହାନଙ୍କ ରାଜତ୍ୱର ଶେଷ ଆଡ଼କୁ କୃଷକଶ୍ରେଣୀ ପ୍ରାଦେଶିକ ଶାସନକର୍ତ୍ତାମାନଙ୍କଦ୍ୱାରା ନିତାନ୍ତ ଅତ୍ୟାଚାରିତ ଓ ଉତ୍ପୀଡ଼ିତ ହୋଇଥିବାର ଜଣାଯାଏ । ମୋଗଲଯୁଗରେ ସତୀପ୍ରଥା, କୁଳୀନ-ପ୍ରଥା, ବାଲ୍ୟବିବାହ ପ୍ରଥା ଓ ଯୌତୁକ ପ୍ରଥା ଅତି ମାତ୍ରାରେ ପ୍ରଚଳିତ ଥିଲା । ମହାମନା ଆକବର ଅନେକ ସାମାଜିକ କୁପ୍ରଥା ନିବାରଣ କରିବାକୁ ଚେଷ୍ଟା କରିଥିଲେ, ମାତ୍ର ନାନା କାରଣରୁ କୃତକାର୍ଯ୍ୟ ହୋଇପାରି ନ ଥିଲେ । ଅଷ୍ଟାଦଶ ଶତାବ୍ଦୀରେ ଭାରତୀୟ ସମାଜ ଅସଂଖ୍ୟ ଗର୍ହିତ ପ୍ରଥାରେ ପୂର୍ଣ୍ଣ ହୋଇଯାଇଥିଲା । ମହାରାଷ୍ଟ୍ରୀୟ ଅବ୍ରାହ୍ମଣ ଜାତିର ଲୋକଙ୍କ ମଧ୍ୟରେ ବିଧବାବିବାହ ପ୍ରଚଳିତ ଥିଲେ ସୁଦ୍ଧା, ଅନ୍ୟତ୍ର ହିନ୍ଦୁ ସମ୍ପ୍ରଦାୟରେ ଏହା ନିଷିଦ୍ଧ ଥିଲା ।

ମୋଗଲ ଯୁଗର ଏକ ପ୍ରଧାନ ବିଶେଷତ୍ୱ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ । ରାଜନୀତି କ୍ଷେତ୍ରରେ ଦୁଇ ସମ୍ପ୍ରଦାୟ ମଧ୍ୟରେ ଘୋର ବିରୋଧ ଲାଗି ରହିଥିଲେ ସୁଦ୍ଧା, ସାମାଜିକ କ୍ଷେତ୍ରରେ ସେମାନଙ୍କ ମଧ୍ୟରେ ମିଳାମିଶାର ଅଭାବ ନ ଥିଲା । ଆକବରଙ୍କ

ରାଜତ୍ୱକାଳ ଏଥିପାଇଁ ସୁପ୍ରସିଦ୍ଧ । ଏପରିକି, ଆଉରଙ୍ଗଜେବଙ୍କ ସମୟରେ ମଧ୍ୟ ଏହାର ଦୃଷ୍ଟାନ୍ତ ବିରଳ ନଥିଲା । ହିନ୍ଦୁମାନେ ମୁସଲମାନ ପର୍ବପର୍ବାଣିରେ ଯେପରି ଯୋଗ ଦେଉଥିଲେ, ମୁସଲମାନମାନେ ମଧ୍ୟ ସେହିପରି ହିନ୍ଦୁ ପର୍ବପର୍ବାଣିରେ ଅଂଶ ଗ୍ରହଣ କରୁଥିଲେ । ସମ୍ରାଟ ଭ୍ରାତା ଅବଦୁଲ୍ଲା ଖାଁ ନିଜ ଘରେ ହିନ୍ଦୁର ହୋଲି-ପର୍ବ ଓ ବସନ୍ତୋତ୍ସବ ପାଳନ କରୁଥିଲେ । ସିରାଜ ଉଦ୍‌ଦୌଲା ଓ ମୀରଜାଫର ବନ୍ଧୁବାନ୍ଧବ ଓ ଆତ୍ମୀୟ ସ୍ୱଜନଙ୍କୁ ନେଇ ଆନନ୍ଦରେ ହୋଲି ଖେଳୁଥିଲେ । କଥିତ ଅଛି—ମିରଜାଫର ମୃତ୍ୟୁଶଯ୍ୟାରେ ଶୋଇ ମୁର୍ଶିଦାବାଦ ନିକଟରେ ପ୍ରତିଷ୍ଠିତ ଦେବୀ କିରୀଟେଶ୍ୱରୀଙ୍କର ପାଦୋଦକ ପାନ କରିଥିଲେ । ମହାରାଷ୍ଟ୍ରର ହିନ୍ଦୁ ରାଜା ଦୌଲତରାଓ ସିନ୍ଧିଆ ଓ ତାଙ୍କର କର୍ମଚାରୀବୃନ୍ଦ ମୁସଲମାନଙ୍କ ପରି ସବୁଜ ରଙ୍ଗର ପୋଷାକ ପିନ୍ଧି ସଦଳବଳେ ମହରମ ଶୋଭାଯାତ୍ରାରେ ଯୋଗଦେଉଥିଲେ । ଏପରିକି, ୧୮୨୫ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ସମ୍ରାଟଙ୍କ ରାଜ ଦରବାରରେ ଦୁର୍ଗାପୂଜା ପାଳିତ ହେଉଥିଲା ବୋଲି ଜଣେ ଆଧୁନିକ ଗବେଷକ ତତ୍‌କାଳୀନ ଫାର୍ସୀ ସାପ୍ତାହିକ ପତ୍ର "ଜାମ-ଇ-ଜହାନ ନୁମା"ରୁ ପ୍ରମାଣ କରିଛନ୍ତି ।

ମୋଗଲ ଯୁଗର ଆର୍ଥିକ ଅବସ୍ଥା ସମ୍ବନ୍ଧରେ ଗୁଲବଦନ ବେଗମ୍‌ଙ୍କ ହୁମାୟୁନ୍ ନାମା ଓ ଆବୁଲ ଫଜଲଙ୍କ ଆଇନ ଆକବରୀରୁ କେତେକ କଥା ଜଣାଯାଏ । କେତେକ ଇଉରୋପୀୟ ପରିବ୍ରାଜକଙ୍କ ବିବରଣୀରୁ ମଧ୍ୟ ତାର ସୂଚନା ମିଳେ । ସେତେବେଳେ ଜିନିଷ ପତ୍ରର ଦରଦାମ ଖୁବ୍ କମ ଥିଲା । ଶୂରବଂଶୀୟ ଶେରଶାହା ଲୋକଙ୍କ ଆର୍ଥିକ ଅବସ୍ଥାର ଉନ୍ନତି କରିବାପାଇଁ ବହୁତ ଯତ୍ନ କରିଥିଲେ । ଶ୍ରେଷ୍ଠ ମୋଗଲ ବାଦସାହମାନଙ୍କ ରାଜତ୍ୱ କାଳରେ ଭାରତର ପ୍ରଧାନ ପ୍ରଧାନ ନଗରମାନ ଖୁବ୍ ସମୃଦ୍ଧ ଓ ଐଶ୍ୱର୍ଯ୍ୟପୂର୍ଣ୍ଣ ଥିଲା । ସେତେବେଳେ

ଆଗ୍ରା, ଫତେପୁର, ଲାହୋର, ବରହାନପୁର (ଖାନ୍ଦେଶ ଅନ୍ତର୍ଗତ), ଅହମଦାବାଦ, ବନାରସ, ପାଟନା, ହୁଗୁଳି, ଢାକ୍‌କା ପ୍ରଭୃତି ସମୃଦ୍ଧିଶାଳୀ ନଗରମାନ ଥିଲା । ଦେଶରେ ରାସ୍ତାର ଅଭାବ ନ ଥିଲା । କିନ୍ତୁ ବର୍ତ୍ତମାନ ଯୁଗର ପକ୍‌କା ରାସ୍ତା ଭଳି ରାସ୍ତା ଖୁବ୍ କମ୍ ଥିଲା ।

ବର୍ତ୍ତମାନ ସମୟରେ ଦେଶରେ ଯେଉଁ ଯେଉଁ ଫସଲ ଉତ୍ପନ୍ନ ହେଉଛି, ସେତେବେଳେ ମଧ୍ୟ ସେହିସବୁ ଫସଲ ଉତ୍ପନ୍ନ ହେଉଥିଲା । ଉତ୍ତର ଭାରତର କେତେକ ଅଞ୍ଚଳରେ ବିସ୍ତୃତ ଭାବରେ ନୀଳଚାଷ କରାହେଉଥିଲା । ଦେଶରେ ନାନା ଶିଳ୍ପ ପ୍ରଚଳିତ ଥିଲା ଏବଂ ଶିଳ୍ପଜାତ ଦ୍ରବ୍ୟ ଏସିଆର ବିଭିନ୍ନ ଦେଶକୁ ତଥା ଇଉରୋପକୁ ପ୍ରେରିତ ହେଉଥିଲା । ସେତେବେଳେ ବସ୍ତ୍ରଶିଳ୍ପ ଥିଲା ଭାରତର ଏକ ପ୍ରଧାନ ଶିଳ୍ପ । ଗୁଜରାଟ, ବରହାନପୁର, ଜୌନପୁର, ବନାରସ, ପାଟନା ପ୍ରଭୃତି ସ୍ଥାନରେ ବସ୍ତ୍ର ଶିଳ୍ପର କେନ୍ଦ୍ରମାନ ପ୍ରତିଷ୍ଠିତ ଥିଲା । ଓଡ଼ିଶାରୁ ପୂର୍ବବଙ୍ଗ ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳ ବସ୍ତ୍ର ଶିଳ୍ପର ଏକ ପ୍ରକାଣ୍ଡ କାରଖାନାଭଳି ପ୍ରତିଭାତ ହେଉଥିଲା । ପୂର୍ବବଙ୍ଗ ଅନ୍ତର୍ଗତ ଢାକା ଜିଲ୍ଲା ସୂକ୍ଷ୍ମ ମସଲିନ ବସ୍ତ୍ରର ଉତ୍ପାଦନ ପାଇଁ ବିଖ୍ୟାତ ଥିଲା । ଶିଳ୍ପୀମାନେ ନାନା ରଙ୍ଗର ଚିତ୍ରିତ ବସ୍ତ୍ର ନିର୍ମାଣ କରିବାରେ ନିପୁଣ ଥିଲେ । ରେଶମ ଶିଳ୍ପ ମଧ୍ୟ ଲାହୋର, ଆଗ୍ରା, ଫତେପୁର ସିକ୍ରି, ଗୁଜରାଟ୍ ପ୍ରଭୃତି ସ୍ଥାନରେ ପ୍ରତିଷ୍ଠିତ ଥିଲା । ସମ୍ରାଟ୍ ଆକବର ଶାଲ୍, ଗାଲିଚା, ସତରଞ୍ଜି ପ୍ରଭୃତି ପ୍ରସ୍ତୁତ କରିବାକୁ ବିଶେଷ ଉତ୍ସାହ ଦେଉଥିଲେ । ଦକ୍ଷିଣ ଭାରତ ଓ ବିହାର ପ୍ରଭୃତି କେତେକ ଅଞ୍ଚଳରେ ପ୍ରଚୁର ସୋରା ପ୍ରସ୍ତୁତ ହୋଇ ବିଦେଶକୁ ରପ୍ତାନି ହେଉଥିଲା । ଏ ସମସ୍ତ ବୃହତ୍ ଶିଳ୍ପ ବ୍ୟତୀତ ନାନା କ୍ଷୁଦ୍ର କ୍ଷୁଦ୍ର ଶିଳ୍ପ ମଧ୍ୟ ଦେଶରେ ପ୍ରଚଳିତ ଥିଲା । ବଙ୍ଗ, ଲାହୋର, ଜୌନପୁର

ଅହମ୍ମଦାବାଦ ଓ ପାଟନାରେ ବଡ଼ ବଡ଼ ମୁଦ୍ରାଶାଳାମାନ ପ୍ରତିଷ୍ଠିତ ଥିଲା ।

ଦେଶରେ ନାନାବିଧ ମୁଦ୍ରା ଚଳୁଥିଲା । ତୁର୍କ-ଆଫଗାନ ଯୁଗରେ ଫିରୋଜସାହା ଅଧଲି, ସୁଙ୍କ ଓ ପଇସା ପ୍ରଚଳନ କରିଥିଲେ । ମୋଗଲ ଯୁଗରେ ସମ୍ରାଟ ଆକବର ୨୬ ପ୍ରକାର ସ୍ୱର୍ଣ୍ଣମୁଦ୍ରା ଚଳାଇଥିଲେ । ତାଙ୍କ ସମୟରେ ଜଲାଲ ନାମକ ଏକ ଚତୁଷ୍କୋଣ ରୌପ୍ୟ ମୁଦ୍ରା ବାହାରିଥିଲା, ମାତ୍ର ପ୍ରଧାନ ତାମ୍ରମୁଦ୍ରା ଥିଲା ପଇସା ବା "ଦାମ୍" । ଛୋଟ ଛୋଟ ଜିନିଷର ଦର ବନ୍ଦବସ୍ତରେ କଉଡ଼ି ବ୍ୟବହୃତ ହେଉଥିଲା । ଜିନିଷପତ୍ରର ଦର ଖୁବ୍ ଶସ୍ତା ଥିଲା । ଶାୟେସ୍ତାଖାଁଙ୍କ ଅମଳରେ ଟଙ୍କାକୁ ଆଠ ମହଣ ଚାଉଳ ମିଳୁଥିଲା । ବିଦେଶରୁ ମଦ୍ୟ, ରେଶମ, ସ୍ୱର୍ଣ୍ଣ, ରୌପ୍ୟ, ଘୋଟକ, ହସ୍ତୀଦନ୍ତ, ସୁଗନ୍ଧଦ୍ରବ୍ୟ, ମଖମଲ, ଚୀନାବାସନ, ପ୍ରବାଳ, ଆଫ୍ରିକା ଦେଶୀୟ କ୍ରୀତ ଦାସ ପ୍ରଭୃତି ଆମଦାନୀ ହେଉଥିଲା । ଭାରତରୁ ସାଧାରଣ ବସ୍ତ୍ର, ଛିଟ, ନୀଳ, ମରିଚ, ମସଲା, ଅଫିମ ଓ ଅନ୍ୟାନ୍ୟ ପଦାର୍ଥ ରପ୍ତାନି ହେଉଥିଲା । ସେତେବେଳେ ଭାରତର ପ୍ରଧାନ ବନ୍ଦର ଥିଲା ଲହୋରୀ ବନ୍ଦର (ସିନ୍ଧୁ ପ୍ରଦେଶରେ), ସୁରଟ୍, ବ୍ରୋଚ, କାମ୍ବେ, ବେସିନ, ଗୋଆ, କାଲିକଟ୍, କୋଚିନ୍, ନେଗାପଟମ, ମସ୍ଲିପଟମ, ଚିଟାଗଞ୍ଜ ପ୍ରଭୃତି । ବାଣିଜ୍ୟ ଶୁଳ୍କର ହାର୍ ଖୁବ୍ କମ୍ ଥିଲା । ଆକବରଙ୍କ ଅମଳରୁ ଇଂରେଜ ଓ ଡଚ୍ ବଣିକମାନେ ବାଣିଜ୍ୟ କାରବାରରେ ଖୁବ୍ ତତ୍ପର ହେବାକୁ ଆରମ୍ଭ କରିଥିଲେ । ଆଉରଙ୍ଗଜେବଙ୍କ ରାଜତ୍ୱର ଶେଷ ଆଡ଼କୁ ଭାରତର ଅର୍ଥନୈତିକ ସମୃଦ୍ଧି ହ୍ରାସ ପାଇବାକୁ ଆରମ୍ଭ କଲା ।

## ଅନୁଶୀଳନୀ

୧ । ମୁସଲମାନ ଆକ୍ରମଣ ପୂର୍ବରୁ କେଉଁ କେଉଁ ବୈଦେଶିକ ଜାତିର ଲୋକେ ଭାରତକୁ ଆସିଥିଲେ ।

୨ । ଇସଲାମ୍ ଧର୍ମର ପ୍ରବର୍ତ୍ତକ କିଏ ? ତାଙ୍କର ସଂକ୍ଷିପ୍ତ ଜୀବନ କଥା ଲେଖ । ଇସଲାମର ମୂଳନୀତି ବର୍ଣ୍ଣନ କର ।

୩ । ଇସଲାମ୍ ଧର୍ମାବଲମ୍ବୀମାନେ ପୃଥିବୀର କେଉଁ କେଉଁ ଅଞ୍ଚଳରେ ପ୍ରଭାବ ବିସ୍ତାର କରିଥିଲେ ।

୪ । ଭାରତରେ କିପରି ଇସଲାମ୍ ଧର୍ମର ପ୍ରସାର ଘଟିଲା ?

୫ । ମୁସଲମାନମାନେ କାହିଁକି ଭାରତରେ ଏକ ସ୍ୱତନ୍ତ୍ର ସମାଜ ହୋଇ ରହିଲେ ?

୬ । ଆରବୀୟମାନେ କିପରି ସିନ୍ଧୁ ଜୟ କଲେ ? ଉକ୍ତ ବିଜୟର ଫଳାଫଳ କ'ଣ ହୋଇଥିଲା ?

୭ । ସୁଲତାନ ମାହମୁଦ୍ ଓ ମହମ୍ମଦ ଘୋରୀଙ୍କର ପରିଚୟ ଦିଅ । ସେମାନେ କି ଉଦ୍ଦେଶ୍ୟରେ ଭାରତ ଆକ୍ରମଣ କରିଥିଲେ ?

୮ । ତୁର୍କ-ଆଫଗାନ ଯୁଗ କାହାକୁ କୁହାଯାଏ ? ଉକ୍ତ ଯୁଗରେ ଭାରତୀୟ ସମାଜର ଚିତ୍ର ପ୍ରଦାନ କର ।

୯ । ଭାରତରେ ଇସଲାମୀୟ କଳା-ସ୍ଥାପତ୍ୟର ବିକାଶ କିପରି ଘଟିଥିଲା ତାହା ବର୍ଣ୍ଣନ କର ।

୧୦ । ଉର୍ଦ୍ଦୁ ଭାଷାର ଉତ୍ପତ୍ତି କିପରି ହେଲା ?

୧୧ । ତୁର୍କ ଆଫଗାନ ଯୁଗର ଶାସନ ବ୍ୟବସ୍ଥା କିପରି ଥିଲା ? ଫିରୋଜସାହାଙ୍କୁ ଜଣେ ସୁଶାସକ ବୋଲି କାହିଁକି କୁହାଯାଏ ?

୧୨ । ଶୂନ୍ୟସ୍ଥାନମାନ ଉପଯୁକ୍ତ ଭାବରେ ପୂରଣ କର:—

ସିନ୍ଧୁ ରାଜ୍ୟର—ବନ୍ଦରରେ ଜଳଦସ୍ୟୁମାନେ ଆରବୀୟ-ମାନଙ୍କର ବାଣିଜ୍ୟତରୀ ଲୁଣ୍ଠନ କରିବାରୁ—ର ଆରବ ଶାସନ-

କର୍ତ୍ତା—ସିନ୍ଧୁ ରାଜ୍ୟ—ଙ୍କଠାରୁ କ୍ଷତିପୂରଣ ଦାବି କଲେ । ସିନ୍ଧୁ ରାଜ୍ୟ କ୍ଷତିପୂରଣ ନ ଦେବାରୁ ଯୁଦ୍ଧ ହେଲା ଓ ଆରବୀୟମାନେ ପ୍ରଥମେ—ହେଲେ, ମାତ୍ର—ଖ୍ରୀଷ୍ଟାବ୍ଦରେ—ବିଶାଳ ଆରବ ବାହିନୀ ମାଧ୍ୟମରେ ସିନ୍ଧୁ ଆକ୍ରମଣକରି ସିନ୍ଧୁ ରାଜାଙ୍କୁ—ଯୁଦ୍ଧରେ ପରାସ୍ତ କଲେ । ସିନ୍ଧୁ ରାଜ୍ୟ ଆରବୀୟମାନଙ୍କର ହସ୍ତଗତ ହେଲା ଓ ସେମାନେ ଅନ୍ୟ କେତେକ ସ୍ଥାନ ଅଧିକାର କଲେ, ମାତ୍ର ଦକ୍ଷିଣରେ—, ଉତ୍ତରରେ—ଓ ପୂର୍ବରେ—ସେମାନଙ୍କୁ ପ୍ରବଳ ବାଧା ଦେବାରୁ ସେମାନେ ଆଉ ଅଧିକ ଦୂର ଅଗ୍ରସର ହୋଇ ପାରିଲେ ନାହିଁ ।

୧୩ । ମୋଗଲ ଯୁଗରେ ଭାରତୀୟ ସମାଜର ଏକ ଚିତ୍ର ପ୍ରଦାନ କର ।

୧୪ । ମୋଗଲଯୁଗରେ ଶିଳ୍ପ ସ୍ଥାପତ୍ୟର କି ଉନ୍ନତି ସାଧିତ ହୋଇଥିଲା ?

୧୫ । ମୋଗଲ ଯୁଗର ନାରୀ ସମାଜ ସମ୍ବନ୍ଧରେ ଯାହା ଜାଣ ଲେଖ ।

୧୬ । ମୋଗଲମାନଙ୍କ ରାଜତ୍ୱ କାଳରେ ଶାସନ ବ୍ୟବସ୍ଥା କିପରି ଥିଲା ?

୧୭ । ମୋଗଲ ଯୁଗରେ ଭାରତର ଅର୍ଥନୈତିକ ଅବସ୍ଥା ବର୍ଣ୍ଣନ କର ।

୧୮ । "ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ମୋଗଲ ଯୁଗର ଏକ ପ୍ରଧାନ ବୈଶିଷ୍ଟ୍ୟ"—ଏ ଉକ୍ତିର ସତ୍ୟତା ପ୍ରତିପାଦନ କର ।

୧୯ । ସମ୍ରାଟ୍ ଆକବରଙ୍କ ଅମଳରେ ଭାରତୀୟ ସମାଜ କିପରି ଥିଲା ?

୨୦ । ନିମ୍ନଲିଖିତ ବିଷୟରେ ସଂକ୍ଷିପ୍ତ ଐତିହାସିକ ଟିପ୍ପଣୀ ଲେଖ :—

ମଜଲିସ୍-ଇ-ଖଲୱାତ୍,ଖାସ୍-ଇ-ଖାସ, ଭାରତର ଶୁକପକ୍ଷୀ, ମୋଗଲ ଯୁଗର ଚିତ୍ରଶିଳ୍ପ, ହିନ୍ଦୁ ଓ ମୁସଲମାନ ସାହିତ୍ୟର ଅଗସ୍ଟାନ ଯୁଗ ।

୨୧ । ତୁମ୍ଭ ବିଦ୍ୟାଳୟର ପୁସ୍ତକାଗାରରୁ ଉପଯୁକ୍ତ ପୁସ୍ତକମାନ ବାଛ ଓ ତାହା ପାଠକରି ମୋଗଲଯୁଗର ସମସାମୟିକ ସମାଜ ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ଲେଖ ।

———

## ପଞ୍ଚମ ପରିଚ୍ଛେଦ

## ଆବିଷ୍କାର ଯୁଗ

(କଲମ୍ବସ୍, ଭାସ୍କୋଡାଗାମା ଓ ଟଲେ—ଜଳପଥ ଓ ସ୍ଥଳପଥ—ସାମୁଦ୍ରିକ ବାଣିଜ୍ୟ ।)

**ଆବିଷ୍କାର ଯୁଗ:**—ପୃଥିବୀର ଇତିହାସକୁ ତିନୋଟି ପ୍ରଧାନ ଯୁଗରେ ବିଭକ୍ତ କରାଯାଏ, ଯଥା — ୧) ପ୍ରାଚୀନ ଯୁଗ, ମଧ୍ୟଯୁଗ ଓ ଆଧୁନିକ ଯୁଗ । ଏମାନଙ୍କ ମଧ୍ୟରୁ ଆଧୁନିକ ଯୁଗ ସହିତ ଆମ୍ଭମାନଙ୍କର ଘନିଷ୍ଠ ସମ୍ପର୍କ । ଆମ୍ଭେମାନେ ଏହି ଯୁଗର ଲୋକ । ପ୍ରାୟ ଅଧିକେ ପାଞ୍ଚଶହ ବର୍ଷ ପୂର୍ବରୁ ଆଧୁନିକ ଯୁଗର ଆରମ୍ଭ । ଏହି ଯୁଗରେ କଳା, ଶିଳ୍ପ, ସାହିତ୍ୟ, ବିଜ୍ଞାନ ପ୍ରଭୃତି ନାନା କ୍ଷେତ୍ରରେ ଅଭୂତପୂର୍ବ ଉନ୍ନତି ସାଧିତ ହୋଇଅଛି ଏବଂ ହେଉଅଛି । ଏହା ନାନା ଆବିଷ୍କାର ଓ ଉଦ୍ଭାବନରେ ସମୃଦ୍ଧ । ଏହି ଯୁଗର ଆରମ୍ଭରେ ଭୌଗୋଳିକ ଆବିଷ୍କାର ଦିଗରେ ଏକ ଅପୂର୍ବ ଉନ୍ମାଦନା ଦେଖା ଦେଇଥିଲା । ଅଜ୍ଞାତ ସମୁଦ୍ର ବକ୍ଷରେ ବିଚରଣ କରି ଅଜଣା ଦେଶର ସନ୍ଧାନ

ଲାଭ କରିବାକୁ ଏହି ସୁଯୋଗ କେତେକ ଗୁଣରେ ପ୍ରତ୍ୟକ୍ଷ ବାହାର ପଡ଼ିଥିଲେ । ପ୍ରାଚ୍ୟଖଣ୍ଡର ଅଦ୍ଭୁତ ସମୃଦ୍ଧି ପାଶ୍ଚାତ୍ୟଖଣ୍ଡର ଲୋଲୁପଦୃଷ୍ଟି ଆକର୍ଷଣ କରିଥିଲା ।

ମାର୍କୋପୋଲୋଙ୍କ ଓ ଅନ୍ୟାନ୍ୟ ପର୍ଯ୍ୟଟକମାନଙ୍କର ବିବରଣୀରୁ ଇଉରୋପୀୟମାନେ ଭାରତ, ଚୀନ, ଜାପାନ ପ୍ରଭୃତି ପ୍ରାଚ୍ୟଦେଶ-ମାନଙ୍କର ଅସୀମ ବିଭବର କଥା ଜାଣିପାରି, ଉକ୍ତ ଦେଶମାନଙ୍କୁ ଜଳପଥ ଆବିଷ୍କାର କରି ତହିଁରୁ ଧନରତ୍ନ ଆହରଣ କରିବାକୁ ପ୍ରୟାସୀ ହୋଇଥିଲେ । ଏହି ସମୟରେ କନଷ୍ଟାଣ୍ଟିନୋପଲର ପତନ ଘଟିଥିଲା । ତୁର୍କମାନେ ପ୍ରବଳ ହୋଇ ଉଠିଥିଲେ । ପାଶ୍ଚାତ୍ୟ ଦେଶ-ମାନଙ୍କରୁ ପ୍ରାଚ୍ୟଖଣ୍ଡକୁ ଆସିବାକୁ ହେଲେ ଯେଉଁସବୁ ଜଳପଥ ଓ ସ୍ଥଳପଥ ବ୍ୟବହୃତ ହେଉଥିଲା, ସେ ସବୁ ତୁର୍କମାନଙ୍କ ହାତରେ ପଡ଼ିବାରୁ ଇଉରୋପୀୟ ବଣିକମାନେ ବିଶେଷ ବାଧାଗ୍ରସ୍ତ ହେଲେ । ସେମାନେ ପୂର୍ବପରି ଅବାଧରେ ବାଣିଜ୍ୟ ପଥଗୁଡ଼ିକ ବ୍ୟବହାର କରି ପାରିଲେ ନାହିଁ । ତେଣୁ ନୂତନ ବାଣିଜ୍ୟପଥ ଆବିଷ୍କାର କରିବାର ଆବଶ୍ୟକତା ଗୁରୁତର ଭାବରେ ଅନୁଭୂତ ହେଲା । ଯେନୋଆ, ପର୍ତ୍ତୁଗାଲ ଓ ସ୍ପେନର ନାବିକମାନେ ଏ ବିଷୟରେ ଆଗଭର ହୋଇ ବାହାରିଲେ । ସେତେବେଳକୁ ଇଉରୋପୀୟମାନଙ୍କ ମନରୁ ପୃଥିବୀର ଆକୃତି ସମ୍ବନ୍ଧରେ ଭ୍ରାନ୍ତ ଧାରଣା ଦୂର ହୋଇ ସାରିଥିଲା । ପୃଥିବୀ ଗୋଲାକାର ବୋଲି ସେମାନେ ଜାଣି ସାରିଥିଲେ । ସମୁଦ୍ର ଯାତ୍ରା ବିଷୟରେ ସେମାନଙ୍କର ଭୟ ମଧ୍ୟ ତୁଟିଯାଇଥିଲା । ପୂର୍ବରୁ ଖ୍ରୀଷ୍ଟାନ ଓ ମୁସଲମାନଙ୍କ ମଧ୍ୟରେ ଘଟିଥିବା କ୍ରୁସେଡ୍ ବା ଧର୍ମଯୁଦ୍ଧ ଓ୍ୱେଳେ ବାରମ୍ବାର ଜଳଯାତ୍ରା କରି ସେମାନଙ୍କର ସମୁଦ୍ରଯାତ୍ରା ପାଇଁ ସାହସ ବଢ଼ିଯାଇଥିଲା । ପୃଥିବୀର ଅକ୍ଷାଂଶ ଓ ଦ୍ରାଘିମା ସମ୍ବନ୍ଧରେ ମଧ୍ୟ ସେମାନେ ଯଥାର୍ଥ ଧାରଣା ଲାଭ କରିସାରିଥିଲେ ଏବଂ

ବଗ ନିର୍ଣ୍ଣୟ ଯନ୍ତ୍ରର ବ୍ୟବହାର ଶିଖିଥିଲେ । ଏହି ସବୁ କାରଣରୁ ସେମାନଙ୍କ ମନରେ ନୌଯାତ୍ରା କରି ଅଜ୍ଞାତ ଦୂରଦେଶ ଓ ନୂତନ ଜଳପଥ ଆବିଷ୍କାର କରିବା ସମ୍ଭବପର ହୋଇଥିଲା । ଏହିପରି ପଞ୍ଚଦଶ ଶତାବ୍ଦୀରେ ଏକ ନୂତନ ଯୁଗର ଆବିର୍ଭାବ ଘଟିଥିଲା । ଏହାକୁ **ଭୌଗୋଳିକ ଆବିଷ୍କାର ଯୁଗ** ବୋଲି କୁହାଯାଏ ।

ସେତେବେଳେ ଇଉରୋପରେ ସ୍ପେନ ରାଜ୍ୟ ଖୁବ ଶକ୍ତିଶାଳୀ ଥିଲା । ସ୍ପେନର ରାଜା ଫର୍ଡିନାଣ୍ଡ ଓ ରାଣୀ ଇସାବେଲା ନାବିକମାନଙ୍କୁ ଖୁବ୍ ଉତ୍ସାହ ଦେଉଥିଲେ । ସ୍ପେନୀୟ ନାବିକମାନେ ଉତ୍ସାହିତ ହୋଇ ନୂତନ ଦେଶ ଆବିଷ୍କାର କରି ଧନରତ୍ନ ଆହରଣ କରିବାକୁ ବାହାରି ପଡ଼ିଥିଲେ । ସେହିପରି ପର୍ତ୍ତୁଗୀଜମାନେ ମଧ୍ୟ ତତ୍ପର ହୋଇ ଉଠିଥିଲେ । ୧୪୪୫ ଖ୍ରୀଷ୍ଟାବ୍ଦରେ ଆଫ୍ରିକାର ପଶ୍ଚିମ ଉପକୂଳସ୍ଥ ଭର୍ଡ଼ ଅନ୍ତରୀପ (Cape Verde) ପର୍ତ୍ତୁଗୀଜମାନଙ୍କ ଦ୍ୱାରା ଆବିଷ୍କୃତ ହୋଇଥିଲା । ବୟାଳିଶ ବର୍ଷ ପରେ, ୧୪୮୭ ଖ୍ରୀଷ୍ଟାବ୍ଦରେ ବାର୍ଥୋଲୋମିଉ ଡିଆଜ (Barthbolomeue Diaz) ନାମକ ଏକ ପର୍ତ୍ତୁଗୀଜ ନାବିକ ଆଫ୍ରିକା ମହାଦେଶର ଦକ୍ଷିଣ ଉପକୂଳବର୍ତ୍ତୀ ଆଧୁନିକ ଉତ୍ତମାଶା ଅନ୍ତରୀପରେ ଆସି ଉପସ୍ଥିତ ହୋଇଥିଲେ । ବାର ବର୍ଷ ପରେ ଭାସ୍କୋଡାଗାମା ନାମକ ଅନ୍ୟ ଜଣେ ପର୍ତ୍ତୁଗୀଜ ନାବିକ ଉକ୍ତ ଅନ୍ତରୀପ ପ୍ରଦକ୍ଷିଣ କରି ଭାରତରେ ପଦାର୍ପଣ କରିଥିଲେ (୧୪୯୮ ଖ୍ରୀଷ୍ଟାବ୍ଦରେ । ଇତି ମଧ୍ୟରେ ୧୪୯୨ ଖ୍ରୀଷ୍ଟାବ୍ଦରେ ଖ୍ରୀଷ୍ଟୋଫାର କଲମ୍ବସ୍ ନାମକ ଜଣେ ଇଟାଲୀୟ ନାବିକ ଆମେରିକା ଉପକୂଳରେ ଯାଇ ପହଞ୍ଚି ସାରିଥିଲେ ।

**କଲମ୍ବସ୍:**—ଖ୍ରୀଷ୍ଟୋଫାର କଲମ୍ବସ୍ ଇଟାଲୀ ଅନ୍ତର୍ଗତ ଜେନୋଆ ନଗରରେ ଏକ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରି-

ଥିଲେ । ସେ ମାର୍କୋପୋଲଙ୍କ ଭ୍ରମଣ ବୃତ୍ତାନ୍ତ ଦ୍ୱାରା ପ୍ରଣୋଦିତ ହୋଇ ଭାରତ ଓ ଜାପାନକୁ ଜଳପଥ ଆବିଷ୍କାର କରିବାକୁ ମନ କଲାଇଲେ । ସେଥିପାଇଁ ସେ ଇଙ୍ଗଲଣ୍ଡର ବଡ଼ଲୋକ ରାଜ୍ୟକୁ ଯାଇ ରାଜାମାନଙ୍କ ନିକଟରେ ସାହାଯ୍ୟ ପ୍ରାର୍ଥୀ ହେଲେ । ଅବଶେଷରେ ସ୍ପେନର ରାଜା ଫାର୍ଡିନାଣ୍ଡ ଓ ରାଣୀ ଇସାବେଲା ତାଙ୍କର ପ୍ରାର୍ଥନା ପୂରଣ କରି ତିନୋଟି କ୍ଷୁଦ୍ର ଜାହାଜ ଓ ୮୮ ଜଣ ନାବିକ ସାହାଯ୍ୟ କରିବାରୁ ସେ ୧୪୯୨ ଖ୍ରୀଷ୍ଟାବ୍ଦରେ ଆଟଲାଣ୍ଟିକ ମହାସାଗର ବକ୍ଷରେ ପଶ୍ଚିମ ଆଡ଼କୁ ଜଳଯାତ୍ରା ଆରମ୍ଭ କଲେ । କଲମ୍ବସ୍ ସ୍ପେନ ରାଜାଙ୍କୁ ପ୍ରତିଶ୍ରୁତି ପ୍ରଦାନ କରିଥିଲେ ଯେ ସେ ଯେଉଁ ନୂତନ ଦେଶଗୁଡ଼ିକ ଆବିଷ୍କାର କରିବେ ତାହା ସ୍ପେନ ରାଜ୍ୟର ଅଧୀନ ହେବ । ସେ ସବୁ ଦେଶରୁ ଯେଉଁ ଧନରତ୍ନ ଲାଭ ହେବ ତାହାର ଦଶଭାଗରୁ ଭାଗେ କଲମ୍ବସ୍ ପାଇବେ । ଦୁଇ ମାସରୁ ଅଧିକ କାଳ ଅତୀତ ହେଲା, ତଥାପି ସ୍ଥଳଭାଗ ଦୃଷ୍ଟିଗୋଚର ହେଲା ନାହିଁ । ନାବିକମାନେ ଅସ୍ଥିର ହୋଇ ଉଠିଲେ, କଲମ୍ବସଙ୍କୁ ହତ୍ୟା କରିବାକୁ ମନସ୍ଥ କଲେ । କଲମ୍ବସ୍ ଅତି ବିଚକ୍ଷଣତାର ସହିତ ସେମାନଙ୍କୁ ଶାନ୍ତ କରି ଅଗ୍ରସର ହେଲେ ।

ଅବଶେଷରେ ଦିନେ ଦେଖାଗଲା, ସମୁଦ୍ର ଉପରେ କେତେଗୁଡ଼ିଏ ପକ୍ଷୀ ଉଡ଼ୁଛନ୍ତି । ପକ୍ଷୀମାନେ ସ୍ଥଳଭାଗସ୍ଥିତ ବୃକ୍ଷଶାଖାରେ ବାସ କରନ୍ତି । ତେଣୁ ସ୍ଥଳଭାଗ ନିକଟବର୍ତ୍ତୀ ବୋଲି ସେମାନଙ୍କ ମନରେ ଆଶାର ସଞ୍ଚାର ହେଲା । ତାପରେ ନାବିକମାନେ ଦେଖିଲେ, ସମୁଦ୍ର ଜଳରେ ଖଣ୍ଡିଏ ବୃକ୍ଷଶାଖା ଓ ଖଣ୍ଡିଏ ପତ୍ର ଭାସୁଛି । ପୁଣି ରାତି ଦଶଘଣ୍ଟା ସମୟରେ ଅଳ୍ପ ଦୂରରେ ଗୋଟିଏ ଆଲୋକ ଦୃଷ୍ଟିଗୋଚର ହେଲା । ତାହା ଦେଖି ସେମାନଙ୍କର ଆଶା ଦୃଢ଼ୀଭୂତ ହେଲା । ପରଦିନ, ଅର୍ଥାତ୍ ୧୪୯୨ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସ ୧୨ ତାରିଖରେ ସେମାନଙ୍କ ଜାହାଜ ଗୋଟିଏ ଦ୍ୱୀପ ନିକଟରେ

ଉପସ୍ଥିତହେଲ । କଲମ୍ବସ୍ ଓ ତାଙ୍କର ସହଯାତ୍ରୀମାନଙ୍କର ଆନନ୍ଦର ସୀମା ରହିଲ ନାହିଁ । ସ୍ପେନରାଜ୍ୟର ଜାତୀୟ ପତାକା ଧରି କଲମ୍ବସ୍ ଜାହାଜରୁ ଅବତରଣ କଲେ ଓ ଉକ୍ତ ଦ୍ୱୀପର ନାମ ଦେଲେ ସାନ୍-ସାଲ୍ଭାଡର । କଲମ୍ବସ୍ ମନେକଲେ, ସେ ଭାରତ ଉପକୂଳରେ ଆସି ପହଞ୍ଚିଛନ୍ତି । ସେ ସ୍ଥାନର ଅଧିବାସୀମାନଙ୍କୁ ସେ ଭାରତୀୟ ବୋଲି ଭାବିଲେ । ସେମାନେ ଈଷତ ରକ୍ତବର୍ଣ୍ଣ ଦେଖାଯାଉଥିଲେ । ତେଣୁ ସେମାନଙ୍କୁ ଲୋହିତ ଭାରତୀୟ ବୋଲି କୁହାଗଲା । ଆଜି ପର୍ଯ୍ୟନ୍ତ ସେହି ଭ୍ରାନ୍ତ ଆଖ୍ୟା ଚାଲିଆସୁଅଛି ।



କଲମ୍ବସ

କିଛି ଦିନ ଅବସ୍ଥାନ ପରେ କଲମ୍ବସ୍ ତାଙ୍କ ସହଯାତ୍ରୀମାନଙ୍କୁ ନେଇ ଫେରି ଆସିଲେ । ସଙ୍ଗରେ ସେମାନେ ସେ ଦେଶର ନାନା ବିଚିତ୍ର ପଶୁପକ୍ଷୀ, ସୁନା, କପାତୂଳା ଓ ଦୁଇଜଣ ଲୋହିତ ଭାରତୀୟଙ୍କୁ ନମୁନାସ୍ୱରୂପ ନେଇ ଆସିଥିଲେ । ସ୍ପେନରେ କଲମ୍ବସଙ୍କୁ ସସମ୍ମାନରେ ଅଭ୍ୟର୍ଥନା କରାଗଲା । ସେହି ବର୍ଷ କଲମ୍ବସ୍ ଆଉ ଥରେ ସ୍ପେନରାଜାଙ୍କ ସାହାଯ୍ୟ ଲଭିକରି ୧୭୫ ଜାହାଜ ଓ ଦେଢ଼ ହଜାର ଲୋକଙ୍କୁ ନେଇ ଉକ୍ତ ନବାବିଷ୍କୃତ ଅଞ୍ଚଳ ଅଭିମୁଖରେ ଯାତ୍ରା କଲେ । ମୋଟ

ଉପରେ ସେ ସ୍ୱର ଥର ଜଳଯାତ୍ରା କରି କୃତକାର୍ଯ୍ୟ ହୋଇଥିଲେ । ସ୍ପେନର ରାଜା କଲମ୍ବସଙ୍କୁ ନବାବିଷ୍କୃତ ଦେଶର ଶାସନକର୍ତ୍ତା ନିଯୁକ୍ତ କରିଥିଲେ । ତାଙ୍କର ଯଶ ଚାରିଆଡ଼େ ବ୍ୟାପ୍ତ ହେବାକୁ ଲାଗିଲା । ଏଥିରେ କେତେକ ଲୋକ ଈର୍ଷାପରବଶ ହୋଇ ତାଙ୍କ ନାମରେ ନାନା ମିଥ୍ୟା ଅଭିଯୋଗ ଆଣିଲେ । ଶେଷରେ ସେ ସ୍ପେନରାଜାଙ୍କ ବିରାଗଭାଜନ ହୋଇ ବନ୍ଦୀ ହେଲେ । ତାଙ୍କର ଶେଷ ଜୀବନ ଦୁଃଖରେ ଅତିବାହିତ ହୋଇଥିଲା । ୧୫୦୬ ଖ୍ରୀଷ୍ଟାବ୍ଦର ମେ ମାସରେ କଲମ୍ବସ୍ ଦେହତ୍ୟାଗ କରିଥିଲେ । ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ବିଶ୍ୱାସ ଥିଲା ଯେ, ସେ ଭାରତକୁ ଜଳପଥ ଆବିଷ୍କାର କରି-ପାରିଛନ୍ତି । କଲମ୍ବସଙ୍କ ଆବିଷ୍କାର ଫଳରେ ଇଉରୋପରେ ଅପୂର୍ବ ଉତ୍ତେଜନା ସୃଷ୍ଟି ହେଲା । ଏହାର ଅଳ୍ପ କାଳ ପରେ ଭାସ୍କୋଡ଼ାଗାମା ଜଳପଥ ଦେଇ ଭାରତରେ ଆସି ଉପନୀତ ହେଲେ ।

**ଭାସ୍କୋଡ଼ାଗାମା:**—ଭାସ୍କୋଡ଼ାଗାମା ପର୍ତ୍ତୁଗାଲ ରାଜ୍ୟର ଖ୍ୟାତନାମା ନାବିକ । ପ୍ରାଚ୍ୟଖଣ୍ଡକୁ ଜଳପଥ ଆବିଷ୍କାର କରିବା ପାଇଁ ସେ ଅଦମ୍ୟ ଉତ୍ସାହର ସହିତ ବାହାରି ପଡ଼ିଥିଲେ । ତାଙ୍କ ପୂର୍ବରୁ ବାର୍ଥଲୋମିଉ ଡିଆଜ ନାମକ ଅନ୍ୟ ଏକ ପର୍ତ୍ତୁଗୀଜ ନାବିକ ଆଧୁନିକ ଉତ୍ତମାଶା ଅନ୍ତରୀପଠାରେ ଆସି ଉପନୀତ ହୋଇଥିବା କଥା ଆଗରୁ କୁହାଯାଇଅଛି । ଉକ୍ତ ଅନ୍ତରୀପ ନିକଟରେ ପ୍ରବଳ ଝଡ଼ ତୋଫାନ ହୁଏ । ତେଣୁ ଡିଆଜ ତାର ନାମ ଦେଇଥିଲେ "ଝଟିକା ଅନ୍ତରୀପ" Stormy Cape, । ଭୀଷଣ ଝଡ଼ ଯୋଗୁ ସେ ଅଧିକ ଦୂର ଅଗ୍ରସର ହୋଇପାରି ନ ଥିଲେ । ୧୪୯୮ ଖ୍ରୀଷ୍ଟାବ୍ଦରେ ଭାସ୍କୋଡ଼ାଗାମା ଉକ୍ତ ଅନ୍ତରୀପ ପ୍ରଦକ୍ଷିଣ କରି ଆଫ୍ରିକାର ପୂର୍ବ ଉପକୂଳ ଦେଇ ଜାଞ୍ଜିବାରଠାରୁ ପ୍ରାୟ ୩୨୦ କ: ମି: ଦୂରରେ ଥିବା

ମେଲନ୍ଦ ନାମକ ସ୍ଥାନରେ ଆସି ଉପସ୍ଥିତ ହେଲେ । କେତେକ ହିନ୍ଦୁ ନାବିକ ତାଙ୍କୁ ବାଟ ଦେଖାଇ ଭାରତକୁ ନେଇ ଆସିଲେ ।

ଭାସ୍କୋଡାଗାମା ସେହି ବର୍ଷ ମେ ମାସ ୨୭ ତାରିଖରେ କାଲିକଟ୍ ବନ୍ଦରରେ ଉପସ୍ଥିତ ହେଲେ । କାଲିକଟରେ ଜାମୋରିନ୍ ଉପାଧି-ଧାରୀ ଜଣେ ହିନ୍ଦୁ ରଜା ରାଜତ୍ୱ କରୁଥିଲେ । ଜାମୋରିନ୍ ତାଙ୍କୁ ନିଜ ଦରବାରରେ ଆଦର ସହକାରେ ଅଭ୍ୟର୍ଥନା କଲେ । ଜାମୋରିନ୍‌ଙ୍କ ବିପୁଳ ଐଶ୍ୱର୍ଯ୍ୟ ଦେଖି ଭାସ୍କୋଡାଗାମା ଅବାକ୍ ହୋଇଯାଇଥିଲେ । ରଜାଙ୍କଠାରୁ ସେ ବାଣିଜ୍ୟ କାରବାର କରିବାର ଅନୁମତି ପାଇଲେ । ସେହି ଦିନଠାରୁ ଭାରତ ସହିତ ପର୍ତ୍ତୁଗାଲର ପ୍ରତ୍ୟକ୍ଷ ସମ୍ପର୍କ ପ୍ରତିଷ୍ଠିତ ହେଲା । ପର୍ତ୍ତୁଗାଲରୁ ବଣିକମାନେ ଆସି ଭାରତରେ ସେମାନଙ୍କର ବାଣିଜ୍ୟ କାରବାର ଉତ୍ତରୋତ୍ତର ବୃଦ୍ଧି କଲେ । ୧୫୦୯ ଖ୍ରୀଷ୍ଟାବ୍ଦରେ ଆଲ-ବୁକାର୍କ ନାମକ ଜଣେ ବ୍ୟକ୍ତି ଗଭର୍ଣ୍ଣର ନିଯୁକ୍ତ ହୋଇ ପର୍ତ୍ତୁଗାଲରୁ ଭାରତକୁ ଆସିଲେ । ଆଲବୁକାର୍କ ଭାରତରେ ପର୍ତ୍ତୁଗୀଜ ପ୍ରତିପତ୍ତି ଦୃଢ଼ଭାବରେ ପ୍ରତିଷ୍ଠା କରିଥିଲେ । କାଳକ୍ରମେ ଗୋଆ, ଡାମନ୍,



ଭାସ୍କୋଡାଗାମା

ଡିଉ, ସାଲସେଟ୍, ବେସିନ୍, ବମ୍ବେ, ହୁଗ୍ଲି ପ୍ରଭୃତି ସ୍ଥାନରେ ପର୍ତ୍ତୁଗୀଜ ବାଣିଜ୍ୟକେନ୍ଦ୍ର ପ୍ରତିଷ୍ଠିତ ହେଲା । ସିଂହଳଦ୍ୱୀପରେ ମଧ୍ୟ ପର୍ତ୍ତୁଗୀଜ ପ୍ରଭାବ ବିସ୍ତୃତ ହେଲା । କିଛୁକାଳ ପରେ ପର୍ତ୍ତୁଗୀଜମାନେ ଭାରତର ଅନ୍ୟାନ୍ୟ ସ୍ଥାନରୁ ବିତାଡ଼ିତ ହେବାରୁ କେବଳ ଗୋଆ, ଡାମନ ଓ ଡିଉ ସେମାନଙ୍କର ଅଧିକାରଭୁକ୍ତ ହୋଇ ରହିଲା ।

ଭାସ୍କୋଡ଼ାଗାମାଙ୍କ ଜଳପଥ ଆବିଷ୍କାର ଫଳରେ ହିଁ ଭାରତରେ ପର୍ତ୍ତୁଗୀଜ ବାଣିଜ୍ୟ ଓ ଉପନିବେଶ ସ୍ଥାପନ ସମ୍ଭବପର ହୋଇ ପାରିଲା । କେବଳ ସେତିକି ନୁହେଁ, ଉକ୍ତ ଜଳପଥ ବ୍ୟବହାର କରି ଅନ୍ୟାନ୍ୟ ଇଉରୋପୀୟ ଜାତିର ଲୋକେ ଭାରତକୁ ଆସି ନିଜ ନିଜର ବାଣିଜ୍ୟ ବିସ୍ତାର କରିବାର ସୁଯୋଗ ପାଇଲେ ଓ କାଳକ୍ରମେ ଭାରତରେ ଇଂରେଜ ସାମ୍ରାଜ୍ୟ ପ୍ରତିଷ୍ଠିତ ହେଲା ।

**ସାର୍ ୱାଲ୍ଟର୍ ର୍ୟାଲେ:**—ଷୋଡ଼ଶ ଶତାବ୍ଦୀର ପ୍ରସିଦ୍ଧ ନାବିକମାନଙ୍କ ମଧ୍ୟରେ ସାର୍ ୱାଲ୍ଟର ର୍ୟାଲେ ଅନ୍ୟତମ । ର୍ୟାଲେ ୧୫୫୨ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡ ଅନ୍ତର୍ଗତ ଡେଭନସାୟାରରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନୁଁ ନୌଚାଳନା ପ୍ରତି ତାଙ୍କର ବିଶେଷ ଆଗ୍ରହ ଥିଲା । ୧୫୭୮ ଖ୍ରୀଷ୍ଟାବ୍ଦରେ ସେ ସମୁଦ୍ର ଯାତ୍ରା କରି ପଶ୍ଚିମ ଭାରତୀୟ ଦ୍ୱୀପପୁଞ୍ଜରେ ଉପସ୍ଥିତ ହୋଇଥିଲେ । ସେଠାରେ ସ୍ପେନୀୟ ଔପନିବେଶିକମାନଙ୍କ ସହିତ ତାଙ୍କର କଳହ ଲାଗିଥିଲା ଏବଂ ସେ ଇଂଲଣ୍ଡକୁ ଫେରି ଆସିଥିଲେ । ୧୫୮୪ ଖ୍ରୀଷ୍ଟାବ୍ଦରେ ଉତ୍ତର


ସାର ୱାଲ୍ଟର ର୍ୟାଲେ

ଆମେରିକାରେ ସେ ଭର୍ଜିନିଆ ନାମକ ଏକ ଉପନିବେଶ ସ୍ଥାପନ କରିବାକୁ ଉଦ୍ୟମ କରିଥିଲେ । ଇଙ୍ଗ୍ଲଣ୍ଡର ଲୋକେ ସେତେବେଳେ ବିଶ୍ୱାସ କରୁଥିଲେ ଯେ, ଦକ୍ଷିଣ ଆମେରିକାର ଓରିନକୋ ନଦୀ ମୁହାଣ ନିକଟରେ ସ୍ୱର୍ଣ୍ଣରାଜ୍ୟ ଅବସ୍ଥିତ । ୧୫୯୫ ଖ୍ରୀଷ୍ଟାବ୍ଦରେ ରାଲେ ଉକ୍ତ ଅଞ୍ଚଳ ଆବିଷ୍କାର କରିବାକୁ ବାହାରିଥିଲେ, ମାତ୍ର ସେପରି କୌଣସି ରାଜ୍ୟର ସନ୍ଧାନ ପାଇ ନ ଥିଲେ । ପରେ ସେ କେତେକ କାରଣରୁ ଇଂଲଣ୍ଡର ରାଜାଙ୍କର କୋପ ଦୃଷ୍ଟିରେ ପଡ଼ିଥିଲେ ଏବଂ କିଛି କାଳ ବନ୍ଦୀ ହୋଇ ରହିଥିଲେ । ଅବଶେଷରେ ୧୬୧୮ ଖ୍ରୀଷ୍ଟାବ୍ଦରେ ସେ ପ୍ରାଣଦଣ୍ଡରେ ଦଣ୍ଡିତ ହୋଇଥିଲେ । ରାଲେ ବାରମ୍ବାର ସମୁଦ୍ରଯାତ୍ରା କରି ଯେଉଁ ଅଭିଜ୍ଞତା ଅର୍ଜନ କରିଥିଲେ ଏବଂ ଯେଉଁ ଜଳପଥମାନ ବ୍ୟବହାର କରିଥିଲେ ତାହା ପରବର୍ତ୍ତୀ କାଳର ଇଂରେଜ ନାବିକମାନଙ୍କୁ ଖୁବ୍ ସାହାଯ୍ୟ କରିଥିଲା । ଉତ୍ତର ଆମେରିକାରେ ଇଂରେଜ ଉପନିବେଶ ସ୍ଥାପନ ମୂଳରେ ରାଲେଙ୍କ ପ୍ରଶଂସନୀୟ ଉଦ୍ୟମ ନିହିତ ।

**ସାମୁଦ୍ରିକ ପଥ:**—ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ଇଉରୋପୀୟମାନେ ଅନେକଗୁଡ଼ିଏ ସାମୁଦ୍ରିକ ପଥ ଆବିଷ୍କାର କରିବାକୁ ସମର୍ଥ ହୋଇଥିଲେ । ସ୍ପେନ୍ ଓ ପର୍ତ୍ତୁଗାଲ୍ ଏ ବିଗରେ ଅଗ୍ରଣୀ ହୋଇ ବାହାରିଥିଲେ । ସ୍ପେନୀୟମାନେ ପଶ୍ଚିମକୁ ଓ ପର୍ତ୍ତୁଗୀଜମାନେ ପୂର୍ବଆଡ଼କୁ ଜଳଯାତ୍ରା କରି କୃତକାର୍ଯ୍ୟ ହୋଇଥିଲେ । ପ୍ରଥମେ ପର୍ତ୍ତୁଗୀଜମାନେ ୧୪୪୫ ଖ୍ରୀଷ୍ଟାବ୍ଦରେ ଆଫ୍ରିକାର ଭର୍ଡ଼ ଅନ୍ତରୀପକୁ (Cape verd) ଜଳପଥ ଆବିଷ୍କାର କରିଥିଲେ । ଏହାର କିଛିକାଳ ପରେ ବାର୍ଥଲୋମିଉ ଡିଆଜ୍ ଉତ୍ତମାଶା ଅନ୍ତରୀପ ପର୍ଯ୍ୟନ୍ତ ଜଳପଥ ଆବିଷ୍କାର କରିବାକୁ ସମର୍ଥ ହୋଇଥିଲେ । ଡିଆଜଙ୍କ ଜଳପଥ ଅବଲମ୍ବନ କରି ଭାସ୍କୋଡାଗାମା ମାଲବାର

ଉପକୂଳବର୍ତ୍ତୀ ଭାରତର କାଲିକଟ୍ ବନ୍ଦରରେ ଉପନୀତ ହୋଇଥିଲେ । ଏହା ଫଳରେ ଇଉରୋପରୁ ଭାରତ ପର୍ଯ୍ୟନ୍ତ ସାମୁଦ୍ରିକପଥ ଆବିଷ୍କୃତ ହୋଇଥିଲା ଏବଂ ଏସିଆ ଓ ଇଉରୋପ ପରସ୍ପର ସହିତ ଜଳପଥ ଦ୍ୱାରା ସଂଯୁକ୍ତ ହୋଇ ପାରିଥିଲା । ପଶ୍ଚିମ ଦିଗରେ ଇଉରୋପରୁ ଆମେରିକାକୁ ସାମୁଦ୍ରିକ ପଥ ଆବିଷ୍କୃତ ହୋଇଥିଲା ଏବଂ ଏହା ଫଳରେ ସ୍ପେନୀୟମାନେ ମୁଖ୍ୟତଃ ଲାଭବାନ୍ ହୋଇଥିଲେ । କଲମ୍ବସ୍ ସମୁଦ୍ର ବକ୍ଷରେ ଜାପାନ ଓ ଭାରତକୁ ଆସିବା ପାଇଁ ଚେଷ୍ଟା କରି କିପରି ଆମେରିକା ଉପକୂଳରେ ଉପସ୍ଥିତ ହୋଇଥିଲେ ତାହା ପୂର୍ବରୁ ବର୍ଣ୍ଣିତ ହୋଇଅଛି ।

୧୫୧୯ ଖ୍ରୀଷ୍ଟାବ୍ଦରେ ଫାର୍ଡ଼ିନାଣ୍ଡ ମାଗେଲାନ ନାମକ ଜଣେ ପର୍ତ୍ତୁଗାଲବାସୀ ସ୍ପେନରୁ ବାହାରି ଆଟଲାଣ୍ଟିକ ମହାସାଗର ପାର ହୋଇ ପ୍ରଶାନ୍ତ ମହାସାଗର ବକ୍ଷରେ ଉପନୀତ ହେଲେ । ବହୁ କଷ୍ଟ ସ୍ୱୀକାର କରି ସେ ଅବଶେଷରେ ଆସି ଏକ ନୂତନ ଦ୍ୱୀପପୁଞ୍ଜ ଆବିଷ୍କାର କଲେ ଓ ସ୍ପେନର ତତ୍କାଳୀନ ରାଜାଙ୍କ ନାମାନୁସାରେ ତାର ନାମ ଦେଲେ ଫିଲିପାଇନ୍ । ମାଗେଲାନ ଫିଲିପାଇନରେ ନିହତ ହେଲେ ଏବଂ ତାଙ୍କ ଦଳର ଲୋକେ ଭାରତ ମହାସାଗର ବାଟେ ଆଫ୍ରିକା ପ୍ରଦକ୍ଷିଣ କରି ସ୍ପେନକୁ ଫେରି ଆସିଲେ । ସେମାନଙ୍କ ଜାହାଜର ନାମ ଭିକ୍ଟୋରିଆ (Vittoria) । ଭିକ୍ଟୋରିଆ ଭୂପ୍ରଦକ୍ଷିଣ କରିବାର ପ୍ରଥମ ଗୌରବ ଲାଭ କଲା ( ଖ୍ରୀ: ୧୫୨୨) । ୧୫୭୭ ଖ୍ରୀଷ୍ଟାବ୍ଦରେ ଫ୍ରାନସିସ୍ ଡ୍ରେକ୍ ନାମକ ଜଣେ ଇଂରେଜ ଇଂଲଣ୍ଡର ପ୍ଲାଇମାଉଥ ବନ୍ଦରରୁ ବାହାରି ଆଟଲାଣ୍ଟିକ ଓ ପ୍ରଶାନ୍ତ ମହାସାଗର ଦେଇ ଭାରତ ମହାସାଗରରେ ଆସି ଉପସ୍ଥିତ ହେଲେ ଏବଂ ଆଫ୍ରିକାର ଉତ୍ତମାଶା ଅନ୍ତରୀପ ପ୍ରଦକ୍ଷିଣ କରି ପୁନଶ୍ଚ

ମାଲାବାର ଉପକୂଳକୁ ପ୍ରତ୍ୟାବର୍ତ୍ତନ କଲେ । ପରେ ଫ୍ରାନସିସ୍ ଡ୍ରେକ୍ ନାମକ ଦ୍ୱିତୀୟ ଭୂପ୍ରଦକ୍ଷିଣକାରୀ ହୋଇ ପ୍ରସିଦ୍ଧ ।

ଏହାପରେ କ୍ରମେ କାଳକ୍ରମେ ନାନା ସାମୁଦ୍ରିକ ପଥ ଆବିଷ୍କୃତ ହୋଇ ପୃଥିବୀର ବିଭିନ୍ନ ଦେଶ ମଧ୍ୟରେ ସଂଯୋଗ ସ୍ଥାପିତ ହେଲା ।

**ସ୍ଥଳପଥ:**—ସାମୁଦ୍ରିକ ପଥ ଆବିଷ୍କୃତ ହେବା ପୂର୍ବରୁ ସ୍ଥଳପଥ ଦେଇ ବାଣିଜ୍ୟ କାରବାର ଚାଲୁଥିଲା । ଦେଶର ଆଭ୍ୟନ୍ତରୀଣ ବାଣିଜ୍ୟ ଏହି ସ୍ଥଳପଥ ଉପରେ ବିଶେଷ ଭାବରେ ନିର୍ଭର କରୁଥିଲେ । ଅବଶ୍ୟ ବର୍ତ୍ତମାନ ଯୁଗର ସ୍ଥଳପଥ ପରି ପୂର୍ବକାଳର ସ୍ଥଳପଥଗୁଡ଼ିକ ସୁବିଧାଜନକ ନ ଥିଲା । ପକ୍କା ରାସ୍ତା ଖୁବ୍ କମ୍ ଥିଲା । ବହିର୍ବାଣିଜ୍ୟ ପାଇଁ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ପଥ ଥିଲା । ଆମ ଦେଶକୁ ବିଦେଶୀ ଆକ୍ରମଣକାରୀମାନେ ପ୍ରଥମେ ସ୍ଥଳପଥ ଦେଇ ଆସୁଥିଲେ । ଗଜନୀ, ଘୋର, ସମରକନ୍ଦ ଓ କାବୁଲରୁ ମୁସଲମାନ ଆକ୍ରମଣକାରୀମାନେ ଭାରତର ଉତ୍ତର ପଶ୍ଚିମ ପ୍ରାନ୍ତରେ ଥିବା ସ୍ଥଳପଥ ଅତିକ୍ରମକରି ଏ ଦେଶରେ ପ୍ରବେଶ କରିଥିଲେ ।

ବହୁ ପୂର୍ବକାଳରୁ ପାଶ୍ଚାତ୍ୟଖଣ୍ଡ ସହିତ ଭାରତର ବାଣିଜ୍ୟ ସମ୍ପର୍କ ପ୍ରତିଷ୍ଠିତ ଥିଲା । ବଣିକମାନେ ଭାରତରୁ ନାନା ପଦାର୍ଥ ନେଇ ଆଫଗାନିସ୍ଥାନ, ପାରସ୍ୟ, ଆରବ ଓ ତୁରସ୍କ ଦେଇ ଇଉରୋପକୁ ଯାଉଥିଲେ । ଭାରତୀୟ ବସ୍ତ୍ର ବିଦେଶରେ ଅଧିକ ପରିମାଣରେ ବିକ୍ରି ହେଉଥିଲା । ଭାରତରୁ ପାଶ୍ଚାତ୍ୟଖଣ୍ଡକୁ ପ୍ରଚୁର ମସଲା ରପ୍ତାନି ହେଉଥିଲା । ରୋମ ଏବଂ ଅନ୍ୟାନ୍ୟ ପାଶ୍ଚାତ୍ୟ ଦେଶରେ ଭାରତୀୟ ମରିଚର ବିଶେଷ ଆଦର ଥିଲା । କଥିତ ଅଛି, ଗଥ୍‌ଦଳପତି ଆଲରିକ ରୋମନଗରୀ ଦଖଲ କରି ପ୍ରାପ୍ୟ ହେଉଥିବା ହଜାର

କ. ଗ୍ରାମ୍ ଓଜନର ଗ୍ରନ୍ଥଣପୃ ମଣନ ହସ୍ତଗତ କରିଥିଲେ । ମାର୍କୋପୋଲୋ ଓ ତାଙ୍କର ସହଯାତ୍ରୀ ନିକୋଲସ ଏବଂ ମାଫିଓ ସ୍ଥଳପଥ ଦେଇ ସମଗ୍ର ଏସିଆଖଣ୍ଡର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଭ୍ରମଣ କରିଥିଲେ । ମାଲେଷ୍ଟାଇନ୍, ଆର୍ମେନିଆ, ମେସୋପୋଟେମିଆ, ପାରସ୍ୟ, ବଲ୍‌ଖ, କାଶଗଡ଼, ଖୋଟାନ୍ ପ୍ରଭୃତି ଦେଇ ସେମାନେ ଚୀନର ସେଙ୍ଗ ସହରରେ ଆସି ଉପସ୍ଥିତ ହୋଇଥିଲେ । ଇଉରୋପରୁ ଭାରତକୁ ଜଳପଥ ଆବିଷ୍କାର ହେଲାପରେ ସ୍ଥଳପଥର ଗୁରୁତ୍ୱ ହ୍ରାସ ପାଇଥିଲା ।

**ସାମୁଦ୍ରିକ ବାଣିଜ୍ୟ:**—ଜଳପଥମାନ ଆବିଷ୍କୃତ ହେବା ଫଳରେ ବାଣିଜ୍ୟର ବିସ୍ତାର ଘଟିଲା । ଇଉରୋପୀୟମାନେ ପୃଥିବୀର ନାନା ଅଞ୍ଚଳକୁ ଯାଇ ବାଣିଜ୍ୟ କାରବାରରେ ନିୟୁକ୍ତ ହେଲେ । ସେମାନେ ବିଭିନ୍ନ ସ୍ଥାନରେ ଉପନିବେଶମାନ ସ୍ଥାପନ କଲେ । ପ୍ରଥମେ ପର୍ତ୍ତୁଗୀଜ ଓ ସ୍ପେନୀୟମାନେ ଏ ବିଷୟରେ ବିଶେଷ ତତ୍ପରତା ପ୍ରକାଶ କରିଥିଲେ । ପୂର୍ବରୁ କୁହାଯାଇଛି, ଉତ୍ତମାଶା ଅନ୍ତରୀପ ବାଟେ ଭାରତକୁ ଏକ ନୂତନ ସାମୁଦ୍ରିକ ପଥ ଆବିଷ୍କୃତ ହେଲା । ଏହି ଜଳପଥର ଆବିଷ୍କାର ପରେ ପର୍ତ୍ତୁଗୀଜମାନେ ଜାଞ୍ଜିବାର ଦ୍ୱୀପ ଓ ପୂର୍ବ ଆଫ୍ରିକାର ଉପକୂଳଭୂମି ଉପରେ କର୍ତ୍ତୃତ୍ୱ ବିସ୍ତାର କଲେ । ଭାରତ, ସିଂହଳ ଓ ଚୀନରେ ସେମାନଙ୍କର ବାଣିଜ୍ୟ ବ୍ୟବସାୟ ଚାଲିଲା । ନବାବିଷ୍କୃତ ଆମେରିକା ଭୂଖଣ୍ଡରୁ ଧନ ଆହରଣ କରିବାକୁ ଯାଇ ସ୍ପେନ ଓ ପର୍ତ୍ତୁଗାଲ ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହେଲା । ସ୍ପେନୀୟମାନେ ଉକ୍ତ ଅଞ୍ଚଳରୁ ପ୍ରଚୁର ସୁନା-ରୂପା ଜାହାଜରେ ବୋଝେଇକରି ନିଜ ଦେଶକୁ ଆଣିଲେ ଏବଂ ସ୍ପେନର ସମୃଦ୍ଧ ଧନକୁ ଧନ ବୃଦ୍ଧି ପାଇଲା । ତାହା ଦେଖି ଅନ୍ୟାନ୍ୟ ଇଉରୋପୀୟ ଜାତିର ଲୋକେ ଉତ୍କଣ୍ଠିତ ହୋଇ ବାଣିଜ୍ୟ

କାରବାରରେ ଲାଗିଗଲେ । ଫଳେ ଆମ ଭାରତବର୍ଷ ଏହି ଇଉରୋପୀୟ ବଣିକମାନଙ୍କର ବିସ୍ତୃତ ବାଣିଜ୍ୟ କ୍ଷେତ୍ରରେ ପରିଣତ ହେଲା ।

**ପାଶ୍ଚାତ୍ୟ ପ୍ରଭାବ** :—ପ୍ରାଚ୍ୟଖଣ୍ଡରେ ପାଶ୍ଚାତ୍ୟ ପ୍ରଭାବ କ୍ରମେ କ୍ରମେ ବୃଦ୍ଧିଲାଭ କଲା । ବିଶେଷତଃ, ଭାରତବର୍ଷରେ ବିଭିନ୍ନ ଇଉରୋପୀୟ ବଣିକଦଳ ନିଜ ନିଜ ମଧ୍ୟରେ ତୁମୁଳ ପ୍ରତିଦ୍ୱନ୍ଦିତା ଆରମ୍ଭ କଲେ । ୧୬୦୦ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ, ୧୬୦୨ ଖ୍ରୀଷ୍ଟାବ୍ଦରେ ଓଲନ୍ଦାଜମାନେ, ୧୬୧୬ ଖ୍ରୀଷ୍ଟାବ୍ଦରେ ଦିନାମାରମାନେ, ୧୬୬୪ ଖ୍ରୀଷ୍ଟାବ୍ଦରେ ଫରାସୀମାନେ, ୧୭୨୨ ଖ୍ରୀଷ୍ଟାବ୍ଦରେ ଫ୍ଲାଣ୍ଡାର୍ସବାସୀମାନେ ଓ ୧୭୩୧ ଖ୍ରୀଷ୍ଟାବ୍ଦରେ ସ୍ୱିଡେନ-ବାସୀ ବଣିକମାନେ ଭାରତ ସହିତ ବାଣିଜ୍ୟ କରିବା ପାଇଁ କୋମ୍ପାନୀମାନ ଗଠନ କଲେ । ଶେଷୋକ୍ତ କୋମ୍ପାନୀଦ୍ୱୟ ଭାରତରେ ଉପଯୁକ୍ତ ବାଣିଜ୍ୟ ସୁବିଧା କରିବାକୁ ସମର୍ଥ ହେଲେ ନାହିଁ । ଦିନାମାରମାନଙ୍କୁ ମଧ୍ୟ ଶୀଘ୍ର ଭାରତୀୟ ବାଣିଜ୍ୟକ୍ଷେତ୍ରରୁ ବିଦାୟ ନେବାକୁ ପଡ଼ିଲା । ଅବଶେଷରେ ଦୁଇଟି ମାତ୍ର ଇଉରୋପୀୟ ବଣିକଦଳ ଏ ଦେଶରେ ପ୍ରତିପତ୍ତିଶାଳୀ ହୋଇ ରହିଲେ । ବହୁକାଳ ଧରି ଏହି ଦୁଇ ଦଳ ମଧ୍ୟରେ ତୁମୁଳ ସଂଘର୍ଷ ଓ ପ୍ରତିଯୋଗିତା ଚାଲିଲା ଏବଂ ଶେଷରେ ଇଂରେଜମାନଙ୍କର ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲା ।

**ଦିନାମାର ବାଣିଜ୍ୟ**:—ଡେନମାର୍କ ଦେଶର ବଣିକଦଳ ୧୬୧୬ ଖ୍ରୀଷ୍ଟାବ୍ଦରେ ଗୋଟିଏ କୋମ୍ପାନୀ ଗଠନ କରି ଭାରତରେ ବାଣିଜ୍ୟ କରିବାକୁ ଆସିଲେ । ସେମାନେ ଶ୍ରୀରାମପୁର ଓ ତ୍ରିବାଙ୍କୁଡ଼-ଠାରେ ବାଣିଜ୍ୟକୋଠି ସ୍ଥାପନ କଲେ । କିନ୍ତୁ ବାଣିଜ୍ୟ କାରବାରରେ ସେମାନେ ବିଶେଷ କୃତିତ୍ୱ ଅର୍ଜନ କରିବାକୁ ସମର୍ଥ ହେଲେ ନାହିଁ ।

ତେଣୁ ସେମାନଙ୍କର ବାଣିଜ୍ୟ କୋଠିମାନ ଇଂରେଜମାନଙ୍କୁ ହସ୍ତାନ୍ତର କରିଦେଇ ସେମାନେ ଊନବିଂଶ ଶତାବ୍ଦୀର ଦ୍ୱିତୀୟ ପାଦରେ ଭାରତ ତ୍ୟାଗକରି ଚାଲିଗଲେ ।

ପର୍ତ୍ତୁଗୀଜ:—ଭାସ୍କୋଡ଼ାଗାମାଙ୍କ ଭାରତ ଆଗମନର ଅଳ୍ପକାଳ ପରେ ପର୍ତ୍ତୁଗୀଜମାନେ ଏ ଦେଶରେ ଅନେକଗୁଡ଼ିଏ ବାଣିଜ୍ୟ କୋଠି ସ୍ଥାପନ କରିବାକୁ ସମର୍ଥ ହେଲେ । ୧୫୦୩ ଖ୍ରୀଷ୍ଟାବ୍ଦରେ ଆଲଫୋନ୍‌ସୋ ଆଲବୁକାର୍କ ନାମକ ଜଣେ ନୌସେନାପତି ଭାରତକୁ ଆସି ନିଜର କର୍ମଦକ୍ଷତା ବଳରେ ୧୫୦୯ ଖ୍ରୀଷ୍ଟାବ୍ଦରେ ଭାରତର ପର୍ତ୍ତୁଗୀଜ ଶାସକ ବା ଗଭର୍ଣ୍ଣରରୂପେ ନିଯୁକ୍ତ ହେଲେ । ପୂର୍ବାଞ୍ଚଳରେ ଏକ ପର୍ତ୍ତୁଗୀଜ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ତାଙ୍କର ଲକ୍ଷ୍ୟ ଥିଲା । ଉକ୍ତ ଉଦ୍ଦେଶ୍ୟ ସାଧନ ପାଇଁ ସେ ୧୫୧୦ ଖ୍ରୀଷ୍ଟାବ୍ଦରେ ବିଜାପୁର ସୁଲତାନଙ୍କ ରାଜ୍ୟଭୁକ୍ତ ଗୋଆ ବନ୍ଦର ଦଖଲ କରି ତାକୁ ପ୍ରଧାନ ବାଣିଜ୍ୟ କେନ୍ଦ୍ରରେ ପରିଣତ କରିଥିଲେ । ସେତେବେଳେ ମାଲୟ ଅନ୍ତର୍ଗତ ମାଲକ୍କା ଏକ ପ୍ରସିଦ୍ଧ ବନ୍ଦର ଥିଲା । ୧୫୧୧ ଖ୍ରୀଷ୍ଟାବ୍ଦରେ ଆଲବୁକାର୍କ ମାଲକ୍କା ଅଧିକାର କଲେ । ଚାରିବର୍ଷ ପରେ ତାଙ୍କର ମୃତ୍ୟୁ ହେଲା । ତାଙ୍କ ଅନ୍ତେ ପର୍ତ୍ତୁଗୀଜମାନେ ଭାରତରେ ଡିଉ, ଡାମନ, ସାଲସେଟ, ବେସିନ୍, ଚୌଲ୍, ବମ୍ବେ, ସାନ୍‌ଥୋମ୍ (ମାଦ୍ରାଜ ନିକଟବର୍ତ୍ତୀ) ଓ ହୁଗ୍ଲି ଅଧିକାର କରି କ୍ଷମତାଶାଳୀ ହେଲେ । ଭାରତ ଛଡ଼ା ସିଂହଳରେ ମଧ୍ୟ ସେମାନେ ବେଶ୍ ପ୍ରତିପତ୍ତିଶାଳୀ ହେବାକୁ ସମର୍ଥ ହୋଇଥିଲେ । କାଳକ୍ରମେ ତନ୍ମଧ୍ୟରୁ ଅଧିକାଂଶ ସ୍ଥାନ ସେମାନଙ୍କର ହସ୍ତଚ୍ୟୁତ ହେଲା । କେବଳ ଗୋଆ, ଡାମନ ଓ ଡିଉ ସେମାନଙ୍କର ଅଧିକାରଭୁକ୍ତ ହୋଇ ରହିଲା । ପ୍ରାୟ ଚାରିଶହ ବର୍ଷ ପରେ ୧୯୬୧ ମସିହା

ଡିସେମ୍ବର ମାସରେ ଗୋଆ, ଡାମନ ଓ ଡିଉ ପର୍ତ୍ତୁଗୀଜ ଶାସନରୁ ମୁକ୍ତ ହୋଇ ଭାରତ ସହ ମିଶିଲା ।

**ପର୍ତ୍ତୁଗୀଜମାନଙ୍କର ପତନ:**—ଅଷ୍ଟାଦଶ ଶତାବ୍ଦୀ ବେଳକୁ ପର୍ତ୍ତୁଗୀଜମାନଙ୍କର ପତନ ଘଟିଥିଲା । ୧୭୩୯ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନେ ସାଲସେଟ୍ ଓ ବେସିନ୍ ସେମାନଙ୍କଠାରୁ ଛଡ଼ାଇ ନେଲେ । ସାହାଜାହାନଙ୍କ ଶାସନରେ ସେମାନେ ହୁଗୁଳି ହରାଇ ସାରିଥିଲେ । ପର୍ତ୍ତୁଗୀଜମାନଙ୍କ ପତନର ପ୍ରଧାନ କାରଣ ସେମାନଙ୍କର ଉଗ୍ର ଧର୍ମବିଦ୍ୱେଷ । ସେଥିପାଇଁ ସେମାନେ ଏ ଦେଶରେ ବହୁ ଅପ୍ରିୟ ହୋଇ ପଡ଼ିଥିଲେ । ଦ୍ୱିତୀୟତଃ, ଅନ୍ୟାନ୍ୟ ଇଉରୋପୀୟ ଜାତିମାନଙ୍କର ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ଆଗରେ ସେମାନେ ମୁଣ୍ଡ ଟେକି ପାରିଲେ ନାହିଁ । ତା ଛଡ଼ା, ବ୍ରାଜିଲ ଦେଶ ଆବିଷ୍କୃତ ହେବା ପରେ ପର୍ତ୍ତୁଗୀଜମାନେ କ୍ରମେ ପଶ୍ଚିମ ଆଡ଼କୁ ଅଧିକ ଆକୃଷ୍ଟ ହୋଇ ପଡ଼ିଲେ ଏବଂ ସେଠାରେ ଉପନିବେଶ ସ୍ଥାପନ ପାଇଁ ଉଦ୍ୟମ କଲେ ।

**ଡଚ୍ ବା ଓଲନ୍ଦାଜ:**—୧୬୦୨ ଖ୍ରୀଷ୍ଟାବ୍ଦରେ ଡଚ୍ ବା ଓଲନ୍ଦାଜମାନେ "ସମ୍ମିଳିତ ପୂର୍ବ ଭାରତୀୟ କୋମ୍ପାନୀ" (The United East India Company of the Netherlands) ନାମରେ ଏକ କୋମ୍ପାନୀ ଗଠନ କରି ଭାରତକୁ ବାଣିଜ୍ୟ କରିବାକୁ ଆସିଲେ । ପର୍ତ୍ତୁଗୀଜମାନଙ୍କ ସହିତ ସେମାନଙ୍କର ଘୋର ସଂଘର୍ଷ ଉପସ୍ଥିତ ହେଲା । ମସଲା ଦ୍ୱୀପ (Spice Islands)ରେ ସେମାନେ ପର୍ତ୍ତୁଗୀଜ ପ୍ରତିପତ୍ତି ଲୋପ କରି ସିଂହଳରେ ମଧ୍ୟ ୧୬୫୮ ଖ୍ରୀଷ୍ଟାବ୍ଦରେ ପର୍ତ୍ତୁଗୀଜ ପ୍ରଭାବ ଧ୍ୱଂସ କଲେ । ତା ପରେ ସେମାନେ ସୁମାତ୍ରା, ଜାଭା ପ୍ରଭୃତି ସ୍ଥାନରେ ବାଣିଜ୍ୟ ବିସ୍ତାର କଲେ । କ୍ରମେ କ୍ରମେ ସେମାନେ ଭାରତକୁ ଆସି ଗୁଜରାଟ, ବଙ୍ଗ, ବିହାର ଏବଂ ଓଡ଼ିଶାରେ ବାଣିଜ୍ୟ କାରବାର ଚଳାଇଲେ । ସେମାନଙ୍କର ପ୍ରଧାନ ବାଣିଜ୍ୟ

କେନ୍ଦ୍ର ଥିଲା ପୁଲିକାଟ୍, ସୁରଟ, ଚୀନସୁରା, କାସିମବଜାର, ପାଟନା, ବାଲେଶ୍ୱର, ନାଗାପଟ୍ଟମ୍ ଓ କୋଚିନ୍ । ଇଂରେଜମାନଙ୍କ ସହିତ ଭାରତରେ ସେମାନଙ୍କର ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇଥିଲା । ୧୭୫୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହି ପ୍ରତିଦ୍ୱନ୍ଦ୍ୱିତା ଲାଗି ରହିଥିଲା ।

**ଇଂରେଜ ଇଷ୍ଟଇଣ୍ଡିଆ କୋମ୍ପାନୀ**—୧୬୦୦ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡର ତତ୍କାଳୀନ ରାଣୀ ପ୍ରଥମ ଏଲିଜାବେଥଙ୍କ ଅମଳରେ ଇଂରେଜମାନେ ଇଷ୍ଟଇଣ୍ଡିଆ କୋମ୍ପାନୀ ନାମକ ଏକ ବଣିକଦଳ ଗଠନ କରି ଏବଂ ରାଣୀଙ୍କଠାରୁ ସନନ୍ଦଲାଭ କରି ପୂର୍ବାଞ୍ଚଳରେ ବାଣିଜ୍ୟ କରିବାକୁ ଆସିଲେ । ୧୬୦୯ ଖ୍ରୀଷ୍ଟାବ୍ଦରେ ଉକ୍ତ କୋମ୍ପାନୀ କପ୍ତାନ ହକିନ୍ସ ନାମକ ଜଣେ ବ୍ୟକ୍ତିଙ୍କୁ ଭାରତରେ ବାଣିଜ୍ୟଗତ ସୁବିଧାଲାଭ କରିବାପାଇଁ ସମ୍ରାଟ ଜାହାଙ୍ଗୀରଙ୍କ ଦରବାରକୁ ପ୍ରେରଣ କଲେ । ମାତ୍ର ହକିନ୍ସ ସଫଳକାମ ହୋଇପାରିଲେ ନାହିଁ । ୧୬୧୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ସୁରଟଠାରେ ପ୍ରଥମ ବାଣିଜ୍ୟ କୋଠି ପ୍ରତିଷ୍ଠା କଲେ । ୧୬୧୫ ଖ୍ରୀଷ୍ଟାବ୍ଦରେ ଇଂରେଜ ରାଜଦୂତ ସାର୍ ଟମାସ୍ ରୋ ଭାରତକୁ ଆସି ସ୍ୱଦେଶୀୟ ବଣିକମାନଙ୍କ ପାଇଁ କେତେକ ବାଣିଜ୍ୟ ସୁବିଧାଲାଭ କରି ପାରିଥିଲେ । ୧୬୩୯ ଖ୍ରୀ:ରେ ଫ୍ରାନ୍ସିସ ଡେ ନାମକ ଜଣେ ଇଂରେଜ କରମଣ୍ଡଳ ଉପକୂଳରେ କିଛି ଜମି ଇଜରା ନେଇ ସେଠାରେ ଏକ ବାଣିଜ୍ୟକୋଠି ଓ ଦୁର୍ଗ ନିର୍ମାଣ କଲେ । ପରେ ଉକ୍ତ ସ୍ଥାନ ମାନ୍ଦ୍ରାଜସହର ନାମରେ ପ୍ରସିଦ୍ଧ ହେଲା ।

୧୬୬୧ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡର ଦ୍ୱିତୀୟ ଚାର୍ଲସ ପର୍ତ୍ତୁଗୀଜ ରାଜକନ୍ୟା କ୍ୟାଥେରିନଙ୍କୁ ବିବାହ କରି ଯୌତୁକ ସ୍ୱରୂପ ବମ୍ବେ ଦ୍ୱୀପ ଲାଭକଲେ ଓ ତାହା ଇଷ୍ଟଇଣ୍ଡିଆ କୋମ୍ପାନୀକୁ ହସ୍ତାନ୍ତରିତ କରିଦେଲେ । ୧୬୯୦ ଖ୍ରୀଷ୍ଟାବ୍ଦରେ ଜବ୍ ଚାର୍ଣ୍ଣକ୍ ନାମକ ଜନୈକ ଇଂରେଜ କର୍ମଚାରୀ ସୁତାନଟୀ, ଗୋବିନ୍ଦପୁର ଓ କାଳୀଘାଟ ନାମକ

ସୂତାନୁଟି ଗ୍ରାମର ଜମିଦାରଙ୍କ ଠାରୁ କିଣି ସେଠାରେ "ଫୋର୍ଟଉଇଲିୟମ ଦୁର୍ଗ" ପ୍ରତିଷ୍ଠା କଲେ । ପରେ ଏହି ସୂତାନୁଟି ଗ୍ରାମ କଲିକତା ମହାନଗରୀରେ ପରିଣତ ହୋଇଥିଲା । ଏହିପରି ଭାବରେ ଇଂରେଜମାନେ ମାନ୍ଦ୍ରାଜ, ବମ୍ବେ ଓ କଲିକତାରେ ସେମାନଙ୍କର ପ୍ରଧାନ ବାଣିଜ୍ୟ କେନ୍ଦ୍ର ପ୍ରତିଷ୍ଠା କଲେ ।

ଇଷ୍ଟଇଣ୍ଡିଆ କୋମ୍ପାନୀ ପ୍ରଚୁର ଲାଭ କରିବାର ଦେଖି ଇଂଲଣ୍ଡରେ ଅନ୍ୟ ଏକ କୋମ୍ପାନୀ ଗଠିତ ହେଲା । ୧୬୯୮ ଖ୍ରୀ: ରେ ଏହି କୋମ୍ପାନୀ ରାଜକୀୟ ସନନ୍ଦ ଲାଭ କରି ଏ ଦେଶକୁ ବାଣିଜ୍ୟ କରିବାକୁ ଆସିଲେ । ଫଳତଃ ଦୁଇଟି ଇଂରେଜ କୋମ୍ପାନୀ ଭାରତରେ ବାଣିଜ୍ୟ କାରବାରରେ ପ୍ରବୃତ୍ତ ହେଲେ । କ୍ରମେ ସେମାନଙ୍କ ମଧ୍ୟରେ ନାନା ବାଦ-ବିବାଦ ଉପସ୍ଥିତ ହେଲା । ଅବଶେଷରେ ଉଭୟ କୋମ୍ପାନୀ ସମ୍ମିଳିତ ହୋଇ "ଇଉନାଇଟେଡ୍ ଇଷ୍ଟଇଣ୍ଡିଆ କୋମ୍ପାନୀ" ନାମରେ ପରିଚିତ ହେଲେ ଏବଂ ବାଣିଜ୍ୟର ଉନ୍ନତି ଦିଗରେ ମନୋନିବେଶ କଲେ ।

**ଫରାସୀ ବଣିକଦଳ:**—ଫରାସୀ ସମ୍ରାଟ୍ ଚତୁର୍ଦ୍ଦଶ ଲୁଇଙ୍କ ରାଜତ୍ୱକାଳରେ ମନ୍ତ୍ରୀ କୋଲବାର୍ଟଙ୍କ ପୃଷ୍ଠପୋଷକତାରେ ୧୬୬୪ ଖ୍ରୀଷ୍ଟାବ୍ଦରେ ଗୋଟିଏ ବଣିକଦଳ ଫ୍ରାନ୍ସରେ ଗଠିତହେଲା । ତାହାର ନାମ ହୋଇଥିଲା "Compagnie des Indes Orientales" ବା ଫରାସୀ ଇଷ୍ଟଇଣ୍ଡିଆ କୋମ୍ପାନୀ । ୧୬୬୮ ଖ୍ରୀଷ୍ଟାବ୍ଦରେ ସେମାନଙ୍କର ପ୍ରଥମ ବାଣିଜ୍ୟ କୋଠି ସୁରାଟ୍‌ରେ ପ୍ରତିଷ୍ଠିତ ହେଲା । ପରବର୍ଷ ସେମାନେ ମସଲିପଟ୍ଟମଠାରେ ଅନ୍ୟ ଏକ ବାଣିଜ୍ୟ କେନ୍ଦ୍ର ଖୋଲିଲେ । ୧୬୭୪ ଖ୍ରୀଷ୍ଟାବ୍ଦରେ ମାର୍ଟିନ ନାମକ ଏକ ବ୍ୟକ୍ତିଙ୍କ ନେତୃତ୍ୱରେ ମାନ୍ଦ୍ରାଜର ପଣ୍ଡିଚେରୀ ନାମକ ସ୍ଥାନରେ ଏକ ଫରାସୀ ଉପନିବେଶ ପ୍ରତିଷ୍ଠିତ ହେଲା । ସେହି ବର୍ଷ ବଙ୍ଗଳାର ନବାବ୍

ସାଇସ୍ତାଖାଁଙ୍କଠାରୁ ଚନ୍ଦନ ନଗର ନାମକ ସ୍ଥାନ ପଟ୍ଟା ନେଇ ଫରାସୀମାନେ ସେଠାରେ ଏକ ବାଣିଜ୍ୟ କୋଠି ପ୍ରତିଷ୍ଠା କଲେ । ଏହାପରେ ଫରାସୀ ବଣିକ ଦଳର ଅବସ୍ଥା ଶୋଚନୀୟ ହୋଇ ପଡ଼ିଲା । ୧୭୨୦ ଖ୍ରୀଷ୍ଟାବ୍ଦରେ ତାହା ପୁନର୍ଗଠିତ ହୋଇ ଉନ୍ନତି ମାର୍ଗରେ ଅଗ୍ରସର ହେଲା । ଫରାସୀମାନେ ମରିଶସ୍ ଦ୍ୱୀପ ଅଧିକାର କଲେ । ୧୭୨୫ ଖ୍ରୀଷ୍ଟାବ୍ଦରେ ସେମାନେ ମାଲାବାର ଉପକୂଳସ୍ଥ ମାହେଠାରେ ଏବଂ ୧୭୩୯ ଖ୍ରୀଷ୍ଟାବ୍ଦରେ କରମଣ୍ଡଳ ଉପକୂଳସ୍ଥ କାରିକଲଠାରେ ବାଣିଜ୍ୟକେନ୍ଦ୍ର ପ୍ରତିଷ୍ଠା କଲେ । ବାଣିଜ୍ୟ କାରବାର କରୁଁ କରୁଁ ସେମାନେ ଭାରତରେ ଫରାସୀ ସାମ୍ରାଜ୍ୟ ଗଠନର ସ୍ୱପ୍ନ ଦେଖିଲେ । ଡୁପ୍ଲେ (Dupleix) ନାମକ ଏକ ବିଚକ୍ଷଣ ବ୍ୟକ୍ତିଙ୍କ ନେତୃତ୍ୱରେ ସେମାନେ ଭାରତୀୟ ରାଜନୀତି କ୍ଷେତ୍ରରେ ପ୍ରଭୁତ୍ୱ ଲାଭ କରିବାକୁ ଚେଷ୍ଟା କଲେ । ଏହି ସୂତ୍ରରେ ଇଂରେଜମାନଙ୍କ ସହିତ ସେମାନଙ୍କର ପ୍ରବଳ ସଂଘର୍ଷ ଉପସ୍ଥିତ ହେଲା । ସେଥିରେ ଇଂରେଜମାନେ ଅବଶେଷରେ ଜୟଯୁକ୍ତ ହେବାରୁ ଭାରତ ଇତିହାସରେ ଏକ ନୂତନ ଯୁଗର ଆରମ୍ଭ ହେଲା ।

**ବିଦେଶୀ ଶକ୍ତିପୁଞ୍ଜ ମଧ୍ୟରେ ଇଂରେଜଶକ୍ତିର ପ୍ରାଧାନ୍ୟ ପ୍ରତିଷ୍ଠା** (Emergence of the English as the leading foreign Power):—ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ବାଣିଜ୍ୟ ବ୍ୟବସାୟକୁ ନେଇ ଫରାସୀ ଓ ଇଂରେଜ କୋମ୍ପାନୀଙ୍କ ମଧ୍ୟରେ ଯେଉଁ ସଂଘର୍ଷ ଉପସ୍ଥିତ ହେଲା, ତାହା ଅଚିରେ ସାମ୍ରାଜ୍ୟ ପ୍ରତିଷ୍ଠା ଦିଗରେ ପ୍ରବଳ ବିବାଦରେ ପରିଣତ ହେଲା । ମୋଗଲ ସାମ୍ରାଜ୍ୟ ସେତେବେଳେ ଛିନ୍ନଭିନ୍ନ । ହିନ୍ଦୁ ଓ ମୁସଲମାନ ରାଜାମାନେ ପରସ୍ପର ସହିତ ବିବାଦରେ ଲାଗି ରହିଥାନ୍ତି । ଭାରତର ଏହି ବିଶୃଙ୍ଖଳ ରାଜନୈତିକ ଅବସ୍ଥାର ସୁଯୋଗ ନେଇ ବୁଦ୍ଧିମାନ୍ [illegible]

ଏ ତେଣେ ଫରାସୀ ସାମ୍ରାଜ୍ୟ ପ୍ରତିଷ୍ଠା କରିବାକୁ ଉଦ୍ୟମ ଆରମ୍ଭ କଲେ । ୧୭୪୦ ଖ୍ରୀଷ୍ଟାବ୍ଦରେ ୟୁରୋପରେ ଅଷ୍ଟ୍ରୀୟ ଉତ୍ତରାଧିକାର ସମ୍ବନ୍ଧ ଯୁଦ୍ଧ ( War of Austrian Succession ) ଆରମ୍ଭ ହେଲା । ତହିଁରେ ଇଂଲଣ୍ଡ ଓ ଫ୍ରାନସ ବିଭିନ୍ନ ପକ୍ଷରେ ଯୋଗ ଦେଲେ । ଏହି ଯୁଦ୍ଧ ଭାରତକୁ ମଧ୍ୟ ବ୍ୟାପିଲା ।

ଇଂରେଜମାନଙ୍କର ନୌଶକ୍ତି ପ୍ରବଳ ଥିଲା । ଡୁପ୍ଲେ ଫରାସୀ ଜାହାଜଗୁଡ଼ିକ ରକ୍ଷା କରିବାକୁ କର୍ଣ୍ଣାଟର ନବାବଙ୍କୁ ଆବେଦନ କଲେ । ନବାବ ତଦନୁସାରେ ଇଂରେଜମାନଙ୍କୁ ସତର୍କ କରିଦେଲେ, ମାତ୍ର ଇଂରେଜମାନେ ସେଥିରେ କର୍ଣ୍ଣପାତ କଲେ ନାହିଁ । ଡୁପ୍ଲେଙ୍କ ଅନୁରୋଧ କ୍ରମେ ମରିଶସ୍‌ର ଫରାସୀ ଶାସନକର୍ତ୍ତା 'ଲାବୁରଡନେ' ଅଠଟି ଜାହାଜ ନେଇ ସାହାଯ୍ୟ କରିବାକୁ ଆସିଲେ । ଫରାସୀମାନେ ଇଂରେଜମାନଙ୍କର ବାଣିଜ୍ୟକେନ୍ଦ୍ର ମାନ୍ଦ୍ରାଜ ଅବରୋଧ କଲେ ।

ଇଂରେଜ ନୌସେନାପତି ଏହା ପୂର୍ବରୁ ମାନ୍ଦ୍ରାଜ ଉପକୂଳ ଛାଡ଼ି ଦୂରକୁ ବାହାରି ଯାଇଥିଲେ । ଇଂରେଜମାନେ ନବାବଙ୍କ ସାହାଯ୍ୟପ୍ରାର୍ଥୀ ହେଲେ । ନବାବ ଡୁପ୍ଲେଙ୍କୁ ମାନ୍ଦ୍ରାଜ-ଅବରୋଧ ପରିତ୍ୟାଗ କରିବାକୁ କହିଲେ, କିନ୍ତୁ ଡୁପ୍ଲେଙ୍କୁ ଉତ୍ତର ଦେଲେ ଯେ ସେ ମାନ୍ଦ୍ରାଜ ଦଖଲ କରି ନବାବଙ୍କ ହାତରେ ଅର୍ପଣ କରିଦେବେ । ପ୍ରକୃତରେ ଡୁପ୍ଲେଙ୍କ ଉଦ୍ଦେଶ୍ୟ ତାହା ନ ଥିଲା । ନବାବ ଅନ୍ୱାରୁଦ୍ଦିନ ମଧ୍ୟ ତାହା ବିଶ୍ୱାସ କଲେ ନାହିଁ । ମାତ୍ର ତାଙ୍କର ସମସ୍ତ ପ୍ରତିବାଦ ଅଗ୍ରାହ୍ୟ ହେଲା । ତେଣୁ ସେ ଫରାସୀମାନଙ୍କ ବିରୁଦ୍ଧରେ ସୈନ୍ୟ ପ୍ରେରଣ କଲେ । ମାନ୍ଦ୍ରାଜ ନିକଟବର୍ତ୍ତୀ ମୈଲାପୁରଠାରେ ଯୁଦ୍ଧ ହେଲା । ଡୁପ୍ଲେ କେବଳ ପାଞ୍ଚଶହ ସୈନ୍ୟ ନେଇ ନବାବଙ୍କର ଦଶହଜାର ସୈନ୍ୟଙ୍କୁ -ପରାସ୍ତ

କଲେ । ୧୭୪୮ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ପଣ୍ଡିଚେରୀ ଆକ୍ରମଣ କଲେ । ଫରାସୀମାନେ ସେମାନଙ୍କୁ ମଧ୍ୟ ପରାସ୍ତ କରିଦେଲେ । ଏହା ଫଳରେ ଫରାସୀମାନଙ୍କ ଖ୍ୟାତି ଓ ପ୍ରତିପତ୍ତି ବଢ଼ିଗଲା । ଏତକବେଳେ ଇଉରୋପରେ ସନ୍ଧି ହେବାରୁ ଭାରତରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ଯୁଦ୍ଧ ବନ୍ଦ ହୋଇଗଲା ଏବଂ ଇଂରେଜମାନଙ୍କୁ ମାନ୍ଦ୍ରାଜ ଫେରାଇ ଦିଆଗଲା । ଏହି ଯୁଦ୍ଧକୁ **ପ୍ରଥମ କର୍ଣ୍ଣାଟ ସମର** କୁହାଯାଏ ।

ଏହି ସମୟରେ ହାଇଦ୍ରାବାଦ ଓ କର୍ଣ୍ଣାଟ-ରାଜଧାନୀ ଆର୍କଟର ସିଂହାସନ ନେଇ ବିଭିନ୍ନ ଉତ୍ତରାଧିକାରୀଙ୍କ ମଧ୍ୟରେ ତୁମୁଳ ବିବାଦ ଲାଗିଥାଏ । ଉକ୍ତ ବିବାଦର ସୁଯୋଗ ନେଇ ଫରାସୀ ଓ ଇଂରେଜମାନେ ଭାରତୀୟ ରାଜନୀତି କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ୧୭୪୮ ଖ୍ରୀଷ୍ଟାବ୍ଦରେ ହାଇଦ୍ରାବାଦର ନିଜାମ ମରିଗଲେ । ତାଙ୍କ ପୁଅ ନାଜିରଜଙ୍ଗ ଓ ନାତି (ଝିଅର ପୁଅ) ମୁଜାଫରଜଙ୍ଗଙ୍କ ମଧ୍ୟରେ ସିଂହାସନ ପାଇଁ କଳହ ଲାଗିଲା । ଏଣେ କର୍ଣ୍ଣାଟରେ ମଧ୍ୟ ସିଂହାସନ ପାଇଁ ବିବାଦ ଲାଗିଥାଏ । କର୍ଣ୍ଣାଟର ନାବାଳକ ନବାବଙ୍କୁ ହତ୍ୟାକରି ଅନ୍ୱାରୁଦ୍ଦିନ ନିଜକୁ ନବାବ ପଦରେ ପ୍ରତିଷ୍ଠିତ କରିଥିଲେ । ମାତ୍ର ଚନ୍ଦାସାହେବ ନାମକ ନିହତ ନବାବଙ୍କର ଜଣେ ଆତ୍ମୀୟ ଆର୍କଟ ସିଂହାସନ ଦାବୀ କରିଥିଲେ ।

ଡୁପ୍ଲେ ଚନ୍ଦାସାହେବ ଓ ମୁଜାଫରଙ୍କ ପକ୍ଷ ନେଲେ ଏବଂ ଇଂରେଜମାନେ ଅନ୍ୱାରୁଦ୍ଦିନ ଓ ନାଜିରଜଙ୍ଗଙ୍କ ପକ୍ଷ ସମର୍ଥନ କଲେ । ଏହା ଫଳରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ପୁନଶ୍ଚ ଯୁଦ୍ଧ ଆରମ୍ଭ ହେଲା । ଏହା **ଦ୍ୱିତୀୟ କର୍ଣ୍ଣାଟ ସମର** ନାମରେ ଅଭିହିତ । ଫରାସୀମାନେ ସାହାଯ୍ୟ ପ୍ରଦାନ କରିବାରୁ ମୁଜାଫର ଓ ଚନ୍ଦାସାହେବ ଅନ୍ୱାରୁଦ୍ଦିନଙ୍କୁ ପରାସ୍ତ କଲେ । ୧୭୪୯ ଖ୍ରୀଷ୍ଟାବ୍ଦରେ

ଅନ୍ଵାରୁଦ୍ଦିନ ନିହତ ହେଲେ । ତାଙ୍କ ପୁତ୍ର ମହମ୍ମଦ ଅଲ୍ଲି ତ୍ରିଚିନାପଲ୍ଲିକୁ ପଳାଇଲେ ଓ ଇଂରେଜମାନଙ୍କ ସାହାଯ୍ୟ ମାଗିଲେ । ୧୭୫୦ ଖ୍ରୀଷ୍ଟାବ୍ଦରେ ନାଜିରଜଙ୍ଗ ଗୁପ୍ତଘାତକ ହସ୍ତରେ ନିହତ ହେବାରୁ ମୁଜାଫର୍ ନିଜାମ ହେଲେ । ଡୁପ୍ଲେଙ୍କ ସାହାଯ୍ୟରେ ସିଂହାସନ ଲବ୍ଧ କରିବାରୁ ମୁଜାଫର ତାଙ୍କୁ ଖଣ୍ଡିଏ ଜାଗୀର୍ ଦେଲେ ଓ ଫରାସୀମାନଙ୍କୁ ମସ୍‌ଲିପଟ୍ଟମ ବନ୍ଦର ପ୍ରଦାନ କଲେ । ପରେ ମୁଜାଫରଙ୍କ ମୃତ୍ୟୁ ହେବାରୁ ଫରାସୀମାନେ ନିଜାମଙ୍କ ଅନ୍ୟତମ ପୁତ୍ର ସଲବତ୍ ଜଙ୍ଗଙ୍କୁ ହାଇଦ୍ରାବାଦ ସିଂହାସନରେ ପ୍ରତିଷ୍ଠା କଲେ । ଚନ୍ଦାସାହେବ ଯାଇ ତ୍ରିଚିନାପଲ୍ଲିରେ ମହମ୍ମଦ ଅଲ୍ଲିଙ୍କୁ ଅବରୋଧ କଲେ । ଏହିପରି ଭାବରେ ଦାକ୍ଷିଣାତ୍ୟରେ ଫରାସୀ ପକ୍ଷ ଶକ୍ତିଶାଳୀ ହୋଇ ଉଠିଲେ ଓ ଇଂରେଜମାନଙ୍କ ପ୍ରଭାବ ହ୍ରାସ ପାଇଲା ।



ରବାର୍ଟ କ୍ଲାଇବ୍

ସେମାନଙ୍କର ଏହି ଦୁଃସମୟରେ ରବାର୍ଟ କ୍ଲାଇବ୍ ନାମକ ଏକ ବିଚକ୍ଷଣ ବ୍ୟକ୍ତି ବାହାରି ଇଷ୍ଟଇଣ୍ଡିଆ କୋମ୍ପାନୀର ଅନୁମତି କ୍ରମେ ପାଞ୍ଚଶହ ମାତ୍ର ସୈନ୍ୟ ନେଇ ଚନ୍ଦା ସାହେବଙ୍କ ରାଜଧାନୀ ଆର୍କଟ ଆକ୍ରମଣ କଲେ । ୧୭୫୦ ଖ୍ରୀଷ୍ଟାବ୍ଦରେ ଆର୍କଟ ଇଂରେଜମାନଙ୍କ ହସ୍ତଗତ ହେଲା । ତତ୍ପରେ କ୍ଲାଇବ୍ ତ୍ରିଚିନାପଲ୍ଲୀରୁ ମହମ୍ମଦ ଅଲ୍ଲିଙ୍କୁ ମୁକ୍ତକରି ଆର୍କଟ ସିଂହାସନରେ ପ୍ରତିଷ୍ଠା କଲେ । ଏ ଘଟଣାର କିଛିଦିନ ପରେ ଚନ୍ଦାସାହେବଙ୍କ ମୃତ୍ୟୁ ହେଲା । ଏହି ସମୟରେ

ଫ୍ରାନ୍ସର ସରକାର ଡ୍ୟୁପ୍ଲେଙ୍କୁ ଭାରତରୁ ବାହାର କରି ନେବାରୁ ଇଂରେଜମାନଙ୍କ ପ୍ରାଧାନ୍ୟ ବୃଦ୍ଧି ପାଇଲା ।

୧୭୫୬ ଖ୍ରୀଷ୍ଟାବ୍ଦରେ ଇଉରୋପରେ ଇଂରେଜ ଓ ଫରାସୀ-ମାନଙ୍କ ମଧ୍ୟରେ ପୁନଶ୍ଚ ଯୁଦ୍ଧ ଆରମ୍ଭ ହେଲା । ଏହା ଫଳରେ ଭାରତରେ ମଧ୍ୟ ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧ ଚାଲିଲା । ଭାରତ ଇତିହାସରେ ଏହା **ତୃତୀୟ କର୍ଣ୍ଣାଟ ସମର** ନାମରେ ଅଭିହିତ । ଡ୍ୟୁପ୍ଲେଙ୍କ ପରେ କାଉଣ୍ଟଲାଲି ନାମକ ଜଣେ ବ୍ୟକ୍ତିଙ୍କୁ ଫ୍ରାନ୍ସ ସରକାର ଭାରତକୁ ପ୍ରେରଣ କଲେ । ହାଇଦ୍ରାବାଦରେ ବୁସି ନାମକ ଏକ ଫରାସୀ ସେନାପତି ଥିଲେ । ଲାଲି ତାଙ୍କୁ ହାଇଦ୍ରାବାଦରୁ ଡାକି ଆଣିବାରୁ ଫରାସୀମାନଙ୍କର ସମସ୍ତ ପ୍ରଭାବ ସେଠାରେ ଲୋପ ପାଇଗଲା । ୧୭୬୦ ଖ୍ରୀଷ୍ଟାବ୍ଦରେ ଇଂରେଜ ସେନାପତି ସାର୍ ଆୟାର୍ କୁଟ୍ ଓ୍ୱାଣ୍ଡିଓ୍ୱାସ ( Wandiwash ) ନାମକ ଯୁଦ୍ଧରେ ଲାଲିଙ୍କୁ ପରାସ୍ତ କରି ପଣ୍ଡିଚେରୀ ଅଧିକାର କଲେ । ପଣ୍ଡିଚେରୀର ପତନ ପରେ ଫରାସୀ ଶକ୍ତି ଭାରତରେ ଭାଙ୍ଗି ପଡ଼ିଲା । ଅବଶ୍ୟ ୧୭୬୩ ଖ୍ରୀଷ୍ଟାବ୍ଦରେ ଇଉରୋପରେ ଯୁଦ୍ଧ ବନ୍ଦ ହୋଇ ସନ୍ଧି ସ୍ୱାକ୍ଷରିତ ହେବାରୁ ଫରାସୀମାନେ ପଣ୍ଡିଚେରୀ ଫେରି ପାଇଲେ । ମାତ୍ର ଭାରତରେ ଫରାସୀ ସାମ୍ରାଜ୍ୟ ପ୍ରତିଷ୍ଠାର ସ୍ୱପ୍ନ ଚିରକାଳପାଇଁ ଭାଙ୍ଗିଗଲା ।

**ବଙ୍ଗଳାରେ ଇଂରେଜ ପ୍ରାଧାନ୍ୟ ପ୍ରତିଷ୍ଠା:**—ଦାକ୍ଷିଣାତ୍ୟରେ ଯେପରି ଭାବରେ ଇଂରେଜ ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲା, ବଙ୍ଗଳାରେ ମଧ୍ୟ ସେହିପରି ଭାବରେ ଇଂରେଜ ଶକ୍ତି ବଳୀୟାନ୍ ହୋଇଉଠିଲା । ୧୭୫୬ ଖ୍ରୀଷ୍ଟାବ୍ଦରେ ସିରାଜଉଦ୍ଦୌଲା ବଙ୍ଗଳାର ନବାବ ହେଲେ । ସେତେବେଳେ ଇଂରେଜ ଓ ଫରାସୀମାନେ ବଙ୍ଗଳାରେ ଦୁର୍ଗ ନିର୍ମାଣ କରୁଥିବାର ଦେଖି ନବାବ ସେମାନଙ୍କୁ

ସେଥିରୁ ନିବୃତ୍ତ ହେବାକୁ ଆଦେଶ ଦେଲେ । ଫରାସୀମାନେ ତାଙ୍କ ଆଦେଶ ପାଳନ କଲେ; ମାତ୍ର ଇଂରେଜମାନେ ସେଥିପ୍ରତି ଭ୍ରୂକ୍ଷେପ କଲେ ନାହିଁ । ଇଂରେଜମାନେ ବାଣିଜ୍ୟ ସଂକ୍ରାନ୍ତ ସୁବିଧା ଲାଭ କରି ତାର ଅପବ୍ୟବହାର କରୁଥିଲେ । ତଦ୍ଦ୍ୱାରା ନବାବଙ୍କ ରାଜସ୍ୱହାନି ହେଉଥିଲା । ତା ଛଡ଼ା ଇଂରେଜମାନେ ନବାବଙ୍କ ଶତ୍ରୁ କୃଷ୍ଣ ଦାସଙ୍କୁ ଆଶ୍ରୟ ପ୍ରଦାନ କରିଥିଲେ । ଏହିସବୁ କାରଣରୁ ନବାବ୍ କ୍ରୋଧାନ୍ୱିତ ହୋଇ କଲିକତା ଆକ୍ରମଣ କଲେ । କଲିକତା ତାଙ୍କର ହସ୍ତଗତ ହେଲା । ଏହି ଦୁଃସମ୍ବାଦ ମାନ୍ଦ୍ରାଜରେ ପହଞ୍ଚିବା ମାତ୍ରେ ରବର୍ଟ କ୍ଲାଇଭ ଓ ନୌସେନାପତି ଓ୍ୱାଟସନ୍ ସୈନ୍ୟସହ ବଙ୍ଗଳାରେ ଉପସ୍ଥିତ ହୋଇ କଲିକତା ଉଦ୍ଧାର କଲେ । ସିରାଜ ଇଂରେଜମାନଙ୍କ ସହିତ ସନ୍ଧି କରିବାକୁ ବାଧ୍ୟ ହେଲେ, ମାତ୍ର ଏହି ସନ୍ଧି ଅଳ୍ପ ଦିନ ସ୍ଥାୟୀ ହେଲା । ସିରାଜ ଫରାସୀ ସେନାପତି ବୁସିଙ୍କ ସହିତ ଇଂରେଜମାନଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର ଆରମ୍ଭ କଲେ । ବଙ୍ଗଳାରେ ସିରାଜଙ୍କ ବିରୁଦ୍ଧରେ ମଧ୍ୟ ଏକ ଷଡ଼ଯନ୍ତ୍ର ଚାଲିଥିଲା । କ୍ଲାଇଭ୍ ସେଥିରେ ଯୋଗଦେଲେ । ସିରାଜଙ୍କ ସେନାପତି ମିରଜାଫରଙ୍କୁ ନବାବ୍ କରିବା ପାଇଁ ଗୋପନରେ ସ୍ଥିର ହେଲା । କ୍ଲାଇଭ୍ ସିରାଜଙ୍କ ବିରୁଦ୍ଧରେ ସନ୍ଧିଭଙ୍ଗର ଅଭିଯୋଗ ଆଣି ଯୁଦ୍ଧଘୋଷଣା କଲେ । ୧୭୫୭ ଖ୍ରୀଷ୍ଟାବ୍ଦର ଜୁନ୍‌ମାସ ୨୩ ତାରିଖରେ



ସିରାଜ

ପଲାଶୀ ନାମକ ସ୍ଥାନରେ ଯୁଦ୍ଧ ହେଲା । ନବାବଙ୍କ ସେନାପତି ମିରଜାଫର ବିଶ୍ୱାସଘାତକତା କରି ଯୁଦ୍ଧବେଳେ ତାଙ୍କୁ ସାହାଯ୍ୟ କଲେ ନାହିଁ । ନବାବଙ୍କ ଅନ୍ୟତମ ସେନାପତି ମିର୍ମଦନ ଯୁଦ୍ଧରେ ନିହତ ହେଲେ । ନବାବ ପରାସ୍ତ ହୋଇ ପଳାଇଗଲେ ଓ ପରେ ଧରାପଡ଼ି ନିହତ ହେଲେ । ମିରଜାଫର ନବାବ ହେଲେ । କ୍ଲାଇବଙ୍କ କୌଶଳ କ୍ରମେ ବଙ୍ଗଳାରେ ଇଂରେଜ ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲା । କ୍ରମେ କ୍ରମେ ଇଂରେଜମାନେ ଭାରତରେ ରାଜ୍ୟବିସ୍ତାର କରି ଭାରତର ଶାସକ ହେଲେ ।

## ଅନୁଶୀଳନୀ

୧ । ପଞ୍ଚଦଶ ଶତାବ୍ଦୀର ଭୌଗୋଳିକ ଆବିଷ୍କାର ଫଳରେ ମାନବ ସମାଜର କି ପରିବର୍ତ୍ତନ ଘଟିଲା ?

୨ । ଭାସ୍କୋଡ଼ାଗାମା ଭାରତକୁ ଜଳପଥ ଆବିଷ୍କାର କରିବା ଦ୍ୱାରା ଭାରତ ଇତିହାସ ଉପରେ ତାହାଂକ ପ୍ରଭାବ ପରିଲକ୍ଷିତ ହେଲା ?

୩ । ପର୍ତ୍ତୁଗୀଜମାନେ କି କାରଣରୁ ଭାରତୀୟ ସମାଜରେ ଅପ୍ରିୟ ହୋଇ ଉଠିଲେ ?

୪ । କଲମ୍ବସ୍, ବାର୍ଥଲୋମିଉଡ଼ିଆଜ, ଭାସ୍କୋଡ଼ାଗାମା, ଡ୍ରେକ୍ ଓ ରାଲେ ମାନବ ସମାଜର କି ଉପକାର କରିଯାଇଅଛନ୍ତି ? ଇଉରୋପୀୟ ସମାଜ ସେମାନଙ୍କ ନିକଟରେ କିପରି ଋଣୀ ତାହା ଘଟଣା ପରମ୍ପରା ସାହାଯ୍ୟରେ ବୁଝାଇ ଦିଅ ।

୫ । ପ୍ରାଚ୍ୟ ଦେଶମାନଙ୍କରେ ପାଶ୍ଚାତ୍ୟ ପ୍ରଭାବ କେବେ ଓ କିପରି ବୃଦ୍ଧି ଲାଭ କଲା ତାହା ସଂକ୍ଷେପରେ ବର୍ଣ୍ଣନା କର ।

୬ । ଭାରତରେ ଇଂରେଜ ଓ ଫରାସୀ କୋମ୍ପାନୀଙ୍କ ମଧ୍ୟରେ ସଂଘର୍ଷ ଉପସ୍ଥିତ ହୋଇ ଅବଶେଷରେ କିପରି ଇଂରେଜ ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲା ତାହାର ସ୍ଥୂଳ ବିବରଣୀ ପ୍ରଦାନ କର ।

୭ । ନିମ୍ନଲିଖିତ ବାକ୍ୟଗୁଡ଼ିକରେ ଥିବା ଐତିହାସିକ ଭ୍ରମ ସଂଶୋଧନ କର—

(କ) ପ୍ରଥମେ ସ୍ପେନୀୟମାନେ ଆଫ୍ରିକାର ଉତ୍ତମାଶା ଅନ୍ତରୀପକୁ ଜଳପଥ ଆବିଷ୍କାର କରିଥିଲେ ।

(ଖ) ପର୍ତ୍ତୁଗୀଜ ନାବିକ ସାର୍ ଫ୍ରାନ୍‌ସିସ୍ ଡ୍ରେକ୍ ଜଣେ ବିଶିଷ୍ଟ ଭୂପଦକ୍ଷିଣକାରୀ ।

(ଗ) ୧୬୦୦ ଖ୍ରୀଷ୍ଟାବ୍ଦରେ ଫରାସୀମାନେ ଭାରତ ସହିତ ବାଣିଜ୍ୟ କରିବା ପାଇଁ ଗୋଟିଏ କୋମ୍ପାନୀ ଗଠନ କଲେ ।

(ଘ) ଫରାସୀମାନେ ବଙ୍ଗର ନବାବ୍ ସାଇସ୍ତାଖାଁଙ୍କ ଠାରୁ ପଣ୍ଡିଚେରୀ ନାମକ ସ୍ଥାନ ପଟ୍ଟା ନେଇଥିଲେ ।

୮ । ଶୂନ୍ୟସ୍ଥାନଗୁଡ଼ିକ ଉପଯୁକ୍ତ ଶବ୍ଦ ବାଛି ପୂରଣ କର:—

(କ) ୧୭୪୮ ଖ୍ରୀଷ୍ଟାବ୍ଦରେ ହାଇଦ୍ରାବାଦର—ମରିଗଲେ ।

(ନବାବ୍, ମହାରାଜା, ନିଜାମ, ସୁଲତାନ)

(ଖ) ଡୁପ୍ଲେଙ୍କ ପରେ—ନାମକ ଜଣେ ବ୍ୟକ୍ତିଙ୍କୁ ଫ୍ରାନ୍‌ସ ସରକାର ଭାରତକୁ ପ୍ରେରଣ କଲେ ।

(ଲାବୁରଦନେ, ଚତୁର୍ଦ୍ଦଶ ଲୁଇ, କାଉଣ୍ଟଲାଲି)

(ଗ) ୧୭୬୦ ଖ୍ରୀଷ୍ଟାବ୍ଦରେ ଇଂରେଜ ସେନାପତି—ଓ୍ୱାଣ୍ଡିଓ୍ୱାସ ଯୁଦ୍ଧରେ ଲାଲିଙ୍କୁ ପରାସ୍ତ କଲେ ।

(ଉଆଟସନ, ଆୟାରକୁଟ୍, ରବାର୍ଟ କ୍ଲାଇବ)

୯ । ଅଷ୍ଟାଦଶ ଶତାବ୍ଦୀରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ସଂଘର୍ଷ ଉପସ୍ଥିତ ହୋଇ ଇଂରେଜ ପ୍ରାଧାନ୍ୟ ପରିବର୍ତ୍ତେ ଫରାସୀ ପ୍ରାଧାନ୍ୟ ଭାରତରେ ପ୍ରତିଷ୍ଠିତ ହୋଇଥିଲେ, ଭାରତୀୟ ସମାଜ ଉପରେ ତାର କି ପ୍ରଭାବ ପଡ଼ିଥାନ୍ତା ତାହା ଅନୁମାନ କରି ଗୋଟିଏ ପ୍ରବନ୍ଧ ଲେଖ ।

———

ସୁବାଞ୍ଚଳରେ ବାସ କରଥିଲେ । ଇଂଲଣ୍ଡର ରାଣୀ ଏଲିଜାବେଥ୍ ( ପ୍ରଥମ ) ସେମାନଙ୍କୁ ଏହି ସର୍ତ୍ତରେ ନିଜ ରାଜ୍ୟରେ ବାସ କରିବାକୁ ଅନୁମତି ଦେଇଥିଲେ ଯେ, ପ୍ରତ୍ୟେକ ଶିଳ୍ପୀ ନିଜ ଗୃହରେ ଜଣେ ଲେଖାଏଁ ଇଂରେଜ ଶିକ୍ଷାର୍ଥୀ ରଖି ତାଙ୍କୁ ଶିଳ୍ପଶିକ୍ଷା ଦେବେ । ଏହି ସୂତ୍ରରେ ଇଂଲଣ୍ଡରେ ବସ୍ତ୍ରବୟନଶିଳ୍ପର ଉନ୍ନତି ଘଟିଲା ।

କିଛିଦିନ ପରେ ଫ୍ରାନ୍ସ ଦେଶରୁ ପ୍ରୋଟେଷ୍ଟାଣ୍ଟମାନେ ଆସି ଇଂଲଣ୍ଡରେ ବାସ କଲେ । ସେମାନେ ରେଶମଶିଳ୍ପରେ ପ୍ରବୀଣ । ଇଂରେଜମାନେ ସେମାନଙ୍କଠାରୁ ଉକ୍ତ ଶିଳ୍ପ ଶିଖିଲାଭ କଲେ । କାଳକ୍ରମେ ଇଉରୋପର ନାନା ଅଞ୍ଚଳରୁ ବହୁଶିଳ୍ପୀ ଆସି ଇଂଲଣ୍ଡରେ ବାସ କରି ଇଂରେଜମାନଙ୍କୁ କାଚଶିଳ୍ପ, କାଗଜଶିଳ୍ପ ପ୍ରଭୃତି ନାନା ପ୍ରକାର ଶିଳ୍ପରେ ଦକ୍ଷତା ଅର୍ଜନ କରିବାରେ ସାହାଯ୍ୟ କଲେ । ଫଳତଃ ଇଂଲଣ୍ଡ ଶିଳ୍ପକ୍ଷେତ୍ରରେ ପ୍ରତିଷ୍ଠା ଲାଭକରି ଧନଶାଳୀ ହୋଇ ଉଠିଲା । କିନ୍ତୁ ଏହି ସମସ୍ତ ଶିଳ୍ପ ଥିଲା କୁଟୀର ଶିଳ୍ପ । କିଛିକାଳ ପରେ ଏହି କୁଟୀରଶିଳ୍ପ ପରିବର୍ତ୍ତେ ଯନ୍ତ୍ରଶିଳ୍ପର ପ୍ରବର୍ତ୍ତନ ହେଲା । ଇଂଲଣ୍ଡରେ ବଡ଼ ବଡ଼ କାରଖାନାମାନ ବସି ଯନ୍ତ୍ର ସାହାଯ୍ୟରେ ଶିଳ୍ପଦ୍ରବ୍ୟର ଉତ୍ପାଦନ ଆରମ୍ଭ ହେଲା । ଅଳ୍ପ ସମୟରେ ଓ ଅଳ୍ପାୟାସରେ ପ୍ରଚୁର ଶିଳ୍ପସାମଗ୍ରୀ ପ୍ରସ୍ତୁତ ହୋଇପାରିଲା । ଏହା ଫଳରେ ଇଂଲଣ୍ଡର ତତ୍କାଳୀନ ସମାଜରେ ଘୋର ପରିବର୍ତ୍ତନ ଦେଖାଦେଲା । ନାନା ଉନ୍ନତ ଧରଣର ଯନ୍ତ୍ର ଉଦ୍ଭାବିତ ହେଲା ଏବଂ ତାହା ବିଶାଳ କାରଖାନା ବା ଫ୍ୟାକ୍ଟରିମାନଙ୍କରେ ବ୍ୟବହୃତ ହୋଇ ଶିଳ୍ପକ୍ଷେତ୍ରରେ ନାନା ପରିବର୍ତ୍ତନ ଆଣିଲା । ଏହାକୁ ଶିଳ୍ପ-ବିପ୍ଳବ କୁହାଯାଏ । ଏହି ବିପ୍ଳବ ଇଂଲଣ୍ଡରେ ଆରମ୍ଭ ହୋଇ କ୍ରମେ ଇଉରୋପର ଅନ୍ୟାନ୍ୟ ଦେଶକୁ ବ୍ୟାପିଲା ।

ଯନ୍ତ୍ର ଉଦ୍ଭାବନ:—୧୭୩୮ ଖ୍ରୀଷ୍ଟାବ୍ଦରେ କେ ( Kay ) ନାମକ ଜଣେ ବ୍ୟକ୍ତି ବସ୍ତ୍ରବୟନ ପାଇଁ "ଫ୍ଲାଇଂସଟଲ" (Flying Shuttle ) ନାମକ ଏକ ନୂତନ ଧରଣରକଣ୍ଡା ଉଦ୍ଭାବନ କଲେ । ଏହି କଣ୍ଡା ସାହାଯ୍ୟରେ ଖୁବ୍ ଦ୍ରୁତ ଗତିରେ ବସ୍ତ୍ରବୟନ କାର୍ଯ୍ୟ ସମ୍ପନ୍ନ ହୋଇପାରିଲା । ତନ୍ତୁବାୟମାନେ ଏହା ବ୍ୟବହାର କରି ପୂର୍ବାପେକ୍ଷା ଦୁଇଗୁଣ ବସ୍ତ୍ର ଉତ୍ପାଦନ କରିପାରିଲେ । ମାତ୍ର ଏଥିପାଇଁ ଅଧିକ ସୂତାର ପ୍ରୟୋଜନ ହେଲା । ତେଣୁ ୧୭୬୨ ଖ୍ରୀଷ୍ଟାବ୍ଦରେ ହାରଗ୍ରୀଭସ୍ ( Hargreavs ) ନାମକ ଜଣେ ବ୍ୟକ୍ତି ସ୍ପିନିଂ ଜେନୀ ( Spinning Jeny ) ନାମକ ଏକ ନୂତନ ଯନ୍ତ୍ର



ସ୍ପିନିଂ ଜେନୀ

ଉଦ୍ଭାବନ କଲେ । ଏହା ସାହାଯ୍ୟରେ ଏକ ସମୟରେ ଅନେକଗୁଡ଼ିଏ ସୂତା କଟାଯାଇ ପାରିଲା । ଏଥିରେ ଥରକେ ଅଠଶିଅ ପର୍ଯ୍ୟନ୍ତ ସୂତାକଟାଟିଣାର ବ୍ୟବସ୍ଥା ଥିଲା । ୧୭୬୯ ଖ୍ରୀଷ୍ଟାବ୍ଦରେ ରିଚାର୍ଡ଼ ଆରକ୍‌ରାଇଟ ( Richard Arkwright ) ନାମକ ଏକ ବ୍ୟକ୍ତି ୱାଟର ଫ୍ରେମ ( Water Frame) ନାମକ ଏକ ଯନ୍ତ୍ର ଉଦ୍ଭାବନ କଲେ । ଏଥିରେ ଜଳଶକ୍ତି ସାହାଯ୍ୟରେ ଖୁବ୍ ସୂକ୍ଷ୍ମ ଓ ଶକ୍ତ ସୂତା କଟାଯାଇ

ପାରିଲ । ୧୭୮୯ ଖ୍ରୀଷ୍ଟାବ୍ଦରେ କମ୍ପଟନ ନାମକ ଅନ୍ୟ ଜଣେ ବ୍ୟକ୍ତି ମ୍ୟୁଲ (Mule) ନାମକ ଏକ ନୂତନ ଅରଟ ତାହାର କଲେ । ଏହାର ପୂର୍ବୋକ୍ତ ଜ୍ୱଅଟର ଫ୍ରେମ ଓ ସ୍ପିନିଂ ଜେନୀର ସମ୍ମିଶ୍ରଣ । ଏହାଦ୍ୱାରା ସୂକ୍ଷ୍ମ ନିର୍ମାଣ ପ୍ରଣାଳୀର ଅଧିକ ଉନ୍ନତି ସାଧିତ ହେଲା ।

ଏହାପୂର୍ବରୁ ୧୭୮୫ ଖ୍ରୀଷ୍ଟାବ୍ଦରେ ଏଡ଼ମଣ୍ଡ କାର୍ଟରାଇଟ (Edmund Cartwright) ନାମକ ଜଣେ ବ୍ୟକ୍ତି କଳତନ୍ତ୍ର (Power-loom) ଉଦ୍ଭାବନ କରି ସାରିଥିଲେ । ବିଶାଳ କାରଖାନା-ମାନଙ୍କରେ ଏହି କଳତନ୍ତ୍ର ବ୍ୟବହୃତ ହେବାରୁ ସୂତା ଓ ଲୁଗାର ଉତ୍ପାଦନ ବହୁ ପରିମାଣରେ ବୃଦ୍ଧିଲାଭ କଲା । ପ୍ରଥମେ ଏହି ଯନ୍ତ୍ରଗୁଡ଼ିକ ଜଳଶକ୍ତି ସାହାଯ୍ୟରେ ଚାଳିତ ହେଉଥିଲା । ପରେ ପଥରକୋଇଲା ସାହାଯ୍ୟରେ ବାଷ୍ପୀୟ ଶକ୍ତିର ପ୍ରୟୋଗ ଆରମ୍ଭ ହେଲା ଏବଂ କାର୍ପାସ ଶିଳ୍ପ ଓ ପଶମ ଶିଳ୍ପର ଅପୂର୍ବ ଉନ୍ନତି ଘଟିଲା । ୧୭୬୯ ଖ୍ରୀଷ୍ଟାବ୍ଦରେ ଜେମ୍ସ୍ ୱାଟ୍ (James Watt) ନାମକ ଜଣେ ବ୍ୟକ୍ତି ଉନ୍ନତ ଧରଣର ବାଷ୍ପୀୟ କଳ ଉଦ୍ଭାବନ କରିଥିଲେ । ଏହା କାରଖାନାମାନଙ୍କରେ ପ୍ରତିଷ୍ଠିତ ହେବାରୁ ଶିଳ୍ପଦ୍ରବ୍ୟର ଉତ୍ପାଦନ ଅସମ୍ଭବରୂପେ ବଢ଼ିଗଲା । କୋଇଲା ସାହାଯ୍ୟରେ ମଧ୍ୟ ଲୌହଶିଳ୍ପର ଉନ୍ନତି ଘଟିଲା । ଦେଶରେ ବହୁସଂଖ୍ୟାରେ ଲୌହ-କାରଖାନା ପ୍ରତିଷ୍ଠିତ ହେଲା ଓ ଲୌହଜାତ ଦ୍ରବ୍ୟର ଉତ୍ପାଦନ ବୃଦ୍ଧିଲାଭ କଲା । ଏହା ଫଳରେ ଇଂଲଣ୍ଡର ରୂପ ଏକାବେଳକେ ବଦଳିଗଲା ବୋଲିଲେ ଅତିରଞ୍ଜିତ ହେବ ନାହିଁ । ୧୮୦୧ ଖ୍ରୀଷ୍ଟାବ୍ଦରେ ରିଚାର୍ଡ଼ ଟ୍ରେଭେଥିକ୍ ନାମକ ଜଣେ ବ୍ୟକ୍ତି ୱାଟ୍‌ଙ୍କ ଇଞ୍ଜିନ ବ୍ୟବହାର କରି ସଡ଼କରେ ଟ୍ରେନ୍ ଚଳାଇଲେ । ଅବଶେଷରେ ୧୮୧୫ ଖ୍ରୀଷ୍ଟାବ୍ଦରେ ଜର୍ଜ ଷ୍ଟିଫେନ୍‌ସନ୍ (George Stiphenson)

ବାଷ୍ପୀୟ ଶକଟ ବା ରେଲଗାଡ଼ି ଉଦ୍ଭାବନ କଲେ ଏବଂ ୧୮୨୫ ଖ୍ରୀଷ୍ଟାବ୍ଦରେ ରେଳରାସ୍ତା ନିର୍ମାଣ କରି ତାହା ଉପରେ ଯାତ୍ରୀବାହୀ ରେଲଗାଡ଼ି ଚଳାଇଲେ । ୧୮୩୦ ଖ୍ରୀଷ୍ଟାବ୍ଦରେ ସେ 'ରକେଟ୍' ନାମକ ବିଖ୍ୟାତ ଇଞ୍ଜିନ୍ ପ୍ରସ୍ତୁତ କରି ବହୁମୂଲ୍ୟ ପୁରସ୍କାର ଲାଭ କଲେ । ଦଶବର୍ଷ ମଧ୍ୟରେ ଇଂଲଣ୍ଡ ରେଲରାସ୍ତାରେ ଆଚ୍ଛନ୍ନ ହୋଇଗଲା ।



ରକେଟ୍

**ଶିଳ୍ପ ବିପ୍ଳବର ଫଳାଫଳ:**—ଶିଳ୍ପ ବିପ୍ଳବ ଫଳରେ ଇଂଲଣ୍ଡ ଏକ ଶିଳ୍ପପ୍ରଧାନ ଦେଶରେ ପରିଣତ ହେଲା । ନାନା ସ୍ଥାନରେ କଳକାରଖାନାମାନ ବସିଲା । ଏଗୁଡ଼ିକ ପ୍ରଥମେ ସୁଦୃଶ୍ୟ ନ ଥିଲା । କାରଖାନାର ଧୂମ୍ରନଳୀମାନଙ୍କରୁ ଧୂମ୍ର ନିର୍ଗତ ହୋଇ ଚତୁର୍ଦ୍ଦିଗ ଅନ୍ଧକାରପୂର୍ଣ୍ଣ କରିଦେଉଥିଲା । ପଥରକୋଇଲା ଓ ଆବର୍ଜନାର ସ୍ତୂପ ଚାରିଆଡ଼େ ଦେଖାଯାଉଥିଲା । ଶିଳ୍ପପ୍ରତିଷ୍ଠାନକୁ କେନ୍ଦ୍ରକରି ନୂଆ ନୂଆ ସହର ଗଢ଼ି ଉଠିଥିଲା । ପ୍ରଥମେ ସେଗୁଡ଼ିକ

ମଧ୍ୟ ନିତାନ୍ତ ଅସୁନ୍ଦର ଓ ଅସ୍ୱାସ୍ଥ୍ୟକର ଥିଲା । କ୍ରମେ କ୍ରମେ ଏହି ସହର ଗୁଡ଼ିକର ଲୋକସଂଖ୍ୟା ବଢ଼ିବାକୁ ଲାଗିଲା । ଗ୍ରାମାଞ୍ଚଳରୁ ବହୁ ନରନାରୀ ଆସି କାରଖାନାମାନଙ୍କରେ କର୍ମକରି ଜୀବିକାର୍ଜନ କଲେ । ଫଳରେ ଗ୍ରାମମାନଙ୍କର ଜନସଂଖ୍ୟା କମିଗଲା ଓ କୃଷିର କ୍ଷତି ଘଟିଲା । ଯନ୍ତ୍ରଶିଳ୍ପର ପ୍ରବର୍ତ୍ତନ ଯୋଗୁଁ ହସ୍ତଶିଳ୍ପ ବା କୁଟୀରଶିଳ୍ପ ଲୋପ ପାଇଲା । ଏହା ଫଳରେ ଗ୍ରାମାଞ୍ଚଳର ଅନେକ ଲୋକ ବେକାର ହୋଇପଡ଼ିଲେ । ସେମାନେ ଅନ୍ୟ ସହିତ ପ୍ରତିଯୋଗିତା କରିପାରିଲେ ନାହିଁ; ତେଣୁ ସହରମାନଙ୍କୁ ଯାଇ ଶ୍ରମିକ ହେବାକୁ ବାଧ୍ୟ ହେଲେ । ଏହି କାରଣରୁ ଯନ୍ତ୍ରଶିଳ୍ପ ବିରୁଦ୍ଧରେ ପ୍ରଥମେ ପ୍ରଥମେ ତୀବ୍ର ପ୍ରତିକ୍ରିୟା ଦେଖାଦେଲା । ଅର୍କରାଇଟ୍ ତାଙ୍କର ଜଳଅଠର ଫ୍ରେମ ବାହାର କଲାପରେ କେତେକ ଲୋକ ବଳପୂର୍ବକ ତାଙ୍କ ଘରେ ପଶି ତାଙ୍କର ଯନ୍ତ୍ର ନଷ୍ଟ କରିଦେଲେ ଓ ତାଙ୍କୁ ନିଜ ଗୃହରୁ ତଡ଼ିଦେଲେ ।

ସେତେବେଳେ କାରଖାନାର ମାଲିକମାନେ ଶ୍ରମିକମାନଙ୍କୁ ଅଳ୍ପ ମଜୁରି ଦେଉଥିଲେ । ଶ୍ରମିକମାନେ ଅସ୍ୱାସ୍ଥ୍ୟକର ସ୍ଥାନରେ ଓ ହୀନାବସ୍ଥାରେ ବାସ କରି ବହୁ କଷ୍ଟ ଭୋଗ କରୁଥିଲେ । ତେଣୁ ପରବର୍ତ୍ତୀ ଯୁଗରେ ସେମାନଙ୍କର ଦୁର୍ଦ୍ଦଶା ମୋଚନ ପାଇଁ କାରଖାନା-ଆଇନମାନ ପ୍ରଣୟନ କରିବାକୁ ପଡ଼ିଥିଲା । ଶିଳ୍ପ ବିପ୍ଳବ ଫଳରେ ଦେଶରେ ଦୁଇଟି ବିରୁଦ୍ଧ ଶ୍ରେଣୀର ଆବିର୍ଭାବ ଘଟିଲା, ଯଥା— (୧) ପୁଞ୍ଜିପତି ବା ଧନିକଶ୍ରେଣୀ ଓ (୨) ଶ୍ରମିକ ସମ୍ପ୍ରଦାୟ । ଏହି ଦୁଇ ଶ୍ରେଣୀର ଲୋକଙ୍କ ମଧ୍ୟରେ ଗଭୀର ବ୍ୟବଧାନର ସୃଷ୍ଟି ହେଲା ଓ ସମାଜରେ ଏକ ଘୋର ସଂଘର୍ଷର ସୂତ୍ରପାତ ହେଲା । ଏହି ଶ୍ରେଣୀ ସଂଘର୍ଷର ସୂଚନା ଦେଇଥିଲେ ପ୍ରଥମେ କାର୍ଲମାର୍କସ୍ (Karl Marx) ନାମକ ଜଣେ ଜର୍ମାନ ଲେଖକ । ସେ ସାମ୍ୟବାଦ ନୀତି ପ୍ରଚାର କରିଥିଲେ । ଆଜି ଏହି ନୀତି ରାଜନୀତି କ୍ଷେତ୍ରରେ ଏକ ବିଶିଷ୍ଟ ସ୍ଥାନ

ଅଧିକାର କରିଅଛି । ସାମ୍ୟବାଦ ନୀତିରେ ସମାଜ ଗଠନ ଓ ରାଜ୍ୟ-ଶାସନ ଆଜି ଏକ ବଳିଷ୍ଠ ଆଦର୍ଶରେ ପରିଣତ ହୋଇଅଛି ।

ଶିଳ୍ପବିପ୍ଳବ ଫଳରେ ଇଂଲଣ୍ଡ ଏକ ଧନଶାଳୀ ଓ ପ୍ରଭାବଶାଳୀ ରାଜ୍ୟରେ ପରିଣତ ହେଲା । ଇଂଲଣ୍ଡରେ ଶିଳ୍ପଜାତ ଦ୍ରବ୍ୟ ଅପର୍ଯ୍ୟାପ୍ତ ପରିମାଣରେ ଉତ୍ପନ୍ନ ହେଲା । ସେ ଦେଶର ବଣିକମାନେ ତାହା ନେଇ ପୃଥିବୀର ନାନା ଅଞ୍ଚଳରେ ବିକ୍ରୟ କଲେ । ତଦ୍ଦ୍ୱାରା ବାଣିଜ୍ୟ ବୃଦ୍ଧି ସଙ୍ଗେ ସଙ୍ଗେ ଇଂଲଣ୍ଡର ପ୍ରଚୁର ଧନାଗମ ହେଲା । ଦିନକୁ ଦିନ ଶିଳ୍ପପ୍ରତିଷ୍ଠାନଗୁଡ଼ିକର ସଂଖ୍ୟା ବଢ଼ିବାକୁ ଲାଗିଲା । ଏହି ସମୟରେ ଇଂରେଜ ଇଷ୍ଟଇଣ୍ଡିଆ କୋମ୍ପାନୀ ଆମ ଦେଶରେ ବାଣିଜ୍ୟ କରି ଇଂଲଣ୍ଡକୁ ଅଜସ୍ର ଅର୍ଥ ବୋହି ନେଉଥିଲେ । ଉକ୍ତ ଅର୍ଥର ବିନିଯୋଗ ଫଳରେ ସେ ଦେଶର ଶିଳ୍ପ ସମୃଦ୍ଧି କ୍ଷିପ୍ରରୁ କ୍ଷିପ୍ରତର ହୋଇଉଠିଲା । କଳକାରଖାନାମାନଙ୍କ ପାଇଁ ପ୍ରଚୁର କଞ୍ଚାମାଲ ଦରକାର । ତାଛଡ଼ା ଶିଳ୍ପଜାତ ଦ୍ରବ୍ୟର ବିକ୍ରୟ ପାଇଁ ବଜାର ଲୋଡ଼ା । ସେଗୁଡ଼ିକ ପୃଥିବୀର ବିଭିନ୍ନାଞ୍ଚଳରେ କଟାଇବାକୁ ହେବ । ଇଂରେଜମାନେ ନାନା ଉପାୟ ଅବଲମ୍ବନ କରି ତାହା କଟାଇବାକୁ ଚେଷ୍ଟାକଲେ । ସେଥିପାଇଁ ଆମ ଭାରତର ଜାତୀୟ ଶିଳ୍ପକୁ ନଷ୍ଟ କରିବାକୁ ମଧ୍ୟ ସେମାନେ କୁଣ୍ଠାବୋଧ କଲେ ନାହିଁ । କାଳକ୍ରମେ ଭାରତର ବସ୍ତ୍ରଶିଳ୍ପକୁ ସେମାନେ ଲୋପ କରିଦେଲେ ।

ଶିଳ୍ପବିପ୍ଳବ ଫଳରେ ଯେଉଁ ପୁଞ୍ଜିବାଦ (Capitalism)ର ସୃଷ୍ଟି ହେଲା, ସେଥିରୁ ସାମ୍ରାଜ୍ୟବାଦ ଜନ୍ମଲାଭ କଲା । ଇଂଲଣ୍ଡରୁ ଇଉରୋପର ଅନ୍ୟ ଅଞ୍ଚଳକୁ ଶିଳ୍ପବିପ୍ଳବ ବିସ୍ତୃତ ହେଲା । ତା ସଙ୍ଗେ ସଙ୍ଗେ ସାମ୍ରାଜ୍ୟବାଦ ମଧ୍ୟ ବିସ୍ତୃତ ଲାଭ କଲା । ଇଂଲଣ୍ଡ ସମେତ ଇଉରୋପର ବହୁ ବିଶିଷ୍ଟ ଦେଶ ଏହି ନୀତି ଅବଲମ୍ବନ କରି ନିଜ ଦେଶର ଶିଳ୍ପ-ପୁଷ୍ଟିସାଧନ ନିମନ୍ତେ ଓ

ଶିଳ୍ପ ସାମଗ୍ରୀର ବିକ୍ରୟ ନିମନ୍ତେ ନୂତନ ଭୂଖଣ୍ଡ ଅଧିକାର କରିବାକୁ ଆରମ୍ଭ କଲେ । ଏ ବିଗରେ ଇଂଲଣ୍ଡର ବିଶେଷ ସୁବିଧା ଥିଲା, କାରଣ ଇଂଲଣ୍ଡର ପ୍ରବଳ ନୌଶକ୍ତି ଥିଲା ଓ ଭାରତବର୍ଷ ପରି ବିଶାଳ ଦେଶ ତାହାର ଅଧିକାରଭୁକ୍ତ ଥିଲା ।

ଫରାସୀ ବିପ୍ଳବ:—ଅଷ୍ଟାଦଶ ଶତାବ୍ଦୀରେ କେବଳ ଯେ ଶିଳ୍ପକ୍ଷେତ୍ରର ବିପ୍ଳବ ଆରମ୍ଭ ହୋଇଥିଲା ତା ନୁହେଁ, ଉକ୍ତ ଶତାବ୍ଦୀର ଶେଷଭାଗରେ ଆଉ ଏକ ଗୁରୁତର ବିପ୍ଳବର ସୂତ୍ରପାତ ହୋଇଥିଲା । ତାହାର ନାମ ଫରାସୀ ବିପ୍ଳବ (French Revolution) ୧୭୮୯ ଖ୍ରୀଷ୍ଟାବ୍ଦରେ ଇଉରୋପ ଅନ୍ତର୍ଗତ ଫ୍ରାନ୍ସ ଦେଶରେ ଏହି ବିପ୍ଳବ ଦେଖା ଦେଇଥିଲା । ଏହା ପୃଥିବୀ ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା ।

ପ୍ରାଚୀନ ଯୁଗର ମାନବ ଇତିହାସ ଆଲୋଚନା କଲେ ଆମ୍ଭେମାନେ ଦେଖିବାକୁ ପାଉଁ ଯେ, ସେ ସମୟରେ, ଶାସିତ ତାର ଶାସକର ଆଚରଣକୁ ବିଶେଷଭାବରେ ବିଶ୍ଳେଷଣ କରି ଦେଖିବାକୁ ଚେଷ୍ଟା କରୁ ନ ଥିଲା; ଶାସକ ତାର କ୍ଷମତା ଉପଯୁକ୍ତ ଭାବରେ ପ୍ରୟୋଗ କରୁଛି କି ନା, ତାହା ଭାବିବାକୁ ଖୋଜ ନ ଥିଲା । ମାତ୍ର ମଧ୍ୟଯୁଗର ଶେଷ ଆଡ଼କୁ ମନୁଷ୍ୟ ଏ ବିଗରେ ସତର୍କ ହେବାକୁ ଆରମ୍ଭ କଲା । କ୍ରମେ ତାର ଧାରଣା ଦୃଢ଼ୀଭୂତ ହେଲା ଯେ, ଶାସନ କହିଲେ ଶାସକର ସ୍ୱେଚ୍ଛାଚାର ନୁହେଁ, ଶାସକର ଜନ୍ମଗତ ଅଧିକାର ବୋଲି କିଛି ନାହିଁ, ଶାସିତର ଇଚ୍ଛାନୁସାରେ ଶାସନ ନିୟନ୍ତ୍ରିତ ହେବା ଉଚିତ । କ୍ରମେ ମନୁଷ୍ୟ ବୁଝିଲା ଯେ, ମାନବ ମାତ୍ରେ ସ୍ୱାଧୀନ । ସମସ୍ତେ ଭ୍ରାତୃଭାବରେ ଅନୁପ୍ରାଣିତ ହୋଇ ଚଳିବା ଉଚିତ । ମନୀଷୀ ରୁଷୋଙ୍କ ଭାଷାରେ କହିବାକୁ ଗଲେ,—ମାନବ ସ୍ୱାଧୀନ ହୋଇ ଜନ୍ମଲାଭ କରିଛି ("Man is born free") ସାମ୍ୟ,

ମୈତ୍ରୀ ଓ ସ୍ୱାଧୀନତା ସମାଜର ମୂଳମନ୍ତ୍ର । ଗଣତନ୍ତ୍ର ହିଁ ଶାସନର ମୂଳଭିତ୍ତି । ଫରାସୀ ବିପ୍ଳବ ଜନସମାଜରେ ଏହି ବାଣୀ ପ୍ରଚାର କଲା । ଫ୍ରାନ୍‌ସରେ ଏହି ନୀତିରେ ସମାଜ ଓ ରାଷ୍ଟ୍ର ଗଠନ ପାଇଁ ଉଦ୍ୟମ ହେଲା ।

ଫରାସୀ ବିପ୍ଳବର କାରଣ:—ନାନା କାରଣରୁ ଫ୍ରାନ୍‌ସ ଦେଶରେ ବିପ୍ଳବ ଉପସ୍ଥିତ ହୋଇଥିଲା । ଏହି ବିପ୍ଳବକୁ ବୁଝିବାକୁ ହେଲେ ସେ ସମୟରେ ଫ୍ରାନ୍‌ସର ଅବସ୍ଥା କଣ ଥିଲା ତାହା ବୁଝିବା ଦରକାର; କାରଣ ଫ୍ରାନ୍‌ସର ତତ୍‌କାଳୀନ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଦୁରବସ୍ଥା ଯୋଗୁଁ ଏହି ବିପ୍ଳବ ଦେଖାଦେଇଥିଲା । ରାଜା ଥିଲେ ସ୍ୱେଚ୍ଛାଚାରୀ ଶାସକ । ସେ ମନେ କରୁଥିଲେ ଯେ, ଶାସନ କରିବା ହିଁ ତାଙ୍କର ଈଶ୍ୱରଦତ୍ତ ଅଧିକାର । ଜନସାଧାରଣଙ୍କ ଇଚ୍ଛା ବା ଅନିଚ୍ଛା ଉପରେ ତାହା ନିର୍ଭର କରେ ନାହିଁ । ରାଜା ନିଜର କାର୍ଯ୍ୟ ପାଇଁ ରାଜ୍ୟର କୌଣସି ଲୋକଠାରେ ଦାୟୀ ନୁହନ୍ତି । ତାଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ପୃଥିବୀରେ କାହାର ଅଧିକାର ନାହିଁ । ପ୍ରଜା କେବଳ ତାଙ୍କର ଆଦେଶ ମାନି ଚଳିବ ଓ ତାଙ୍କର ଇଚ୍ଛାଧୀନ ହୋଇ ରହିବ । ଫ୍ରାନ୍‌ସର ରାଜା ବିଳାସ ବ୍ୟସନରେ ଦିନାତିପାତ କରୁଥିଲେ । ସେ ରାଜଧାନୀଠାରୁ ବାର ମାଇଲ ଦୂରରେ ଭର୍ସେଲ୍‌ସ୍ ନାମକ ସ୍ଥାନରେ ଏକ ପ୍ରକାଣ୍ଡ ରମଣୀୟ ପ୍ରାସାଦରେ ବାସ କରୁଥିଲେ । ଉକ୍ତ ପ୍ରାସାଦ ସୌନ୍ଦର୍ଯ୍ୟରେ ଓ ଆଡ଼ମ୍ବରରେ ସମସ୍ତ ଇଉରୋପୀୟ ରାଜନ୍ୟମଣ୍ଡଳର ଈର୍ଷାର ବସ୍ତୁ ଥିଲା । ସେଥିରେ ରାଜାଙ୍କର ଆତ୍ମୀୟ-ସ୍ୱଜନ, ସାମନ୍ତ, ପରିଚାରକ, ଅତିଥି, ଅଭ୍ୟାଗତ ମିଶି ଅଠର ହଜାର ଲୋକଙ୍କ ପାଇଁ ବ୍ୟବସ୍ଥା ଥିଲା । କେବଳ ରାଣୀଙ୍କର ଥିଲେ ପାଞ୍ଚଶହ ଭୃତ୍ୟ । ରାଜାଙ୍କର ଅସ୍ତାବଳରେ ଥିଲେ ୧୯୦୦ ଅଶ୍ୱ । ଏହି ବିପୁଳ ରାଜସଂସ୍ଥା ପାଇଁ ଖର୍ଚ୍ଚ ହେଉଥିଲା

ରାଜ୍ୟର କୋଟି କୋଟି ଟଙ୍କା । ରାଜାଙ୍କର କ୍ଷମତା ଥିଲା ଅସୀମ । ତାଙ୍କର ଆଦେଶ ମାତ୍ରେ ଯେ କେହି ବନ୍ଦୀ ହୋଇ ପାରୁଥିଲା, ଯେ କୌଣସି ଲୋକ ଯେ କୌଣସି ମୁହୂର୍ତ୍ତରେ ସମ୍ପତ୍ତିରୁ ବଞ୍ଚିତ ହୋଇ ପାରୁଥିଲା ।

ରାଜ୍ୟର ଶାସନ ବ୍ୟବସ୍ଥା ଭଲ ନ ଥିଲା । ରାଜାଙ୍କୁ ସାହାଯ୍ୟ କରିବାପାଇଁ ପାଞ୍ଚଟି ସଭା ବା କାଉନସିଲ୍ ଥିଲା ଓ ସେଗୁଡ଼ିକର ଅଖଣ୍ଡ କ୍ଷମତା ଥିଲା । ସରକାର ଉପରେ କୌଣସି ପ୍ରଭାବ ଅଙ୍କୁଶ ନ ଥିଲା । ବିଭିନ୍ନ ପ୍ରଦେଶରେ ଭିନ୍ନ ଭିନ୍ନ ପ୍ରକାର ଆଇନ ଚଳୁଥିଲା । ପ୍ରାଦେଶିକ ଶାସନକର୍ତ୍ତାମାନେ ସାଧାରଣତଃ ଭର୍ସେଲସ୍‌ରେ ଯାଇ ବାସ କରୁଥିଲେ । ପ୍ରଦେଶମାନଙ୍କରେ ଅତ୍ୟାଚାରର ସୀମା ନ ଥିଲା ।

ରାଜ୍ୟର ଆର୍ଥିକ ଅବସ୍ଥା ଶୋଚନୀୟ ଥିଲା । ସରକାର ଋଣ କରିବରେ ପଡ଼ୁଥିଲେ । ତଥାପି ବ୍ୟୟର ପରିମାଣ ବରାବର ବଢ଼ି ଚାଲିଥିଲା । ରାଜକୋଷ ପ୍ରାୟ ଶୂନ୍ୟ ହୋଇ ପଡ଼ିଥିଲା । କରଦାତାମାନେ କରଭାରରେ ଏପରି ପ୍ରପୀଡ଼ିତ ହୋଇ ପଡ଼ିଥିଲେ ଯେ, ସେମାନଙ୍କ ଉପରେ ଅଧିକ କର ବସାଇବା ଅସମ୍ଭବ ଥିଲା । ଫରାସୀ ସମାଜ ତିନି ଶ୍ରେଣୀ ବା ଇଷ୍ଟେଟ୍‌ରେ ବିଭକ୍ତ ଥିଲା; ଯଥା— ଧର୍ମଯାଜକ ଶ୍ରେଣୀ, ସମ୍ଭ୍ରାନ୍ତ ଶ୍ରେଣୀ ଓ ସାଧାରଣ ଲୋକେ । ସମାଜରେ ଘୋର ଅସମାନତା ଘୋଟି ରହିଥିଲା । ପ୍ରଥମ ଦୁଇ ଶ୍ରେଣୀର ଲୋକମାନେ ସମସ୍ତପ୍ରକାର ସୁବିଧା ଭୋଗ କରୁଥିଲେ । ସେମାନେ ବଡ଼ ବଡ଼ ପଦରେ ପ୍ରତିଷ୍ଠିତ ଥିଲେ । ଧନୀ ଓ ବିଭବଶାଳୀ ହେଲେ ସୁଦ୍ଧା ସେମାନଙ୍କୁ ପ୍ରାୟ କର ଦେବାକୁ ପଡ଼ୁ ନ ଥିଲା । ସେମାନଙ୍କ ଉପରେ ସରକାରୀ ଅଦାଲତର କୌଣସି କର୍ତ୍ତୃତ୍ୱ ନ ଥିଲା । ତୃତୀୟ ଶ୍ରେଣୀର ଅବସ୍ଥା ବଡ଼ ଶୋଚନୀୟ ଥିଲା । ମଧ୍ୟବିତ୍ତ ଲୋକେ ଓ କୃଷକମାନେ ଏହି ଶ୍ରେଣୀର ଅନ୍ତର୍ଗତ ଥିଲେ ।

ଫ୍ରାନ୍ସ କୃଷିପ୍ରଧାନ ଦେଶ ଥିଲା । ଲୋକ ସଂଖ୍ୟାର ଦଶଭାଗରୁ ନଅ ଭାଗ ଥିଲେ କୃଷକ । ସେମାନେ ବଡ଼ ହୀନ ଅବସ୍ଥାରେ ପଡ଼ି ରହୁଥିଲେ । ଜଣେ ଲେଖକ ଚାର୍ଲ୍‌ସ କହୁଛନ୍ତି—'ସେମାନେ ତୃତୀୟ ଶ୍ରେଣୀର ଅନ୍ନ ଛଡ଼ା ଅନ୍ୟ କିଛି ଖାଇବାକୁ ପାଉନଥିଲେ ।' ତଥାପି ସେମାନଙ୍କୁ ଆୟର ଶତକଡ଼ା ୫୫ ଭାଗ ରାଜକୋଷକୁ ଦେବାକୁ ପଡ଼ୁଥିଲା । ତା ଛଡ଼ା ଜମିଦାର ଓ ଧର୍ମଯାଜକମାନଙ୍କୁ ମଧ୍ୟ ନାନା ପ୍ରକାର କର ଦେବାକୁ ପଡ଼ୁଥିଲା । ଏ ସମସ୍ତ ଦେଇ ପରେ କୃଷକ ହାତରେ ଅବଶିଷ୍ଟ ରହୁଥିଲା ଆୟର ଏକ ପଞ୍ଚମାଂଶ ମାତ୍ର । ସେଥିରେ ତାକୁ ଚଳିବାକୁ ପଡ଼ୁଥିଲା । ଫଳମାନରେ ଜୀବନଧାରଣ କରିବା ଅସମ୍ଭବ ହୋଇ ଉଠୁଥିଲା । ଫସଲ ହାନିଜନିତ ଦୁର୍ଭିକ୍ଷ ଘଟିଲେ, ଲୋକ ପୋକମାଛି ପରି ମରୁଥିଲେ । ଦେଶରେ ଭିକ୍ଷୁକଙ୍କ ସଂଖ୍ୟା ଥିଲା ଅତ୍ୟଧିକ । କୃଷକମାନେ ନାନା ଭାବରେ ଅତ୍ୟାଚାରିତ ହେଉଥିଲେ । ଜମିଦାରମାନେ କୃଷକମାନଙ୍କ କୃଷିକ୍ଷେତ୍ରରେ ମୃଗୟା ପଶୁ ଅବାଧରେ ଛାଡ଼ି ଦେଉଥିଲେ ଓ ତଦ୍ଦ୍ୱାରା କୃଷି ନଷ୍ଟ ହେଉଥିଲେ ସୁଦ୍ଧା କୃଷକକୁ ତାହା ନୀରବରେ ସହିବାକୁ ପଡ଼ୁଥିଲା ।

ଫ୍ରାନ୍ସରେ ବ୍ୟକ୍ତିଗତ, ଧର୍ମଗତ ବା ରାଜନୈତିକ କୌଣସି ପ୍ରକାର ସ୍ୱାଧୀନତା ନ ଥିଲା । ଲୋକେ ସଭା ସମିତି କରିପାରୁ ନ ଥିଲେ । ଅନେକ ସମୟରେ ବିନା କାରଣରେ ଓ ବିନା ବିଚାରରେ କର୍ତ୍ତୃପକ୍ଷ ଲୋକଙ୍କୁ କାରାଗାରରେ ବନ୍ଦୀ କରି ରଖି ଦେଉଥିଲେ । ସରକାରଙ୍କର ବହୁସଂଖ୍ୟକ ବନ୍ଦୀଶାଳା ଥିଲା । ତନ୍ମଧ୍ୟରେ ପ୍ରଧାନ ଥିଲା ବେଷ୍ଟାଇଲ (Bastille) । ତତ୍କାଳୀନ ଲବଣ ଅଇନ ଅନୁସାରେ ସାତବର୍ଷରୁ ଊର୍ଦ୍ଧ୍ୱ ବୟସ୍କ ପ୍ରତ୍ୟେକ ବ୍ୟକ୍ତିକୁ ବର୍ଷକୁ ସାତ ପାଉଣ୍ଡ ଲୁଣ କ୍ରୟ କରିବାକୁ ପଡ଼ୁଥିଲା, ତାହା ନ କଲେ

ଟେଲଦଣ୍ଡ ଭୋଗିବାକୁ ହେଉଥିଲା । ପ୍ରତିବର୍ଷ ଫ୍ରାନ୍ସରେ ଏହି କାରଣରୁ ପ୍ରାୟ ୨୦୦୦୦ ଲୋକ ବନ୍ଦୀ ହେଉଥିଲେ ଏବଂ ପ୍ରାୟ ପାଞ୍ଚଶହ ଲୋକ ଫାଶି ପାଉଥିଲେ ।

ଏହି ସମୟରେ କେତେ ଜଣ ଶକ୍ତିଶାଳୀ ଲେଖକ ଫ୍ରାନ୍ସରେ ଅବତୀର୍ଣ୍ଣ ହୋଇ ନାନା କୁସଂସ୍କାର ବିରୁଦ୍ଧରେ ଲେଖନୀ ଚାଳନା କରିଥିଲେ । ସେମାନଙ୍କର ବଳିଷ୍ଠ ସମାଲୋଚନା ଲୋକ ମନରେ ଅପୂର୍ବ ପ୍ରଭାବ ବିସ୍ତାର କରିଥିଲା । ଦେଶରେ ଏକ ନୂତନ ଭାବଧାରା ପ୍ରବାହିତ ହୋଇଥିଲା । ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତାର ମନ୍ତ୍ର ସେମାନେ ଦେଶରେ ପ୍ରଚାର କରିଥିଲେ । ଏହି ଶକ୍ତିମାନ ଲେଖକ-ମାନଙ୍କ ଲେଖା ପଢ଼ି ଲୋକେ ଜାଣି ପାରିଥିଲେ, ଉପର ଅମେରିକାର ମୁକ୍ତିସଂଗ୍ରାମ କିପରି ଯୁକ୍ତ ହୋଇଥିଲା । ଉକ୍ତ ଲେଖକମାନଙ୍କ ମଧ୍ୟରେ ପ୍ରସିଦ୍ଧ ଥିଲେ ମଣ୍ଟେସ୍କୁ ( Montesquieu ) ଭଲ୍ଟେୟାର (Voltaire) ଓ ରୁଶୋ ( Rousseau ) । ମଣ୍ଟେସ୍କୁ ବ୍ରିଟିଶ ଶାସନ ପ୍ରଣାଳୀର ବିଶ୍ଳେଷଣ କରି ତାହାର ଭୂୟସୀ ପ୍ରଶଂସା କରି-ଯାଇଅଛନ୍ତି । ଭଲ୍ଟେୟାର ଫରାସୀ ବିଚାର ପ୍ରଣାଳୀର ତୀବ୍ର ସମାଲୋଚନା କରି ଅଭିଜାତ ଅପବ୍ୟବହାରକୁ ନିନ୍ଦା କରିଛନ୍ତି । ରୁଶୋ ତତ୍କାଳୀନ ସମାଜ, ଶିକ୍ଷା ବ୍ୟବସ୍ଥା ଓ ଶାସନପ୍ରଣାଳୀର ଆମୂଳଚୂଳ ପରିବର୍ତ୍ତନ ଦାବି କରିଥିଲେ । ତାଙ୍କର ପ୍ରସିଦ୍ଧ ପୁସ୍ତକ ସୋସାଲ କଣ୍ଟ୍ରାକ୍ଟ ( Social Contraot )ରେ ସ୍ୱାଧୀନତାର ବାଣୀ ଅପୂର୍ବ ଭାବରେ ପ୍ରଚାର କରାଯାଇଅଛନ୍ତି ଓ ଶାସନ କ୍ଷେତ୍ରରେ ଜନସାଧାରଣଙ୍କ ପ୍ରାଧାନ୍ୟ ପ୍ରତିଷ୍ଠାର ଆବଶ୍ୟକତା ବିଶଦଭାବରେ ବୁଝାଇ ଦେଇଯାଇଛନ୍ତି । ଏହି ବିଖ୍ୟାତ ମନୀଷୀମାନଙ୍କର ଉତ୍ତେଜନାପୂର୍ଣ୍ଣ ରଚନାବଳୀ ଫରାସୀ ବିପ୍ଳବ ପାଇଁ ପଥ ପ୍ରସ୍ତୁତ କରିଥିଲା ।

୧୭୭୪ ଖ୍ରୀଷ୍ଟାବ୍ଦରେ ଷୋଡ଼ଶ ଲୁଇ ଫ୍ରାନ୍ସର ସିଂହାସନ ଅଧିରୋହଣ କଲେ । ଲୁଇ ବଳିଷ୍ଠ ବ୍ୟକ୍ତିତ୍ୱସମ୍ପନ୍ନ ରାଜା ନ ଥିଲେ । ଦେଶର ଦୁରବସ୍ଥା ଚରମସୀମାରେ ଉପନୀତ ହୋଇ ସାରିଥିଲା । ସେ ଉକ୍ତ ଅବସ୍ଥାର ସମ୍ମୁଖୀନ ହୋଇ ତାର ଉପଯୁକ୍ତ ପ୍ରତିକାର କରିବାକୁ ସମର୍ଥ ହେଲେ ନାହିଁ । ରାଣୀ ଏଣ୍ଟୋନାଇଟ୍ଟୀ ଓ ଅନ୍ୟାନ୍ୟ କେତେକ ସଂସ୍କାରବିରୋଧୀ ବ୍ୟକ୍ତିଙ୍କ ପ୍ରଭାବରେ ପଡ଼ି ସେ ପଥଭ୍ରଷ୍ଟ ହୋଇ ପଡ଼ିଲେ ।

**ବିପ୍ଳବର ଆରମ୍ଭ ଓ ଅଗ୍ରଗତି**—ଷୋଡ଼ଶ ଲୁଇ ସିଂହାସନ ଅଧିରୋହଣ କରି ଦେଖିଲେ ଯେ, ରାଜ୍ୟର ଆର୍ଥିକ ଅବସ୍ଥା ଶୋଚନୀୟ । ଉକ୍ତ ଅବସ୍ଥାର ଉନ୍ନତି ପାଇଁ ସେ ଫରାସୀ ପାର୍ଲିମେଣ୍ଟ ବା ଷ୍ଟେଟ୍ସ ଜେନେରାଲ୍ ( States General ) ଆହ୍ୱାନ କରିବାକୁ ବାଧ୍ୟ ହେଲେ । ବିଗତ ୧୭୫ ବର୍ଷ ହେଲା ଏହି ପାର୍ଲିମେଣ୍ଟ ସଭା ବସି ନ ଥିଲା । ରାଜା ମନେକଲେ, ରାଜ୍ୟର ଏ ବିପତ୍ତି ବେଳେ ପାର୍ଲିମେଣ୍ଟ ବିପତ୍ତିମୋଚନର ଉପାୟ ସ୍ଥିର କରିବ ଓ ରାଜକୋଷ ପୂର୍ଣ୍ଣ କରିବା ପାଇଁ ବ୍ୟବସ୍ଥା ଅବଲମ୍ବନ କରିବ । ଫରାସୀ ପାର୍ଲିମେଣ୍ଟ ତିନୋଟି କକ୍ଷ ବା 'ଚେମ୍ବର'ରେ ବିଭକ୍ତ ଥିଲା । ପ୍ରଥମଟିରେ ଥିଲେ ଧର୍ମଯାଜକ ସମ୍ପ୍ରଦାୟର ପ୍ରତିନିଧିମାନେ, ଦ୍ୱିତୀୟରେ ସମ୍ଭ୍ରାନ୍ତଶ୍ରେଣୀର ପ୍ରତିନିଧିବର୍ଗ ଓ ତୃତୀୟରେ ଥିଲେ ସାଧାରଣ ଲୋକଙ୍କ ପ୍ରତିନିଧି । ପ୍ରତ୍ୟେକ କକ୍ଷ ସ୍ୱତନ୍ତ୍ର ଭାବରେ ଭୋଟ ଦେଉଥିଲେ । ଫଳତଃ, ପ୍ରଥମ ଦୁଇ କକ୍ଷରେ ଭୋଟ ସବୁବେଳେ ଅଧିକ ହେଉଥିଲା ଏବଂ ତୃତୀୟ କକ୍ଷର ପରାଜୟ ଘଟୁଥିଲା । ସାମନ୍ତବାଦୀ ଉପର କକ୍ଷ ଦୁଇଟି ତୃତୀୟ କକ୍ଷର ସମସ୍ତ ସଂସ୍କାର ଚେଷ୍ଟାକୁ ପଣ୍ଡ କରି ଦେଉଥିଲେ । ଲୋକସାଧାରଣ ଏଥିରେ ଅସନ୍ତୁଷ୍ଟ ଥିଲେ ।

ଏ ବ୍ୟବସ୍ଥା ବିରୁଦ୍ଧରେ ତୁମୁଳ ଆପତ୍ତି ଅଭିଯୋଗ ହୋଇ ଆସୁଥିଲା । ସରକାର ଏହାର କୌଣସି ସନ୍ତୋଷଜନକ ସମାଧାନ କରିପାରିଲେ ନାହିଁ । ୧୭୮୯ ଖ୍ରୀଷ୍ଟାବ୍ଦର ମେ ମାସ ୫ ତାରିଖରେ ଷ୍ଟେଟ୍‌ସ ଜେନେରାଲ ଡକାଗଲା । ସେତେବେଳକୁ ସାଧାରଣ ଲୋକଙ୍କ ପ୍ରତିନିଧିବର୍ଗ ବହୁବିଧ ସଂସ୍କାର ଦାବି କରି ସାରିଥିଲେ । ସେମାନେ ଚାହୁଁଥିଲେ, ଶାସନ-ବିଧାନ ଗଢ଼ାଯାଉ, ସ୍ୱେଚ୍ଛାଚାରୀ ଶାସନ ଲୋପ କରାଯାଉ, ପାର୍ଲାମେଣ୍ଟ ନିୟମିତ ଭାବରେ ଡକାଯାଉ, ସାଧାରଣ ପ୍ରତିନିଧିଙ୍କୁ ଆଇନ ପ୍ରଣୟନରେ ଅଂଶ ଗ୍ରହଣ କରିବାକୁ ଦିଆଯାଉ; ସେମାନଙ୍କର ସମ୍ମତିକ୍ରମେ କରଧାର୍ଯ୍ୟ କରାଯାଉ ଓ ସବୁଶ୍ରେଣୀର ଲୋକେ କର ଦିଅନ୍ତୁ । ସେମାନେ ଅଧିକ ମଧ୍ୟ ଦାବି କରିଥିଲେ ଯେ ସାମନ୍ତ ପ୍ରଥାନୁଯାୟୀ ଯେତେ କର ଆଦାୟ ହେଉଛି, ତାହା ଉଠିଯାଉ । ମେ ମାସ ୬ ତାରିଖ ଦିନ ତିନି କକ୍ଷ ମଧ୍ୟରେ ଗୁରୁତର ମତଭେଦ ଉପସ୍ଥିତ ହେଲା । ମତଭେଦର କାରଣ ଥିଲା, ତିନି କକ୍ଷର ପ୍ରତିନିଧିମାନେ ଏକତ୍ର ସମ୍ମିଳିତ ହୋଇ ଭୋଟ ଦେବେ, ନା ପ୍ରତି କକ୍ଷ ସ୍ୱତନ୍ତ୍ର ଭାବରେ ଭୋଟ ଦେବେ । ଏହି ପ୍ରଶ୍ନର କୌଣସି ମୀମାଂସା ହୋଇପାରିଲା ନାହିଁ । ଏହା ଫଳରେ ଏକ ଅଚଳ ଅବସ୍ଥାର ସୃଷ୍ଟି ହେଲା । ତୃତୀୟ କକ୍ଷର ସମସ୍ତ ଚେଷ୍ଟା ସତ୍ତ୍ୱେ ସମ୍ମିଳିତ ଭାବରେ ଭୋଟ ଦେବାପାଇଁ ଉପର କକ୍ଷଦ୍ୱୟ ରାଜି ହେଲେ ନାହିଁ । ଅବଶେଷରେ ଜୁନମାସ ୧୭ ତାରିଖରେ ତୃତୀୟ କକ୍ଷ ନିଜକୁ "ଜାତୀୟ ସମ୍ମିଳନୀ" (National Assembly) ବୋଲି ଘୋଷଣା କଲା ।

ଏହାପରେ ଜାତୀୟ ସମ୍ମିଳନୀକୁ ଦମନ କରିବା ପାଇଁ ନାନା ପ୍ରକାର ଚେଷ୍ଟା ଚାଲିଲା । ରାଜ ସରକାର ସୈନ୍ୟ ସାହାଯ୍ୟରେ ତୃତୀୟ କକ୍ଷର ପ୍ରତିନିଧିମାନଙ୍କୁ ବ୍ୟବସ୍ଥାପକ ଗୃହରେ ପ୍ରବେଶ

କରିବାକୁ ଦେଲେ ନାହିଁ । ପ୍ରତିନିଧିମାନେ ଗୋଟିଏ ଟେନିସ୍ ପଡ଼ିଆରେ ସମବେତ ହୋଇ ପ୍ରତିଜ୍ଞା ଗ୍ରହଣ କଲେ ଯେ, ନୂତନ ଶାସନ ସମ୍ବିଧାନ ଗଠିତ ନ ହେବା ପର୍ଯ୍ୟନ୍ତ ସେମାନେ ସମ୍ମିଳନୀ ଭାଙ୍ଗିବେ ନାହିଁ । ଏହି ଜାତୀୟ ସମ୍ମିଳନୀର ନେତୃତ୍ୱ ଗ୍ରହଣ କରିଥିଲେ ମିରାବୁ ନାମକ ଏକବ୍ୟକ୍ତି । ରଜା ଜାତୀୟ ସମ୍ମିଳନୀ ଭାଙ୍ଗି ଦେବାକୁ ଆଦେଶ ଦେଲେ । ପାରିସ ସହର ନିକଟରେ ରଜାଙ୍କର ସୈନ୍ୟମାନେ ଆସି ଉପସ୍ଥିତ ହେଲେ । ଏହି ସମୟରେ ରଜା ସଂସ୍କାର ପକ୍ଷପାତୀ ମନ୍ତ୍ରୀ ନେକର ( Necker )ଙ୍କୁ ପଦଚ୍ୟୁତ କଲେ ! ଏଥିରେ ଲୋକେ ଅତିବ ଅସନ୍ତୁଷ୍ଟ ହୋଇ ପଡ଼ିଲେ । ପାରିସ ସହରର ଉତ୍ତ୍ୟକ୍ତ ଜନତା ଜାତୀୟ ସମ୍ମିଳନୀକୁ ସମର୍ଥନ କରି ସଶସ୍ତ୍ର ବିଦ୍ରୋହ ଆରମ୍ଭ କରିଦେଲେ । ୧୭୮୯ ଖ୍ରୀଷ୍ଟାବ୍ଦର ଜୁଲାଇ ମାସ ୧୪ ତାରିଖରେ ସେମାନେ ପାରିସ ସହରର ପ୍ରସିଦ୍ଧ କାରାଗାର ବେଷ୍ଟାଇଲ୍ ଦୁର୍ଗ ଦଖଲ କରି ବନ୍ଦୀମାନଙ୍କୁ ମୁକ୍ତ କରିଦେଲେ । ଏହିପରି ଭାବରେ ବିପ୍ଳବ ଆରମ୍ଭ ହୋଇଗଲା । ଜୁଲାଇ ୧୪ ତାରିଖ ଜାତୀୟ ଦିବସ ରୂପେ ଘୋଷିତ ହେଲା । ଏକ ନୂତନ ତିନିରଙ୍ଗ ପତାକା ଜାତୀୟ ପତାକା ରୂପେ ଗୃହୀତ ହେଲା । ପାରିସ ସହରରେ ଏକ ଜାତୀୟ ସୈନ୍ୟଦଳ ଗଠନ କରାଗଲା । ଆନ୍ଦୋଳନ କ୍ଷିପ୍ରଗତିରେ ଗ୍ରାମାଞ୍ଚଳକୁ ବ୍ୟାପିଲା । କୃଷକମାନେ ସେଥିରେ ଯୋଗ ଦେଲେ । ଅଗଷ୍ଟ ୪ ତାରିଖରେ ଫିଉଡାଲ ପ୍ରଥା ଲୋପ କରିଦିଆଗଲା । ଶ୍ରେଣୀବିଭାଗ ମଧ୍ୟ ଉଠାଇ ଦିଆଗଲା । ଦେଶରେ ସାମ୍ୟ ନୀତି ଘୋଷିତ ହେଲା । ଏହି ମଧ୍ୟରେ ଅନେକ ଧର୍ମଯାଜକ ଓ ଜମିଦାର ଶ୍ରେଣୀର ଲୋକ ବିପ୍ଳବରେ ଯୋଗଦେଇ ସାରିଥିଲେ ।

କିଛିଦିନ ପରେ ଏହି ବିପ୍ଳବ ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ଆରମ୍ଭ ହେଲା । ରାଣୀ ଏଣ୍ଟୋନାଇଟ୍ଟୀ ଓ ରଜାଙ୍କର ସମର୍ଥକମାନେ

ଏହି ପ୍ରତିକ୍ରିୟାରେ ବିଶେଷ ଅଂଶ ଗ୍ରହଣ କଲେ । ଲୋକସାଧାରଣଙ୍କ ମନରେ ଘୋର ସନ୍ଦେହ ଜାତ ହେଲା । ଦେଶରେ ନାନା ଜନରବ ବ୍ୟାପିଲା । ଏହି ସମୟରେ ଫ୍ରାନ୍ସରେ ଘୋର ଖାଦ୍ୟାଭାବ ଦେଖା-ଦେଇଥାଏ । ଅକ୍ଟୋବର ମାସ ପାଞ୍ଚ ତାରିଖରେ ହଜାର ହଜାର ଫରାସୀ ରମଣୀ ଭର୍ସେଲିସ୍ ଅଭିମୁଖେ ଶୋଭାଯାତ୍ରା କରି ଗଲେ । ଖାଦ୍ୟଦ୍ରବ୍ୟର ମୂଲ୍ୟ ହ୍ରାସ କରିବା ଲାଗି ସେମାନେ ଦାବିକଲେ । ହଜାର ହଜାର ବେକାର ଶ୍ରେଣୀର ଲୋକ, ଏପରିକି ଗୁଣ୍ଡାଦଳ ମଧ୍ୟ, ସେମାନଙ୍କ ସହିତ ଯୋଗ ଦେଲେ । ସେମାନେ ଯାଇ ରାଜପ୍ରାସାଦ ଆକ୍ରମଣ କଲେ ଏବଂ ରାଜା, ରାଣୀ ଓ ରାଜପରିବାରକୁ ଭର୍ସେଲିସରୁ ପାରିସକୁ ଧରି ଆଣିଲେ । ଜାତୀୟ ସମ୍ମିଳନୀ ମାନବର ଅଧିକାର ସମ୍ବନ୍ଧରେ ଏକ ଘୋଷଣାପତ୍ର ପ୍ରକାଶ କଲା । ଏହା "Declaration of the Rights of Man" ନାମରେ ଅଭିହିତ ।

ଜାତୀୟ ସମ୍ମିଳନୀ ଏକ ନୂତନ ଶାସନ ବ୍ୟବସ୍ଥା (Constitution) ପ୍ରଣୟନ କଲା ( ୧୭୯୧ )। ରାଜା ବାଧ୍ୟ ହୋଇ ଏହି ଶାସନ ବ୍ୟବସ୍ଥା ଅନୁସାରେ ଶାସନ କରିବାକୁ ପ୍ରତିଶ୍ରୁତ ହେଲେ । ୭୪୫ ଜଣ ନିର୍ବାଚିତ ପ୍ରତିନିଧିଙ୍କୁ ନେଇ ଏକ ବ୍ୟବସ୍ଥା ସଭା ଗଢ଼ାଗଲା । ସମସ୍ତ ଚର୍ଚ୍ଚ-ସମ୍ପତ୍ତି ଜାତୀୟ ସମ୍ପତ୍ତି ବୋଲି ଘୋଷିତ ହେଲା ଓ ଲୋକସାଧାରଣଙ୍କୁ ଅନେକ ସୁବିଧା ଦିଆଗଲା । ରାଜା ଓ ରାଣୀ ପ୍ରକୃତରେ ଏ ନୂତନ ବ୍ୟବସ୍ଥାର ପକ୍ଷପାତୀ ନଥିଲେ । ୧୭୯୧ ଖ୍ରୀଷ୍ଟାବ୍ଦର ଜୁନ୍‌ମାସ ୨୧ ତାରିଖରେ ସେମାନେ ଛଦ୍ମବେଶରେ ପଳାଇ ଗଲାବେଳେ ବାଟରେ ଧରା ପଡ଼ିଲେ । ଏହି ଘଟନା ପରେ ଲୋକେ ରାଜାଙ୍କୁ ଗଭୀର ସନ୍ଦେହ ଚକ୍ଷୁରେ ଦେଖିଲେ । ସାଧାରଣ-ତନ୍ତ୍ର ପ୍ରତିଷ୍ଠାର ଆକାଙ୍କ୍ଷା ତୀବ୍ର ହୋଇ ଉଠିଲା ।

ବ୍ୟବସ୍ଥା ସମ୍ବନ୍ଧରେ ସେତେବେଳେ ଦୁଇଟି ରାଜନୈତିକ ଦଳ ଥିଲେ । ଗୋଟିଏ ଦଳର ନାମ ଗିରଣ୍ଡିଷ୍ଟ ଦଳ (Girondists) ଓ ଅନ୍ୟଟିର ନାମ ଜାକୋବିନ୍‌ସ (Jacobins) । ଗିରଣ୍ଡିଷ୍ଟମାନେ କେତେକ ପରିମାଣରେ ଉଦାର ସ୍ୱଭାବପନ୍ନ ଥିଲେ, କିନ୍ତୁ ଜାକୋବିନ୍‌ମାନେ ଥିଲେ ଉଗ୍ରପନ୍ଥୀ । ଏହି ଉଗ୍ରପନ୍ଥୀମାନେ ରାଜା ଓ ରାଜପରିବାର ଲୋପ କରିଦେବାକୁ ବ୍ୟଗ୍ର ଥିଲେ । ସେମାନେ ଦିନକୁ ଦିନ ପ୍ରବଳ ହୋଇ ଉଠିଲେ । ଅବଶେଷରେ ୧୭୯୩ ଖ୍ରୀଷ୍ଟାବ୍ଦର ଜାନୁଆରୀ ୨୧ ତାରିଖରେ ଗିଲଟିନ ନାମକ ଏକ ଯନ୍ତ୍ର ସାହାଯ୍ୟରେ ରାଜାଙ୍କର ଶିରଚ୍ଛେଦ କରାଗଲା । ଏହାର



ଗିଲ୍‌ଟିନ

ଅଳ୍ପଦିନ ପୂର୍ବେ ଫ୍ରାନ୍‌ସରେ ସାଧାରଣତନ୍ତ୍ର (Republio) ପ୍ରତିଷ୍ଠିତ ହୋଇ ସାରିଥିଲା । ରାଜାଙ୍କର ଶିରଚ୍ଛେଦ ପରେ କିଛିଦିନ ବ୍ୟାପୀ ଦେଶରେ କେବଳ ରକ୍ତର ସ୍ରୋତ ବହିବାକୁ ଲାଗିଲା । ସମସ୍ତ

ରାଜପରିବାରଙ୍କୁ ହତ୍ୟା କରାଗଲା । ୧୭୯୩ ଖ୍ରୀଷ୍ଟାବ୍ଦର ଜୁଲାଇ ମାସରୁ ୧୭୯୪ ଖ୍ରୀଷ୍ଟାବ୍ଦର ଜୁଲାଇ ମାସ ପର୍ଯ୍ୟନ୍ତ ପ୍ରତିଦିନ ଶହ ଶହ ଲୋକଙ୍କର ମୁଣ୍ଡକାଟ ହେଲା । ଏହା ଅତଙ୍କକାଳ ବା Reign of Terror ନାମରେ ଇତିହାସରେ ପ୍ରସିଦ୍ଧ । ଏହି ସମୟର ପ୍ରଧାନ ନେତା ଥିଲେ ରବ୍‌ସ୍‌ପିଅର (Robespiere) । ତାଙ୍କୁ ମଧ୍ୟ ପରେ ତାଙ୍କର ବିପକ୍ଷ ଦଳ ହତ୍ୟା କଲେ । ରବସ୍ପିଅରଙ୍କ ହତ୍ୟା ପରେ ଅତଙ୍କକାଳର ଅବସାନ ଘଟିଲା । ଅଚିରେ ଏକ ନୂତନ ସମ୍ବିଧାନ ରଚିତ ହୋଇ ପ୍ରଚଳିତ ହେଲା । ତାହା ଫଳରେ ଡିରେକ୍‌ଟରୀ (Directory) ନାମକ ଏକ ନୂଆ କାର୍ଯ୍ୟକାରୀ ସଭା ଦେଶ ଶାସନର ଦାୟିତ୍ୱ ଗ୍ରହଣ କଲା ଏବଂ ୧୭୯୫ ରୁ ୧୭୯୯ ପର୍ଯ୍ୟନ୍ତ ସାଧାରଣତନ୍ତ୍ରର କାର୍ଯ୍ୟ ଚଳାଇଲା ।

ବିପ୍ଳବ ସମୟରେ ଇଉରୋପୀୟ ରାଜାମାନଙ୍କର ସହାନୁଭୂତି ଫ୍ରାନ୍‌ସର ରାଜା ଷୋଡ଼ଶ ଲୁଇଙ୍କ ପ୍ରତି ଅକୃଷ୍ଟ ହୋଇଥିଲା । ସେମାନେ ଫରାସୀ ବିପ୍ଳବକୁ ଦମନ କରିବାକୁ ଚେଷ୍ଟା କରିଥିଲେ । ତେଣୁ ଫରାସୀ ସାଧାରଣତନ୍ତ୍ରକୁ ଯୁଦ୍ଧରେ ଲିପ୍ତ ହେବାକୁ ପଡ଼ିଥିଲା । ଏହି ଯୁଦ୍ଧବେଳେ ନେପୋଲିୟନ ବୋନାପାର୍ଟ ( Napoleon Bonaparte ) ନାମକ ଏକ ମହାବୀର ବହୁତ ଖ୍ୟାତି ଅର୍ଜନ କରିଥିଲେ । ସେ ସମୟରେ ଅଷ୍ଟ୍ରିଆ ସହିତ ଫ୍ରାନ୍‌ସର ଯୁଦ୍ଧ ଚାଲିଥାଏ । ଇଟାଲୀର ଉତ୍ତରାଂଶ ଅଷ୍ଟ୍ରୀୟ ସମ୍ରାଟ୍‌ଙ୍କ ଅଧୀନରେ ଥାଏ । ଫ୍ରାନ୍‌ସର ଡିରେକ୍‌ଟରୀ ନେପୋଲିୟନଙ୍କୁ ଅଷ୍ଟ୍ରୀୟମାନଙ୍କ ବିରୁଦ୍ଧରେ ପ୍ରେରଣ କଲେ । ନେପୋଲିୟନ ଅଦ୍ଭୁତ ବୀରତ୍ୱ ପ୍ରକାଶ କରି ସେମାନଙ୍କୁ ଫ୍ରାନସର ପୂର୍ବାଞ୍ଚଳରୁ ତଡ଼ି ଦେଲେ ଏବଂ ତତ୍ପରେ ଇଟାଲୀ ଆକ୍ରମଣ କଲେ । ଇଟାଲୀ ଜୟ କରି ସେ

ମିଶର ଅଭିଯାନ ଆରମ୍ଭ କଲେ । ମିଶରେ ତାଙ୍କର ହସ୍ତଗତ ହେଲା ।

ଏହି ସମୟରେ ସେ ଶୁଣିଲେ ଯେ ଡିରେକ୍ଟର ସଭ୍ୟମାନଙ୍କ ମଧ୍ୟରେ ଘୋର ମତଭେଦ ଉପସ୍ଥିତ ହୋଇଅଛି । ଅଷ୍ଟ୍ରୀୟମାନେ ପୁଣି ପ୍ରବଳ ହୋଇ ଉଠିଛନ୍ତି । ସେମାନେ ଫରାସୀମାନଙ୍କୁ ଇଟାଲୀରୁ ବିତାଡ଼ିତ କରିଛନ୍ତି । ଏପଟେ ଶତ୍ରୁମାନେ ଫ୍ରାନ୍ସ ଆକ୍ରମଣ କରିବାକୁ ଉଦ୍ୟତ । ନେପୋଲିୟନ ଏ ଦୁଃସମ୍ବାଦ ଶ୍ରବଣ କରି ଅନତିବିଳମ୍ବେ ଫ୍ରାନ୍ସକୁ ଫେରି ଆସିଲେ । ଡିରେକ୍ଟରୀ ଭାଙ୍ଗିଦେଇ ସେ ନୂତନ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କଲେ । ତଦନୁସାରେ ତିନି ଜଣ କନ୍‌ସଲ୍ ନିଯୁକ୍ତ ହେଲେ । ନେପୋଲିୟନ ହେଲେ ପ୍ରଥମ କନ୍‌ସଲ୍ । ପ୍ରାୟ ସମସ୍ତ କ୍ଷମତା ତାଙ୍କର ହାତରେ ରହିଲା । ୧୮୦୪ ଖ୍ରୀଷ୍ଟାବ୍ଦରେ ନେପୋଲିୟନ "ଫ୍ରାନ୍ସର ସମ୍ରାଟ୍" (Emperor of France) ଉପାଧି ଗ୍ରହଣ କଲେ ଓ ସାଧାରଣତନ୍ତ୍ରର ଅବସାନ ଘଟିଲା । କ୍ରମେ ସେ ଇଉରୋପରେ ପ୍ରବଳ ପ୍ରାଧାନ୍ୟ ପ୍ରତିଷ୍ଠା କଲେ । ବହୁ ଯୁଦ୍ଧରେ ଜୟଲାଭ କରି ସେ ଇଉରୋପର ଅଧିକାଂଶ ଅଞ୍ଚଳ ହସ୍ତଗତ କଲେ । ଅବଶେଷରେ ତାଙ୍କର ପତନ ଘଟିଲା । ୧୮୧୫ ଖ୍ରୀଷ୍ଟାବ୍ଦରେ ୱାଟରଲୁ ନାମକ ସ୍ଥାନରେ ନେପୋଲିୟନ ପରାସ୍ତ ହୋଇ ସେଣ୍ଟ ହେଲେନା ଦ୍ୱୀପରେ



ନେପୋଲିୟନ

ବନ୍ଦୀ ହେଲେ । ବନ୍ଦୀ ଅବସ୍ଥାରେ ତାଙ୍କର ମୃତ୍ୟୁ ଘଟିଲା । ଫ୍ରାନ୍‌ସରେ ପୂର୍ବ ରାଜ ବଂଶର ଜଣେ ପ୍ରତିନିଧି ଅଷ୍ଟାଦଶ ଲୁଇ ନାମରେ ସିଂହାସନ ଅରୋହଣ କଲେ । ଦେଶରେ ପୁନର୍ବାର ରାଜତନ୍ତ୍ର ପ୍ରତିଷ୍ଠିତ ହେଲା ।

**ଫରାସୀ ବିପ୍ଳବର ବୈଶିଷ୍ଟ୍ୟ:—**ନାନା କାରଣରୁ ଫରାସୀ ବିପ୍ଳବକୁ ପୃଥିବୀ ଇତିହାସର ଏକ ଅତି ଗୁରୁତ୍ୱପୂର୍ଣ୍ଣ ଘଟନା ବୋଲି ମନେ କରାଯାଏ । ଏହା ଫଳରେ ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତାର ତ୍ରିବେଣୀ ଧାରା ବିଶ୍ୱଅଙ୍କେ ସଞ୍ଚାରିତ ହେଲା । ଫ୍ରାନ୍‌ସରେ ଏହା ଅପୂର୍ବ ପରିବର୍ତ୍ତନ ସୃଷ୍ଟି କଲା । ସାମନ୍ତ ପ୍ରଥାର ଅବସାନ ଘଟିଲା । ଧନୀ ଦରିଦ୍ର ସମସ୍ତେ ଆଇନ ଚକ୍ଷୁରେ ସମାନ ହେଲେ । ଜନ-ସାଧାରଣଙ୍କ ମନରେ ଅପୂର୍ବ ଚେତନା ଜାଗ୍ରତ ହେଲା । ଭୂସ୍ୱତ୍ୱସମ୍ପନ୍ନ ସ୍ୱାଧୀନ କୃଷକ ଶ୍ରେଣୀର ଅଭ୍ୟୁତ୍‌ଥାନ ଏହି ବିପ୍ଳବର ଏକ ସ୍ଥାୟୀ ଫଳ ବୋଲି ବିବେଚିତ ହୁଏ । ଫ୍ରାନ୍‌ସ ବାହାରେ ଏହାର ପ୍ରଭାବ ପ୍ରବଳ ଭାବରେ ଅନୁଭୂତ ହେଲା । ଇଙ୍ଗଲେଣ୍ଡର ଜନସାଧାରଣଙ୍କ ମନରେ ବୈପ୍ଳବିକ ଅଦର୍ଶ ସ୍ଥାନ ଲାଭକଲା । ନାନା ଦେଶରେ ଜାତୀୟତାର ତେଜ ଖେଳିଗଲା । ଇଟାଲୀ ଓ ପୋଲଣ୍ଡରେ ଜାତୀୟ ଚେତନାର ଉଦ୍ରେକ ଏହାର ପରିଣାମ । ଫରାସୀ ବିପ୍ଳବରେ ଗଣତନ୍ତ୍ର ଭାବରେ ବିପୁଳ ବିଜୟ ଘଟିଲା ଏବଂ ବ୍ୟକ୍ତି ସ୍ୱାଧୀନତାର ପ୍ରତିଷ୍ଠା ପାଇଁ ଏହା ପଥ ପ୍ରସ୍ତୁତ କଲା ।

**ଗ୍ରେଟ୍ ବ୍ରିଟେନରେ ଗଣତାନ୍ତ୍ରିକ ଆନ୍ଦୋଳନ:—** ବର୍ତ୍ତମାନ ଯୁଗରେ ନିର୍ବାଚିତ ଲୋକ ପ୍ରତିନିଧିଙ୍କ ଦ୍ୱାରା ଦେଶଶାସନ ଗଣତନ୍ତ୍ରର ମୂଳଭିତ୍ତି । ଏ ଦିଗରେ ଇଂଲଣ୍ଡର ଉଦ୍ୟମ ଇତିହାସ-ପ୍ରସିଦ୍ଧ । ବହୁ କାଳରୁ ଇଂଲଣ୍ଡ ଏକ ରାଜତନ୍ତ୍ର ଶାସିତ ଦେଶ । ଅଦ୍ୟାବଧି ସେଠାରେ ରାଜତନ୍ତ୍ର ପ୍ରତିଷ୍ଠିତ । ମାତ୍ର ଉକ୍ତ ରାଜତନ୍ତ୍ରରେ

ରାଜା କେବଳ ନାମକୁ ମାତ୍ର ରାଜା, ତାଙ୍କର ରାଜକ୍ଷମତା ଅତ୍ୟନ୍ତ ସୀମାବଦ୍ଧ । ରାଜ୍ୟ ପ୍ରକୃତରେ ନିର୍ବାଚିତ ଲୋକ ପ୍ରତିନିଧିଙ୍କ ଦ୍ୱାରା ଗଣତନ୍ତ୍ର ନୀତିରେ ଶାସିତ । ଏହି ଗଣତନ୍ତ୍ର ଶାସନର ପ୍ରଧାନ ଅଂଶ ପାର୍ଲାମେଣ୍ଟ । ତ୍ରୟୋଦଶ ଶତାବ୍ଦୀଠାରୁ ଏ ପର୍ଯ୍ୟନ୍ତ ବ୍ରିଟିଶ ପାର୍ଲାମେଣ୍ଟ ରହିଆସିଛି । ପାର୍ଲାମେଣ୍ଟର କ୍ରମ ବିକାଶହିଁ ଇଂଲଣ୍ଡ ଇତିହାସର ବିଶିଷ୍ଟ ଘଟଣା । ରାଜା ଓ ପାର୍ଲାମେଣ୍ଟ ମଧ୍ୟରେ ସମ୍ପର୍କ ଓ ପାର୍ଲାମେଣ୍ଟର ଉତ୍ତରୋତ୍ତର କ୍ଷମତା ବୃଦ୍ଧି, ଉକ୍ତ ଇତିହାସର ପ୍ରଧାନ ପ୍ରଣିଧାନର ବିଷୟ । ପାର୍ଲାମେଣ୍ଟ-ସୃଷ୍ଟି ପୂର୍ବରୁ ସମ୍ଭ୍ରାନ୍ତ-ଶ୍ରେଣୀୟ ବ୍ୟକ୍ତିମାନେ ରାଜ କ୍ଷମତା ସୀମାବଦ୍ଧ କରିବାକୁ ଚେଷ୍ଟା କରିଥିଲେ । ୧୨୧୫ ଖ୍ରୀଷ୍ଟାବ୍ଦରେ ରାଜା ଜନ୍‌ଙ୍କ ସମୟରେ ସେମାନେ ଅନେକଗୁଡ଼ିକ ମୌଳିକ ଅଧିକାର ରାଜାଙ୍କଠାରୁ ବଳପୂର୍ବକ ହାସଲ କରି ପାରିଥିଲେ । ଉକ୍ତ ଅଧିକାରଗୁଡ଼ିକ ଲିପିବଦ୍ଧ ହୋଇ ମହାସନନ୍ଦ (Magna Chata) ନାମରେ ଅଭିହିତ ହୋଇଥିଲା ।

ମହାସନନ୍ଦ ସ୍ୱାକ୍ଷରିତ ହେବାର ଅଳ୍ପ କାଳ ପରେ ବ୍ରିଟିଶ ପାର୍ଲାମେଣ୍ଟର ଆରମ୍ଭ ହେଲା । ସେଥିରେ ସାମନ୍ତମାନେ ଥିଲେ ପ୍ରଧାନ । କାଳକ୍ରମେ ପାର୍ଲାମେଣ୍ଟ ଦୁଇଟି ସ୍ୱତନ୍ତ୍ର କକ୍ଷରେ ବିଭକ୍ତ ହେଲା । ସାମନ୍ତ ଓ ବିଶପମାନେ ଗୋଟିଏ କକ୍ଷରେ ଓ ସାଧାରଣ ଲୋକପ୍ରତିନିଧିମାନେ ଅନ୍ୟ ଏକ କକ୍ଷରେ ସ୍ଥାନ ଗ୍ରହଣ କଲେ । ପ୍ରଥମ କକ୍ଷର ନାମ ହେଲା ଲର୍ଡ଼ସଭା (House of Lords) ଓ ଦ୍ୱିତୀୟର ନାମ କମନସ୍ ସଭା (House of Commons) । କମନସ୍ ସଭାର କ୍ଷମତା ପ୍ରଥମେ ଖୁବ୍ କମ୍ ଥିଲା । ତାହା କେବଳ ଆବେଦନ ନିବେଦନ ଛଳରେ ଅଭାବ ଅଭିଯୋଗ ରାଜାଙ୍କର କର୍ଣ୍ଣଗୋଚର କରୁଥିଲା । ପରେ କମନସ୍ ସଭା କ୍ଷମତାଶାଳୀ

ହେବାକୁ ଚେଷ୍ଟାକଲ ଏବଂ ଏହି କାରଣରୁ ରାଜାଙ୍କ ସହିତ ତାର ସଂଘର୍ଷ ଉପସ୍ଥିତ ହେଲା । ୧୬୦୩ ଖ୍ରୀଷ୍ଟାବ୍ଦରେ ଷ୍ଟୁଅର୍ଟ ରାଜବଂଶ ଇଂଲଣ୍ଡର ରାଜ ସିଂହାସନରେ ପ୍ରତିଷ୍ଠିତ ହେଲା ପରେ ଏହି ସଂଘର୍ଷ ଭୟଙ୍କର ଆକାର ଧାରଣ କଲା । ଏହି ବଂଶର ପ୍ରଥମ ରାଜା ଥିଲେ ପ୍ରଥମ ଜେମ୍‌ସ (ଖ୍ରୀ:୧୬୦୩—ଖ୍ରୀ:୧୬୨୫) । ସେ ଲୋକପ୍ରତିନିଧି ଶାସନକୁ ଘୃଣା କରୁଥିଲେ । ରାଜ୍ୟଶାସନ ରାଜାର ଈଶ୍ୱରଦତ୍ତ ଅଧିକାର ବୋଲି ସେ ବିଶ୍ୱାସ କରୁଥିଲେ । ସେ ଥରେ କହିଥିଲେ,—ରାଜାଙ୍କର ଏହା କରିବା ବା ତାହା କରିବାର ଅଧିକାର ନାହିଁ, ଏପରି କହିବା ପ୍ରଜା ପକ୍ଷରେ ଚରମ ଧୃଷ୍ଟତା । ("As it is atheism and blasphemy to dispute what God can do, so it is presumptuous and a high contempt in a subject to dispute what a king can do or to say that a king cannot do this or that") ରାଜାଙ୍କର ଏ ମନୋଭାବକୁ ଇଂଲଣ୍ଡର ପାର୍ଲାମେଣ୍ଟ ସମର୍ଥନ କରିପାରି ନଥିଲା । ତେଣୁ ରାଜାଙ୍କ ସହିତ ପାର୍ଲାମେଣ୍ଟର ଘୋର ସଂଘର୍ଷ ଉପସ୍ଥିତ ହୋଇଥିଲା ।

ତାଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ପ୍ରଥମ ଚାର୍ଲସ୍ ସିଂହାସନ ଆରୋହଣ କଲେ (ଖ୍ରୀ: ୧୬୨୫) । ପିତାଙ୍କ ପରି ସେ ମଧ୍ୟ ଈଶ୍ୱରଦତ୍ତ କ୍ଷମତାରେ ବିଶ୍ୱାସ କରୁଥିଲେ । ତାଙ୍କ ସମୟରେ ଅବସ୍ଥା ଅଧିକ ଗୁରୁତର ହେଲା । ୧୬୨୮ ଖ୍ରୀଷ୍ଟାବ୍ଦରେ ପାର୍ଲାମେଣ୍ଟ କେତେଗୁଡ଼ିଏ ଅଧିକାର ଦାବି କରି ରାଜାଙ୍କ ନିକଟରେ ଏକ ଆବେଦନ ପତ୍ର ଦାଖଲ କଲେ । ତାହା (Petition of Rights) ନାମରେ ପ୍ରସିଦ୍ଧ । ରାଜା ପ୍ରଜାମାନଙ୍କ ଉପରେ ଅନ୍ୟାୟ କର ବସାଇ ପାରିବେ ନାହିଁ କିମ୍ବା ସେମାନଙ୍କୁ ଅନ୍ୟାୟରେ ବନ୍ଦୀ କରି ପାରିବେ ନାହିଁ ବୋଲି ଲୋକପ୍ରତିନିଧିମାନେ ଦାବିକଲେ । ଏଥିରେ ରାଜା ବିରକ୍ତ

ହୋଇ ପାର୍ଲାମେଣ୍ଟ ଭାଙ୍ଗିଦେଲେ ଓ ବିନା ପାର୍ଲାମେଣ୍ଟରେ ଶାସନ ଚଳାଇଲେ । ଚାର୍ଲସ୍‌ଙ୍କ ସ୍ୱେଚ୍ଛାଚାରିତ ଶାସନ ଅସହ୍ୟ ହୋଇପଡ଼ିଲା । ୧୬୪୦ ଖ୍ରୀଷ୍ଟାବ୍ଦରେ ଅର୍ଥାଭାବ ଯୋଗୁଁ ରାଜା ପୁଣି ପାର୍ଲାମେଣ୍ଟ ଆହ୍ୱାନ କରିବାକୁ ବାଧ୍ୟହେଲେ । ଦୁଇବର୍ଷ ମଧ୍ୟରେ ଅବସ୍ଥା ଏପରି ଘଟିଲା ଯେ ପାର୍ଲାମେଣ୍ଟକୁ ରାଜାଙ୍କ ବିରୁଦ୍ଧରେ ଅସ୍ତ୍ର ଧାରଣ କରିବାକୁ ପଡ଼ିଲା । ଦେଶରେ ଏକ ଭୟଙ୍କର ଅନ୍ତର୍ଯୁଦ୍ଧ (Civil War) ଲାଗିଗଲା । ବହୁବର୍ଷ ପର୍ଯ୍ୟନ୍ତ ଏହି ଯୁଦ୍ଧ ଚାଲିଲା । ଅବଶେଷରେ ପାର୍ଲାମେଣ୍ଟ ପକ୍ଷରେ ଏକ ବଳିଷ୍ଠ ନେତା ଆବିର୍ଭୂତ ହେଲେ । ତାଙ୍କ ନାମ ଅଲିଭର କ୍ରମୱେଲ (Oliver Cromwell) । କ୍ରମୱେଲ "ଅଇରନ୍‌ସାଇଡ୍‌ସ୍" ନାମକ ଏକ ନୂତନ ସୈନ୍ୟଦଳ ଗଠନ କଲେ । ଅବଶେଷରେ ରାଜା ଚାର୍ଲସ୍ ପାର୍ଲାମେଣ୍ଟ ହସ୍ତରେ ବନ୍ଦୀହେଲେ । ୧୬୪୯ ଖ୍ରୀଷ୍ଟାବ୍ଦରେ ତାଙ୍କର ବିଚାର ହେଲା ଓ ସେ ପ୍ରାଣ ଦଣ୍ଡରେ ଦଣ୍ଡିତ ହେଲେ । ଇଂଲଣ୍ଡରେ ସାଧାରଣତନ୍ତ୍ର ଶାସନ ପ୍ରତିଷ୍ଠିତ ହେଲା ।

ମାତ୍ର ଏହି ସାଧାରଣତନ୍ତ୍ର ଶାସନ ବେଶି ଦିନ ସ୍ଥାୟୀ ହେଲା ନାହିଁ । ୧୬୫୮ ଖ୍ରୀଷ୍ଟାବ୍ଦରେ କ୍ରମୱେଲଙ୍କ ମୃତ୍ୟୁ ହେଲା । ଦୁଇବର୍ଷ ପରେ ସାଧାରଣତନ୍ତ୍ର ଉଠିଯାଇ ପୁନର୍ବାର ରାଜତନ୍ତ୍ର ପ୍ରତିଷ୍ଠିତ ହେଲା (ଖ୍ରୀ: ୧୬୬୦) । ପ୍ରଥମ ଚାର୍ଲସ୍‌ଙ୍କ ପୁତ୍ର ଦ୍ୱିତୀୟ ଚାର୍ଲସ୍ ରୂପେ ସିଂହାସନରେ ଅଧିଷ୍ଠିତ ହେଲେ । ଦ୍ୱିତୀୟ ଚାର୍ଲସ୍ ସଙ୍କୀର୍ଣ୍ଣମନା ଥିଲେ ମଧ୍ୟ ସେ ପାର୍ଲାମେଣ୍ଟର ବିରୋଧାଚରଣ କରିବାକୁ ସାହସ କରୁ ନଥିଲେ । ତାଙ୍କ ପରେ ଦ୍ୱିତୀୟ ଜେମସ୍ ରାଜା ହେଲେ । ଦ୍ୱିତୀୟ ଜେମସଙ୍କ ସମୟରେ ଭୀଷଣ ଗଣ୍ଡଗୋଳ ଆରମ୍ଭ ହେଲା । ସେ କେଥଲିକ୍ ଧର୍ମାବଲମ୍ବୀ ଥିଲେ ଓ ଇଂଲଣ୍ଡରେ ପୋପଙ୍କ ପ୍ରାଧାନ୍ୟ ପୁନଃପ୍ରତିଷ୍ଠା କରିବାକୁ ଚେଷ୍ଟା କରୁଥିଲେ । ଇଂଲଣ୍ଡର

ଲୋକେ ଏଥିରେ ଉତ୍ତ୍ୟକ୍ତ ହୋଇ ଉଠିଥିଲେ । ପାର୍ଲାମେଣ୍ଟ ରାଜାଙ୍କ କାର୍ଯ୍ୟରେ ନିତାନ୍ତ ବିରକ୍ତି ପ୍ରକାଶ କରିଥିଲେ । ଦେଶରେ ପୁନଶ୍ଚ ଏକ ବିପ୍ଳବର ଚିହ୍ନ ଦେଖାଯାଇଥିଲା । ଦ୍ୱିତୀୟ ଜେମ୍ସ ରାଜ୍ୟ ଛାଡ଼ି ଫ୍ରାନ୍ସକୁ ପଳାଇ ଯାଇଥିଲେ (ଖ୍ରୀ: ୧୬୮୮) । ଏହି ବିପ୍ଳବକୁ "ଗୌରବମୟ ବିପ୍ଳବ" (Glorious Revolution) କୁହାଯାଏ; କାରଣ ବିନା ରକ୍ତପାତରେ ଏହି ବିପ୍ଳବ ଉଦ୍‌ଯୁକ୍ତ ହୋଇଥିଲା । ଏ ବିପ୍ଳବ ପ୍ରମାଣ କରିଥିଲା ଯେ, ଦେଶରେ ପାର୍ଲାମେଣ୍ଟ ବା ଲୋକ-ପ୍ରତିନିଧି ସର୍ବୋଚ୍ଚ ଚରମ କ୍ଷମତାଶାଳୀ ଏବଂ ପାର୍ଲାମେଣ୍ଟ ନିଜ ଇଚ୍ଛାନୁସାରେ ରାଜା ବାଛି ସିଂହାସନରେ ବସାଇ ପାରେ । ୧୬୮୯ ଖ୍ରୀଷ୍ଟାବ୍ଦରେ ପାର୍ଲାମେଣ୍ଟ ଏକ ନୂତନ ସନନ୍ଦ ଗଠନ କଲା । ତାହା (Bill of Rights) ନାମରେ ପ୍ରସିଦ୍ଧ । ଏଥିରେ ରାଜକ୍ଷମତା ସମ୍ପୂର୍ଣ୍ଣଭାବରେ ସୀମାବଦ୍ଧ କରି ଦିଆଗଲା । ଉକ୍ତ ସନନ୍ଦରେ ବିଧାନ ରହିଲା ଯେ ରାଜା ଆଇନଭଙ୍ଗ କରି ପାରିବେ ନାହିଁ, ପାର୍ଲାମେଣ୍ଟର ବିନାନୁମତିରେ କର ବସାଇ ପାରିବେ ନାହିଁ କିମ୍ବା ସୈନ୍ୟ ସଂଗ୍ରହ କରିପାରିବେ ନାହିଁ, ପ୍ରଜାମାନଙ୍କର ଆପତ୍ତି-ଅଭିଯୋଗ କରିବାର ଅବାଧ ଅଧିକାର ରହିବ ଇତ୍ୟାଦି । ପାର୍ଲାମେଣ୍ଟ ନିଜର ମନୋମତ ରାଜା ଓ ରାଣୀ ଅନୁସନ୍ଧାନ କରି ପ୍ରୋଟେଷ୍ଟାଣ୍ଟଧର୍ମାବଲମ୍ବୀ ଉଇଲିୟମ୍ (Willam prince of Orange)ଙ୍କୁ ଓ ତାଙ୍କ ସହଧର୍ମିଣୀ ମେରୀଙ୍କୁ ଇଂଲଣ୍ଡର ସିଂହାସନ ପ୍ରଦାନ କଲେ । ମେରୀ ଜେମ୍ସଙ୍କ କନ୍ୟା । ଉଇଲିୟମ୍ ଓ ମେରୀ ସିଂହାସନର ଯୁଗ୍ମ ଅଧିକାରୀ ହେଲେ ଏବଂ ପୂର୍ବୋକ୍ତ ବିଲ ଅଫ୍ ରାଇଟ୍ସ ଅନୁସାରେ ଶାସନ କରିବାକୁ ସ୍ୱୀକୃତ ହେଲେ । ଏହା ଫଳରେ ପାର୍ଲାମେଣ୍ଟ ବିଜୟ ହାସଲ କଲା ।

ମାତ୍ର ସେ ସମୟରେ ପାର୍ଲାମେଣ୍ଟର ପୂର୍ଣ୍ଣ ଲୋକପ୍ରତିନିଧିତ୍ୱ ପ୍ରତିଷ୍ଠିତ ହୋଇ ନଥିଲା । କେବଳ କମ ସଂଖ୍ୟକ ଲୋକଙ୍କର ଶ୍ରେଷ୍ଠ

ଅଧିକାର ଥିଲା । ଏପରକି, କମନ୍ସ ସଭାରେ ବି ନୂତନ ମଧ୍ୟବିତ୍ତ ଶ୍ରେଣୀର ଲୋକଙ୍କର କୌଣସି ପ୍ରତିନିଧି ନ ଥିଲେ, କେବଳ ଜମିଦାର ଓ ଧନୀ ବଣିକମାନେ ସେଥିରେ ସ୍ଥାନ ପାଉଥିଲେ । ଅଜସ୍ର ଅର୍ଥ ବ୍ୟୟକରି ଓ ଲାଞ୍ଚ ଦେଇ ଲୋକେ ସଭ୍ୟପଦ ଏକପ୍ରକାର କ୍ରୟ କରୁଥିଲେ । ୧୮୩୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହି ଅବସ୍ଥା ଲାଗି ରହିଥିଲା । ଇତି ମଧ୍ୟରେ ପାର୍ଲାମେଣ୍ଟ ଶାସନରେ ଏକ ନୂତନ ଧାରାର ସୃଷ୍ଟି ହୋଇଥିଲା । ୧୭୧୪ ରୁ ୧୭୬୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଇଂଲଣ୍ଡରେ ହେନୋଭାର ରାଜବଂଶର ଦୁଇଜଣ ରାଜା ପ୍ରଥମ ଓ ଦ୍ୱିତୀୟ ଜର୍ଜ ରାଜତ୍ୱ କରିଥିଲେ । ସେମାନେ ଥିଲେ ଜାତିରେ ଜର୍ମାନ, ତେଣୁ ସେମାନେ ଇଂରେଜୀ ଭାଷା ଜାଣି ନଥିଲେ । ଇଂରେଜ ମନ୍ତ୍ରୀମାନେ ବି ଜର୍ମାନ ଭାଷାରେ ଅଜ୍ଞ ଥିଲେ । ପ୍ରଥମ ଓ ଦ୍ୱିତୀୟ ଜର୍ଜ ମନ୍ତ୍ରଣା ସଭାରେ ମନ୍ତ୍ରୀମାନଙ୍କ ସହିତ ଯୋଗ ଦେଇ ଆଲୋଚନା କରିପାରୁ ନଥିଲେ । ରାଜ୍ୟଶାସନର ନୀତି ନିୟନ୍ତ୍ରଣ କେବଳ ମନ୍ତ୍ରୀମାନେ ହିଁ କରୁଥିଲେ । ଏହା ଫଳରେ ରାଜ୍ୟ ଶାସନ ମନ୍ତ୍ରୀମାନଙ୍କ ହାତରେ ଆସି ପଡ଼ିଲା । ଏହି ମନ୍ତ୍ରୀମାନେ ପାର୍ଲାମେଣ୍ଟର ସଭ୍ୟ । ସୁତରାଂ ଏହାଦ୍ୱାରା ଏକ ନୂତନ ପଦ୍ଧତିର ସୃଷ୍ଟି ହେଲା, ମନ୍ତ୍ରୀମଣ୍ଡଳ ବା ପାର୍ଲାମେଣ୍ଟ ରାଜ୍ୟ ଶାସନ କଲା; ରାଜା କେବଳ ରାଜତ୍ୱ କରିବା ପାଇଁ ରହିଲେ । ରାଜା ଦ୍ୱିତୀୟ ଜର୍ଜ ଥରେ କହିଥିଲେ—"ଇଂଲଣ୍ଡରେ ମନ୍ତ୍ରୀମାନେହିଁ ରାଜା" ("In this country the ministers are king") । ବାସ୍ତବରେ ସେହି ଅବସ୍ଥା ଦେଖା ଦେଇ ଦେଶରେ ନୂତନ ପରମ୍ପରାର ସୃଷ୍ଟି ହୋଇଥିଲା ।

ପୂର୍ବରୁ କୁହାଯାଇଛି, ଲୋକେ ଅନେକ ସମୟରେ ଲାଞ୍ଚ ପ୍ରଦାନ କରି ପାର୍ଲାମେଣ୍ଟରେ ମେମ୍ବର ପଦ ଲାଭ କରି ପାରୁଥିଲେ । ସେତେବେଳେ ପ୍ରକାଶ୍ୟରେ ମୌଖିକ ଭୋଟ ନିଆଯାଉଥିଲା ।

ଇଂଲଣ୍ଡର ଅନ୍ୟତମ ପ୍ରସିଦ୍ଧ ପ୍ରଧାନମନ୍ତ୍ରୀ ଗ୍ଲାଡ଼ଷ୍ଟୋନ(Gladstone)ଙ୍କ ସମୟରେ ଗୁପ୍ତ ଭୋଟଦାନ ପ୍ରଥା ପ୍ରଚଳିତ ହେଲା । ଏହା ଦ୍ୱାରା ଭୋଟରମାନେ ନିଜର ସ୍ୱାଧୀନ ଇଚ୍ଛାକ୍ରମେ ଭୋଟ୍ ଦେବାର ସୁବିଧା ପାଇଲେ । କିଏ କାହାକୁ ଭୋଟ୍ ଦେଲା ତାହା ଜାଣିବାର ଉପାୟ ରହିଲା ନାହିଁ । ମାତ୍ର ଏତିକରେ ପାର୍ଲିମେଣ୍ଟର ସଂସ୍କାର ପୂର୍ଣ୍ଣ ହେଲା ନାହିଁ । ଏହା ପରେ ପରେ ଅନେକ ସଂସ୍କାର ପ୍ରବର୍ତ୍ତିତହେଲା । କିଛି-କାଳ ପୂର୍ବେ, ୧୮୩୨ ଖ୍ରୀଷ୍ଟାବ୍ଦରେ, ପାର୍ଲାମେଣ୍ଟର ସଂସ୍କାର ଅବସ୍ଥ କରାଯାଇ କେତେ ମଧ୍ୟବିତ୍ତ ଶ୍ରେଣୀର ଲୋକଙ୍କୁ ଭୋଟ ଅଧିକାର ପ୍ରଦାନ କରାହୋଇଥିଲା । ୧୮୬୭ ଖ୍ରୀଷ୍ଟାବ୍ଦରେ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଲୋକେ ଓ ଅଧିକାଂଶ ଶ୍ରମିକ ଶ୍ରେଣୀର ଲୋକେ ଭୋଟ ଅଧିକାର ପାଇଥିଲେ । ମାତ୍ର ୧୮୮୪ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡର ପ୍ରସିଦ୍ଧ ପ୍ରଧାନ ମନ୍ତ୍ରୀ ଗ୍ଲାଡ଼ଷ୍ଟୋନ (Gladstone)ଙ୍କ ସମୟରେ ଭୋଟ ପ୍ରଥା ଅଧିକ ବ୍ୟାପକ କରି ଦିଆଗଲା । ଗ୍ଲାଡ଼ଷ୍ଟୋନଙ୍କ ସଂସ୍କାର ଫଳରେ ସହର ଓ ମଫସଲର ଶ୍ରମିକ ଓ କୃଷକବର୍ଗ ଭୋଟ ଦେବାର ଅଧିକାର ଲାଭକଲେ । ୧୯୧୮ ଖ୍ରୀଷ୍ଟାବ୍ଦରେ ନାରୀମାନେ ଭୋଟ ଅଧିକାର ପାଇଲେ ଏବଂ ୧୯୨୮ରେ ସାବାଳକ ଭୋଟ ପ୍ରଥା ପ୍ରଚଳିତ ହେଲା । ଏହା ଫଳରେ ୨୧ ବର୍ଷରୁ ଊର୍ଦ୍ଧ୍ୱ ପ୍ରତ୍ୟେକ ନରନାରୀ ଭୋଟ ଅଧିକାର ଲାଭ କଲେ ।

ଇତି ମଧ୍ୟରେ, ପାର୍ଲିମେଣ୍ଟର ଆଉ ଗୋଟିଏ ସଂସ୍କାର ହୋଇ ସାରିଥିଲା । ୧୯୧୧ ଖ୍ରୀଷ୍ଟାବ୍ଦରେ ଏକ ଆଇନ ପ୍ରଣୟନ କରାଯାଇ କମନ୍ସ ସଭାର କ୍ଷମତା ବେଶ୍ ବଢ଼ାଇ ଦିଆଯାଇଥିଲା । କମନ୍ସ ସଭା ଓ ଲର୍ଡ଼ସଭା ମଧ୍ୟରେ ପ୍ରାଧାନ୍ୟ ନେଇ କିଛିକାଳ ପାଇଁ ତୁମୁଳ ଦ୍ୱନ୍ଦ୍ୱ ଲାଗିଥିଲା । ଅବଶେଷରେ ୧୯୧୧ ଖ୍ରୀଷ୍ଟାବ୍ଦର ପାର୍ଲାମେଣ୍ଟ ଆକ୍ଟ ଅନୁସାରେ ବ୍ୟବସ୍ଥା କରାହୋଇଥିଲା ଯେ, କୌଣସି ଅର୍ଥ-ବିଲ୍

(Money bill) ଲମ୍ବନ୍ସ ସଭାରେ ମଞ୍ଜୁର ହେଲା ପରେ ଲର୍ଡ ସଭାର ବିରୋଧ ସତ୍ତ୍ୱେ ଅଇନରେ ପରିଣତ ହୋଇପାରିବ ଓ ଅନ୍ୟାନ୍ୟ ବିଲ୍ କମନ୍ସ ସଭାରେ କ୍ରମାଗତ ତିନିଥର ମଞ୍ଜୁରି ପାଇଲେ, ଅବଶେଷରେ ରାଜାଙ୍କ ସ୍ୱୀକୃତ ଲଭ କରି ଅଇନରେ ପରିଣତ ହେବ । ଏହି ଅଇନରେ ମଧ୍ୟ ପାର୍ଲାମେଣ୍ଟର କାର୍ଯ୍ୟକାଳ ସାତ ବର୍ଷରୁ ପାଞ୍ଚ ବର୍ଷକୁ ହ୍ରାସ କରାଯାଇଥିଲା ।

**ଜର୍ମାନୀର ଏକତ୍ୱବିଧାନ**:—ଅଧୁନିକ ଯୁଗର ପ୍ରାରମ୍ଭରେ ଯେତେବେଳେ ଇଂଲଣ୍ଡ ଓ ଫ୍ରାନ୍ସ ପ୍ରବଳ ଶକ୍ତିଶାଳୀ ରାଷ୍ଟ୍ରରେ ପରିଣତ ହୋଇଥିଲେ, ସେତେବେଳେ ଜର୍ମାନୀର ଅବସ୍ଥା ଭିନ୍ନ ପ୍ରକାର ଥିଲା । ଜର୍ମାନୀ କହିଲେ ପ୍ରାୟ ଦୁଇ ଶହ ଛୋଟ ବଡ ରାଜ୍ୟକୁ ବୁଝାଉଥିଲା । ସେମାନେ ସମସ୍ତେ ଥିଲେ ସ୍ୱାଧୀନ ଓ ସ୍ୱତନ୍ତ୍ର । ପ୍ରତ୍ୟେକର ସ୍ୱତନ୍ତ୍ର ଶାସନ, ସ୍ୱତନ୍ତ୍ର ସାମରିକ ସଂସ୍ଥା ଓ ସ୍ୱତନ୍ତ୍ର ପତାକା ଥିଲା । ଜର୍ମାନୀ ଏକ ସମ୍ମିଳିତ ରାଷ୍ଟ୍ରରେ ପରିଣତ ହୋଇ ନ ଥିଲା । ୧୮୦୬ ଖ୍ରୀଷ୍ଟାବ୍ଦରେ ନେପୋଲିୟନ ବୋନାପାର୍ଟ "ପବିତ୍ର ରୋମାନ ସାମ୍ରାଜ୍ୟ" (Holy Roman Empire) ଭାଙ୍ଗି ଦେଇ "କନ୍‌ଫେଡେରେସନ ଅଫ୍ ଦି ରାଇନ" (Confederation of the Rhine) ନାମକ ଏକ ମିଳିତ ସଂଗଠନ ପ୍ରତିଷ୍ଠା କରିଥିଲେ । ଏହି ସଂଗଠନରେ ଅନେକ ଗୁଡ଼ିଏ ଛୋଟ ଛୋଟ ଜର୍ମନ ରାଜ୍ୟ ଅପେକ୍ଷାକୃତ ବଡ଼ବଡ଼ ଜର୍ମନ ରାଜ୍ୟ ସହିତ ମିଶାଇ ଦିଆଯାଇଥିଲା । ନେପୋଲିୟନଙ୍କ ଜର୍ମାନୀ ଅଧିକାର ଜର୍ମନ ଲୋକଙ୍କ ମନରେ ଜାତୀୟ ଏକତାର ଭାବ ଜାଗ୍ରତ କରିଥିଲା, ସେମାନେ ବୈଦେଶିକ କର୍ତ୍ତୃତ୍ୱରୁ ମୁକ୍ତ ହେବାକୁ ଚେଷ୍ଟା କରିଥିଲେ । ଜର୍ମାନୀର ପ୍ରୁସିଆ (Prussia) ରାଜ୍ୟ ଏ ଦିଗରେ ଅଗ୍ରଣୀ ହୋଇ ବାହାରିଥିଲା । ମାର୍ଶାଲ ବ୍ଲୁଚର (Blucher)ଙ୍କ ଅଧୀନରେ ପ୍ରୁସିଆର

ସୈନ୍ୟମାନେ ଲିପ୍‌ଜିଗ୍ ଓ ୱାଟରଲୁ ଯୁଦ୍ଧକ୍ଷେତ୍ରରେ ଅନ୍ୟାନ୍ୟ ମିତ୍ରପକ୍ଷୀୟ ସୈନ୍ୟଙ୍କ ସହିତ ମିଶି ନେପୋଲିୟନଙ୍କ ପତନ ଘଟାଇବାରେ ସାହାଯ୍ୟ କରିଥିଲେ ।

ନେପୋଲିୟନଙ୍କ ପତନ ପରେ ୧୮୧୫ ଖ୍ରୀଷ୍ଟାବ୍ଦରେ ଭିଏନା କଂଗ୍ରେସର ନିଷ୍ପତ୍ତି ଅନୁଯାୟୀ ଏକ ଜର୍ମାନ ରାଜ୍ୟଗୋଷ୍ଠୀ (German Confederation) ପ୍ରତିଷ୍ଠିତ ହେଲା । ଜର୍ମାନ ରାଜ୍ୟ ସଂଖ୍ୟା ୩୮ଟିକୁ କମାଇ ଦିଆଯାଇ ଉକ୍ତ ରାଜ୍ୟଗୋଷ୍ଠୀ ଗଠିତ ହେଲା । ତନ୍ମଧ୍ୟରେ ଅଷ୍ଟ୍ରିଆ ଓ ପ୍ରୁସିଆ ଥିଲେ ପ୍ରଧାନ । ଅଷ୍ଟ୍ରିଆକୁ ଏହି ରାଜ୍ୟଗୋଷ୍ଠୀର ସ୍ଥାୟୀ ସଭାପତି କରାଗଲା । ଫ୍ରାଙ୍କଫୋର୍ଟ ଠାରେ ଡାଏଟ୍ (Diet) ନାମକ ଏକ ବ୍ୟବସ୍ଥା ପରିଷଦ ପ୍ରତିଷ୍ଠିତ ହେଲା । ଏହା ଲୋକପ୍ରତିନିଧି ସଭା ନ ଥିଲା, ଏଥିରେ କେବଳ ରାଜାମାନଙ୍କ ମନୋନୀତ ପ୍ରତିନିଧିବର୍ଗ ସ୍ଥାନ ପାଉଥିଲେ । ରାଜ୍ୟଗୋଷ୍ଠୀ ପ୍ରତିଷ୍ଠା ଦ୍ୱାରା ଜର୍ମାନୀର ପ୍ରକୃତ ଏକତ୍ୱବିଧାନ ଘଟିଲା ନାହିଁ । ଜର୍ମାନୀ ଜାତୀୟତାବାଦୀମାନେ ଏଥିପାଇଁ ଆନ୍ଦୋଳନ ଚଳାଇଲେ, ପ୍ରାୟ ଛଅ ଶହ ନିର୍ବାଚିତ ଲୋକପ୍ରତିନିଧିଙ୍କୁ ନେଇ ଫ୍ରାଙ୍କଫୋର୍ଟଠାରେ ଏକ ପାର୍ଲାମେଣ୍ଟ ବସିଲା । ଜର୍ମାନୀର ଏକତ୍ରୀକରଣ ଏହାର ଏକମାତ୍ର ଲକ୍ଷ୍ୟ ନ ଥିଲା; ଜର୍ମାନୀର ରାଜନୈତିକ ମୁକ୍ତିବିଧାନ ଓ ଦେଶର ଗଣତନ୍ତ୍ର ପ୍ରତିଷ୍ଠା ମଧ୍ୟ ଏହାର ଉଦ୍ଦେଶ୍ୟ ଥିଲା । ମାତ୍ର ଏହି ପାର୍ଲାମେଣ୍ଟ ଲକ୍ଷ୍ୟ ସାଧନ କରି ପାରିଲା ନାହିଁ । କୌଣସି ଜର୍ମାନ ରାଜ୍ୟ ନିଜର ସ୍ୱାର୍ଥ ଛାଡ଼ିବାକୁ ରାଜି ହେଲେ ନାହିଁ । ଫ୍ରାଙ୍କଫୋର୍ଟ ପାର୍ଲାମେଣ୍ଟ ଅବଶେଷରେ ପ୍ରୁସିଆର ରାଜାଙ୍କୁ ମିଳିତ ଜର୍ମାନୀର ସିଂହାସନ ଅର୍ପଣ କରିବାକୁ ସ୍ଥିର କଲା, କିନ୍ତୁ ପ୍ରୁସିଆର ରାଜା ମୁଖ୍ୟତଃ ଅଷ୍ଟ୍ରିଆ ଭୟରେ ତାହା ଗ୍ରହଣ କରିବାକୁ ରାଜି ହେଲେ ନାହିଁ । ଫ୍ରାଙ୍କଫୋର୍ଟ ପାର୍ଲାମେଣ୍ଟ ବ୍ୟର୍ଥ ହେଲା ।

ରାଜା ପ୍ରଥମ ଉଇଲୟମ୍ ଓ ମନ୍ତ୍ରୀ ବିସ୍‌ମାର୍କ—ସେ ସମୟରେ ପ୍ରୁସିଆର ରାଜା ଥିଲେ ପ୍ରଥମ ଉଇଲ୍‌ୟମ୍ । ୧୮୬୨ ଖ୍ରୀଷ୍ଟାବ୍ଦରେ ଅଟୋଭନ ବିସ୍‌ମାର୍କ (Otto Von Bismarok) ନାମକ ଜଣେ ଦୃଢ଼ମନା ବ୍ୟକ୍ତି ତାଙ୍କର ପ୍ରଧାନ ମନ୍ତ୍ରୀ ହେଲେ ।



ବିସ୍‌ମାର୍କ

ଜର୍ମନୀର ଏକତ୍ରୀକରଣ ତାଙ୍କର ଦ୍ୱାରା ସାଧିତ ହେଲା । ପ୍ରଧାନମନ୍ତ୍ରୀ ହେବାର ସପ୍ତାହକ ମଧ୍ୟରେ ସେ ଘୋଷଣା କଲେ, ବକ୍ତୃତା ବଳରେ ବା ସଂଖ୍ୟାଧିକ୍ୟ ମତର ନିର୍ଦ୍ଧାରଣ ବଳରେ ଜର୍ମାନୀର ଏକତ୍ୱ ବିଧାନ ଅସମ୍ଭବ; ତାହା ସମ୍ଭବପର ହେବ କେବଳ ରକ୍ତ ଓ ଲୌହ ବଳରେ ( by blod and iron ) । ସେ ପ୍ରୁସିଆର ସାମରିକ ଶକ୍ତି ବୃଦ୍ଧି ନିମନ୍ତେ ବିଶାଳ ସୈନ୍ୟଦଳ ଗଠନ କଲେ ଏବଂ ବଳାତ୍‌କ୍ଷିପଣ (Conscription) ପ୍ରଥା ଚଳାଇଲେ । ଏହାଫଳରେ ପ୍ରତ୍ୟେକ କାର୍ଯ୍ୟକ୍ଷମ ବ୍ୟକ୍ତି ସାମରିକ ଶିକ୍ଷାଲାଭ କରିବାକୁ ବାଧ୍ୟ ହେଲେ । ବିସ୍‌ମାର୍କଙ୍କ ନୀତି ଥିଲା, ଜର୍ମାନୀରୁ ଅଷ୍ଟ୍ରିଆର ପ୍ରଭୁତ୍ୱ ନିକ୍ଷେପ

କର ପ୍ରୁସିଆର ପ୍ରାଧାନ୍ୟ ପ୍ରତିଷ୍ଠା କରିବା ଏବଂ ପ୍ରୁସିଅ ରାଜ୍ୟର ସମ୍ପ୍ରସାରଣ କରି ତାର ଶକ୍ତିବୃଦ୍ଧି କରିବା । ପ୍ରଧାନ ମନ୍ତ୍ରୀ ହେବାର ଅଳ୍ପ ବର୍ଷ ମଧ୍ୟରେ ସେ କଳେ ବଳେ କୌଶଳେ ଜର୍ମାନୀର ଏକତ୍ୱ ସମ୍ପାଦନ କରିବାକୁ ସମର୍ଥ ହେଲେ । ପ୍ରୁସିଅ ରାଜ୍ୟର ପୂର୍ବପ୍ରାନ୍ତ ନିରାପଦ ରଖିବାପାଇଁ ସେ ରୁଷିଆ ସହିତ ସନ୍ଧି କଲେ । ତତ୍ପରେ ଅଷ୍ଟ୍ରିଆ ସହିତ ବିବାଦ ଆରମ୍ଭ ହେଲା ।

ସେତେବେଳେ ଡେନମାର୍କର ରାଜାଙ୍କ ଅଧୀନରେ ଦୁଇଟି ଅଞ୍ଚଳ ଥିଲା, ତାହାର ଅଧିକାଂଶ ଅଧିବାସୀ ଥିଲେ ଜର୍ମାନ ଜାତିର ଲୋକ । ବିସ୍‌ମାର୍କ ଅଷ୍ଟ୍ରିଅକୁ ପ୍ରବର୍ତ୍ତାଇ ଡେନମାର୍କ ବିରୁଦ୍ଧରେ ଯୁଦ୍ଧ କରି ଉକ୍ତ ଅଞ୍ଚଳଦ୍ୱୟ ତାଠାରୁ ଛଡାଇ ଆଣିଲେ । ଯୁଦ୍ଧ ପରେ ସେ ତାହା ପ୍ରୁସିଅ ରାଜ୍ୟର ଅନ୍ତର୍ଭୁକ୍ତ କରିବାକୁ ଇଚ୍ଛାକଲେ । ଅଷ୍ଟ୍ରିଅ ଏଥିରେ ରାଜି ନା ହେବାରୁ ଯୁଦ୍ଧ ଆରମ୍ଭ ହେଲା । ପ୍ରୁସିଅର ସୈନ୍ୟ ତିନି ସପ୍ତାହ ମଧ୍ୟରେ ଅଷ୍ଟ୍ରିଅକୁ ପରାସ୍ତ କରିଦେଲେ (ଖ୍ରୀ: ୧୮୬୬ ) । ଅଷ୍ଟ୍ରିଅ ବାଧ୍ୟହୋଇ ସନ୍ଧି କଲା । ସନ୍ଧି ଫଳରେ ଅଷ୍ଟ୍ରିଅର କର୍ତ୍ତୃତ୍ୱ ଜର୍ମାନୀରୁ ଲୋପ ପାଇଲା । ମେନ୍ ( Main ) ନଦୀର ଉତ୍ତରରେ ଥିବା ୨୨ଟି ଜର୍ମନ ରାଜ୍ୟ ପ୍ରୁସିଅ ଅଧୀନରେ ଏକତ୍ରିତ ହେଲେ । ଏହି ସମୟରେ ଫ୍ରାନ୍‌ସରେ ତୃତୀୟ ନେପୋଲିୟନ ରାଜତ୍ୱ କରୁଥିଲେ । ପ୍ରୁସିଅର ଶକ୍ତିବୃଦ୍ଧି ସେ ସହୁ ନ ଥିଲେ । ୧୮୭୦ ଖ୍ରୀଷ୍ଟାବ୍ଦରେ ଫ୍ରାନ୍‌ସ ଓ ପ୍ରୁସିଅ ମଧ୍ୟରେ ଯୁଦ୍ଧ ଲାଗିଲା । ବିସ୍‌ମାର୍କଙ୍କୁ ଏହି ଯୁଦ୍ଧ ଏକ ଅପୂର୍ବ ସୁଯୋଗ ଆଣି ଦେଲା । ଫ୍ରାନ୍‌ସ ବିରୁଦ୍ଧରେ ଜର୍ମାନୀର ଜାତୀୟ ଭାବ ପ୍ରବଳ ହୋଇଉଠିଲା । ଜର୍ମାନମାନେ ପ୍ରୁସିଅର ନେତୃତ୍ୱରେ ସମ୍ମିଳିତ ହୋଇ ଫ୍ରାନ୍‌ସର ପ୍ରତିରୋଧ କଲେ । ଫରାସୀସୈନ୍ୟ ସିଡାନ(Sedan) ଠାରେ ପରାସ୍ତ ହେଲେ, ନେପୋଲିୟନ ବନ୍ଦୀ ହେଲେ ।

ଏହାପରେ ପ୍ରୁସିଆର ସୈନ୍ୟ ପାରିସ ସହର ଅବରୋଧ କଲେ ଓ କତିପୟ ଦିନ ପରେ ପାରିସର ପତନ ଘଟିଲା । ଫ୍ରାଙ୍କଫୋର୍ଟ ଠାରେ ଏକ ସନ୍ଧି ସ୍ୱାକ୍ଷରିତ ହେଲା । ଏହି ସନ୍ଧି ଫଳରେ ଆଲସେସ୍ ପ୍ରଦେଶ ଓ ଲରେନ ପ୍ରଦେଶର ମୁଖ୍ୟ ଭାଗ ଫ୍ରାନ୍ସ ପ୍ରୁସିଆକୁ ଛାଡ଼ିଦେବାକୁ ବାଧ୍ୟ ହେଲା ଏବଂ ତା ସଙ୍ଗେ ସଙ୍ଗେ ପ୍ରଚୁର କ୍ଷତି-ପୂରଣ ଦେବାକୁ ସ୍ୱୀକୃତ ହେଲା । ଯୁଦ୍ଧଶେଷରେ ସମସ୍ତ ଜର୍ମାନ ରାଜ୍ୟ ଚିରଦିନ ପାଇଁ ଏକାଠି ହୋଇ ରହିବାକୁ ସ୍ଥିର କଲେ । ୧୮୭୧ ଖ୍ରୀଷ୍ଟାବ୍ଦର ଜାନୁଆରୀ ମାସରେ ପ୍ରୁସିଆର ରାଜା ଜର୍ମାନୀର ସମ୍ରାଟ୍ ପଦରେ ଅଭିଷିକ୍ତ ହେଲେ । ବିସ୍‌ମାର୍କଙ୍କ ଉଦ୍ଦେଶ୍ୟ ପୂର୍ଣ୍ଣ ହେଲା ଏବଂ ଜର୍ମାନୀର ଏକତ୍ରୀକରଣ ସଫଳ ହେଲା ।

**ଇଟାଲୀର ସ୍ୱାଧୀନତା ଆନ୍ଦୋଳନ:**—ଇଟାଲୀ ପ୍ରଥମେ ଅନେକ ଗୁଡ଼ିଏ କ୍ଷୁଦ୍ର ରାଜ୍ୟରେ ବିଭକ୍ତ ଥିଲା । ପ୍ରତ୍ୟେକ ରାଜ୍ୟରେ ଜଣେ ଜଣେ ରାଜା ରାଜତ୍ୱ କରୁଥିଲେ । ସେମାନଙ୍କୁ ଡ୍ୟୁକ୍ ବୋଲି କୁହାଯାଉଥିଲା । ସେମାନଙ୍କ ମଧ୍ୟରେ ଏକତା ନ ଥିଲା । ଅନେକ ସମୟରେ ସେମାନେ ପରସ୍ପର ସହିତ କଳହରେ ଲିପ୍ତ ରହୁଥିଲେ । ସାଧାରଣ ଲୋକଙ୍କ ଅବସ୍ଥା ବଡ଼ ଶୋଚନୀୟ ଥିଲା । ନେପୋଲିୟନ ଇଟାଲୀ ଜୟ କରି ତାକୁ ଏକଶାସନାଧୀନ କରିଥିଲେ ଏବଂ ଦେଶରେ ଶାନ୍ତିଶୃଙ୍ଖଳା ପ୍ରତିଷ୍ଠା କରିଥିଲେ । ୧୮୧୫ ଖ୍ରୀଷ୍ଟାବ୍ଦରେ ନେପୋଲିୟନଙ୍କ ପତନ ପରେ ଭିଏନା କଂଗ୍ରେସ ଅନୁଷ୍ଠିତ ହୋଇ ଇଉରୋପରେ ନାନା ପରିବର୍ତ୍ତନ ଆଣିଥିଲା । ଏହା ଫଳରେ ଇଟାଲୀ ପୁନର୍ବାର ଅନେକଗୁଡ଼ିଏ କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇଥିଲା । ଇଟାଲୀରେ ଅଷ୍ଟ୍ରିଆର ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇଥିଲା । ତାହାର ସମସ୍ତ ଉତ୍ତରାଞ୍ଚଳ ଅଷ୍ଟ୍ରିଆ ହାତକୁ ଚାଲି ଯାଇଥିଲା ।

ଅନ୍ୟାନ୍ୟ ଇଟାଲୀୟ ରାଜ୍ୟଗୁଡ଼ିକରେ ମଧ୍ୟ ତା'ର ପ୍ରଭାବ ବୃଦ୍ଧି ପାଇଥିଲା । ଅଷ୍ଟ୍ରିଆ-ଶାସିତ ଇଟାଲୀୟ ଅଞ୍ଚଳ ଲୋମ୍ବାର୍ଡି ଭେନେସିଆ




(Lombardy-Venetia) ନାମରେ ଅଭିହିତ ହୋଇଥିଲା ।

ଇଟାଲୀ କେବଳ ଏକ ଭୌଗୋଳିକ ନାମରେ ପରିଣତ ହୋଇଥିଲା । ପ୍ରକୃତରେ ତାହା ଭାଗ ଭାଗ ହୋଇ ଦଶଟି ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା, ଯଥା:—ପିଡ଼ମଣ୍ଟ, ଲୋମ୍ବାର୍ଡି-ଭେନେସିଅ, ପାରମା, ମୋଡେନା, ଲୁକା, ଟସକାନି, ପୋପ୍-ରାଜ୍ୟ, ନେପଲ୍‌ସ ମୋନାକୋ, ସାନମାରିନୋ ।

ପ୍ରାୟ ପଚାଶବର୍ଷ ପର୍ଯ୍ୟନ୍ତ ଇଟାଲୀ ବିଭିନ୍ନ ଇଉରୋପୀୟ ରାଜଶକ୍ତିଙ୍କର କ୍ରୀଡ଼ାଭୂମିରେ ପରିଣତ ହୋଇଥିଲା । ଅଷ୍ଟ୍ରିଆ ଥିଲା ସେମାନଙ୍କ ମଧ୍ୟରେ ପ୍ରଧାନ । କେବଳ ପିଡ଼୍‌ମଣ୍ଟର ରାଜା ଓ ପୋପଙ୍କୁ ଛାଡ଼ି ଦେଲେ ଅନ୍ୟ ସମସ୍ତେ ଥିଲେ ଅଷ୍ଟ୍ରିଆର ବଶୀଭୂତ । ଅଷ୍ଟ୍ରୀୟ ନେତା ମେଟାରନିକ୍ (Meter nick) ସେତେବେଳେ ଇଉରୋପରେ ଖୁବ୍ ପ୍ରଭାବଶାଳୀ ଥିଲେ । ଇଟାଲୀକୁ ବିଭକ୍ତ କରି ଦୁର୍ବଳ ଅବସ୍ଥାରେ ରଖିବା ଥିଲା ତାଙ୍କର ନୀତି । ସୁତରାଂ ଇଟାଲୀ ଖଣ୍ଡ ଖଣ୍ଡ ହୋଇ କ୍ଷୁଦ୍ର କ୍ଷୁଦ୍ର ସ୍ୱେଚ୍ଛାଚାରୀ ରାଜାଙ୍କ ଦ୍ୱାରା ଶାସିତ ହେବାକୁ ଲାଗିଲା । କି ସାମାଜିକ, କି ରାଜନୈତିକ, କି ଶିଳ୍ପକ୍ଷେତ୍ର ସବୁଆଡ଼େ ଇଟାଲୀର ଅବନତି ଘଟିଥିଲା । ଏହାର ପରିଣାମ ସ୍ୱରୂପ ଦେଶରେ ଘୋର ଅସନ୍ତୋଷ ଦେଖାଦେଲା ଏବଂ ତାହା କ୍ରମଶଃ ଗୁରୁତର ଆକାର ଧାରଣ କଲା । 'କାରବୋନାରି' (Carbonari) ନାମକ ଏକ ଗୁପ୍ତ ସମାଜ ଦେଶରେ ଗଢ଼ିଉଠିଲା । ସମସ୍ତ ଅସନ୍ତୁଷ୍ଟ ବ୍ୟକ୍ତି ଏହି ଗୁପ୍ତସମାଜରେ ଯୋଗ ଦେଲେ । ଇଟାଲୀୟ ଲୋକଙ୍କ ମନରେ ସ୍ୱାଧୀନତାର ଆକାଙ୍କ୍ଷା ଜାଗ୍ରତ ହେଲା ଓ ଜାତୀୟ ଭାବ ପ୍ରବଳ ହୋଇ ଉଠିଲା ।

ଏହି ନବ ଜାଗ୍ରତ ଇଟାଲୀୟ ଜାତୀୟତାର ପ୍ରତୀକ ସ୍ୱରୂପ ଦେଖା ଦେଲେ ତିନିଜଣ ଶକ୍ତିଶାଳୀ ନେତା—(୧) ମାଜିନୀ (Mazzini pronounced Mat-zee-nea), କାଭୁର (Cavour) ଓ

ଗାରିବାଲ୍ଡି (Garibaldi) । ମାଜିନୀ ଥିଲେ ଜଣେ ପ୍ରତିଭାଶାଳୀ ଲେଖକ । ସେ ନିଜର ଲେଖନୀ ସାହାଯ୍ୟରେ ବିପ୍ଳବର ଭାବ ଦେଶରେ ପ୍ରଚାର କରିଥିଲେ । ୧୮୩୦ ଖ୍ରୀଷ୍ଟାବ୍ଦରେ ସେ ବନ୍ଦୀ ହୋଇଥିଲେ। ପରେ ସେ "ଇଟାଲୀୟ ଯୁବକସଙ୍ଘ" (Young Italy) ନାମରେ ଏକ ଦଳଗଠନ କରି ୧୮୩୪ ରେ ଜେନୋଆର ଅସ୍ତ୍ରାଗାର ଲୁଣ୍ଠନ କରିବାକୁ କୌଶଳକରିଥିଲେ, ମାତ୍ର ତାହା ବ୍ୟର୍ଥ ହେବାରୁ



ଗାରିବାଲ୍ଡି

ସେ ଇଟାଲୀରୁ ପଳାଇ ଯାଇଥିଲେ । ଏହି ଯୁବସଙ୍ଘରେ ଯୋଗ ଦେଇଥିଲେ ଗାରିବାଲ୍ଡି ନାମକ ଜଣେ ଯୁବକ । ସେ ମଧ୍ୟ ଇଟାଲୀରୁ ପଳାଇ ଯାଇଥିଲେ । ସେତେବେଳେ ଦକ୍ଷିଣ ଆମେରିକାରେ ଘୋର ବିପ୍ଳବ ଚାଲିଥାଏ । ଗାରିବାଲ୍ଡି ଚଉଦବର୍ଷକାଳ ସେଠାରେ ବାସ କରି ବିପ୍ଳବୀମାନଙ୍କୁ ସାହାଯ୍ୟ କରିଥିଲେ । ଅବଶେଷରେ ୧୮୪୮ ଖ୍ରୀଷ୍ଟାବ୍ଦରେ ସେ ସ୍ୱଦେଶକୁ ଫେରି ଆସିଲେ ଏବଂ ନିଜର ଜନ୍ମସ୍ଥାନ ନାଇସ (Nice) ଠାରେ ଅବତୀର୍ଣ୍ଣ ହେଲେ । ନାଇସ ସେତେବେଳେ ପିଡ୍‌ମଣ୍ଟର ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ପିଡ୍‌ମଣ୍ଟର ରାଜା ଥିଲେ ଖାଣ୍ଟି ଇଟାଲୀୟ । ଇଟାଲୀର ଲୋକଙ୍କୁ

ବିଦେଶୀ ଶାସକବର୍ଗଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ ଓ ଉକ୍ତ ଶାସକ-ବର୍ଗଙ୍କୁ ସାହାଯ୍ୟ କରୁଥିବା ଅଷ୍ଟ୍ରୀୟ ଓ ଫରାସୀ ସୈନ୍ୟଙ୍କ ସହିତ ଯୁଦ୍ଧ କରିବା ପାଇଁ ଗାରିବାଲ୍‌ଡି ପିଡ୍‌ମଣ୍ଟର ରାଜାଙ୍କୁ ସାହାଯ୍ୟ କଲେ । କିନ୍ତୁ ସେଥିରେ ବିଫଳ ମନୋରଥ ହେବାରୁ ଗାରିବାଲ୍‌ଡି ଆମେରିକାର ଯୁକ୍ତରାଷ୍ଟ୍ରକୁ ପଳାଇଗଲେ । ସେଠାରେ ସେ ଦଶ ବର୍ଷ କାଳ ବହୁ କ୍ଳେଶ ସହି ଦିନାତିପାତ କଲେ, ମାତ୍ର ଧନେ ହେଲେ ଇଟାଲୀର ସ୍ୱାଧୀନତା ସ୍ୱପ୍ନ ପରିତ୍ୟାଗ କରିପାରିଲେ ନାହିଁ ।

ଏଣେ ମାଜିନୀ ଇଟାଲୀର ମୁକ୍ତି ପାଇଁ ଇଟାଲୀୟମାନଙ୍କ ମନରେ ପ୍ରବଳ ଉନ୍ମାଦନା ସୃଷ୍ଟି କରିବାରେ ଲାଗିଥିଲେ । ୧୮୫୪ ଖ୍ରୀଷ୍ଟାବ୍ଦରେ ଗାରିବାଲ୍‌ଡି ସ୍ୱଦେଶକୁ ଫେରି ଆସି କିଛି କାଳ କୃଷକରୂପେ ଅବସ୍ଥାନକରି ୧୮୫୯ ଖ୍ରୀଷ୍ଟାବ୍ଦରେ ପୁନର୍ବାର ଜାତୀୟ ଆନ୍ଦୋଳନରେ ଯୋଗ ଦେଲେ । ଏହି ସମୟରେ ସିସିଲିର ଅଧିବାସୀମାନେ ନେପଲ୍‌ସର ରାଜା ଦ୍ୱିତୀୟ ଫ୍ରାନସିସ୍‌ଙ୍କ ବିରୁଦ୍ଧରେ ଘୋର ବିଦ୍ରୋହ ଆରମ୍ଭ କରିଥାନ୍ତି । ୧୮୬୦ ଖ୍ରୀଷ୍ଟାବ୍ଦରେ ଗାରିବାଲ୍‌ଡି ତାଙ୍କର "ଲାଲକୁର୍ତ୍ତିାଦଳ" ( Red-shirts ) ନାମକ ସ୍ୱେଚ୍ଛାସେବକବାହିନୀ ନେଇ ସିସିଲିରେ ଉପସ୍ଥିତ ହେଲେ ଏବଂ ସିସିଲି ଅଭିଯାନ ଆରମ୍ଭ କଲେ । ତାଙ୍କର ଏ ଅସୀମ ଦୁଃସାହସ ଦେଖି ଲୋକେ ଅବାକ୍ ହୋଇଗଲେ । ଗାରିବାଲ୍‌ଡିଙ୍କ ସ୍ୱେଚ୍ଛାସେବକବାହିନୀରେ ଥିଲେ ପ୍ରାୟ ଏକ ସହସ୍ର ଲୋକ, ମାତ୍ର ସିସିଲିରେ ରାଜପକ୍ଷର ସୈନ୍ୟ ଥିଲେ ଚବିଶ ହଜାର । ତା ଛଡ଼ା ସିସିଲି ବାହାରେ ରାଜାଙ୍କର ଏକ ଲକ୍ଷ ସୈନ୍ୟ ରହିଥିଲେ । ତଥାପି ଅଳ୍ପ କେତେକ ସପ୍ତାହ ବ୍ୟାପୀ ଯୁଦ୍ଧ ପରେ ଗାରିବାଲ୍‌ଡି ଜୟଲାଭ କଲେ । ଏହି ବିଜୟ ସେ ପିଡ୍‌ମଣ୍ଟର ରାଜା ଭିକ୍‌ଟର ଇମାନୁଏଲଙ୍କ ପାଇଁ ହାସଲ କରିଛନ୍ତି ବୋଲି ଘୋଷଣା କଲେ ।

ଇମାନୁଏଲ୍ ଜଣେ ସାଧୁ ସ୍ୱଦେଶବତ୍ସଳ ରାଜା ଥିଲେ । ତା ଛଡ଼ା ସେ ଥିଲେ ଜଣେ ବିଚକ୍ଷଣ ଯୋଦ୍ଧା । ତାଙ୍କର ମନ୍ତ୍ରୀଙ୍କ ନାମ କାଭୁର୍ । କାଭୁର୍ ଊନବିଂଶ ଶତାବ୍ଦୀର ପ୍ରସିଦ୍ଧ ରାଜନୀତିଜ୍ଞମାନଙ୍କ ମଧ୍ୟରୁ ଅନ୍ୟତମ । ତାଙ୍କ ନେତୃତ୍ୱବଳରେ ପିଡ଼ମଣ୍ଟ ଏକ ପ୍ରଗତିଶୀଳ ଆଦର୍ଶ ରାଜ୍ୟରେ ପରିଣତ ହୋଇଥିଲା । କାଭୁର୍ ମନେ କରୁଥିଲେ ଯେ, ପିଡ଼ମଣ୍ଟ ରାଜ୍ୟଦ୍ୱାରା ହିଁ ଇଟାଲୀରେ ଏକତା ଓ ସ୍ୱାଧୀନତାର ପ୍ରତିଷ୍ଠା ସମ୍ଭବପର ହେବ । ସେହି ଢଗରେ ସେ ପିଡ଼ମଣ୍ଟକୁ ପ୍ରସ୍ତୁତ କରିବାକୁ ଚେଷ୍ଟା କରିଥିଲେ ।



କାଭୁର୍

ଗାରିବାଲ୍ଡି ସିସିଲି ଅଭିଯାନରେ ଅପୂର୍ବ ସାଫଲ୍ୟ ଲାଭ କରି ସମଗ୍ର ନେପ୍‌ଲସ ଜୟ କରିବାକୁ ବାହାରିଲେ । ଅଳ୍ପ ଦିନ ମଧ୍ୟରେ ସାରା ନେପ୍‌ଲସ ରାଜ୍ୟ ତାଙ୍କର ହସ୍ତଗତ ହେଲା । ଭିକ୍ଟର ଇମାନୁଏଲ ଗାରିବାଲ୍ଡିଙ୍କ ସହିତ ଆସି ଯୋଗ ଦେଲେ । ୧୮୬୧ ଖ୍ରୀଷ୍ଟାବ୍ଦର ଫେବୃଆରୀ ମାସ ୧୮ ତାରିଖରେ ପ୍ରାୟ ସମଗ୍ର ଇଟାଲୀର ପ୍ରତିନିଧିମାନଙ୍କୁ ନେଇ ଏକ ପାର୍ଲାମେଣ୍ଟ ଅଧିବେଶନ ଆରମ୍ଭ ହେଲା । ମାର୍ଚ୍ଚ ୧୭ ତାରିଖରେ ଭିକ୍ଟର ଇମାନୁଏଲ ଇଟାଲୀର ରାଜା ରୂପେ ଘୋଷିତ ହେଲେ । ତଥାପି ଦୁଇଟି ଅଞ୍ଚଳ ବାକି ରହିଗଲା,

ଭେନେସିଅ ଓ ରୋମ୍ । ଭେନେସିଆ ଅଷ୍ଟ୍ରିଆର ଶାସନାଧୀନ ରହିଲା ଓ ରୋମରେ ପୋପ ରାଜତ୍ୱ କରିବାକୁ ଲାଗିଲେ । ପୋପଙ୍କ ରାଜ୍ୟକୁ ଏକ ଫରାସୀ ସୈନ୍ୟବାହିନୀ ରକ୍ଷା କରୁଥିଲେ । ଗାରିବାଲ୍‌ଡ଼ି ରୋମ ଦଖଲ କରିବାପାଇଁ ଚେଷ୍ଟା କରି ଦୁଇଥର ଅକୃତକାର୍ଯ୍ୟ ହେଲେ । ଅବଶେଷରେ ୧୮୬୬ ଖ୍ରୀଷ୍ଟାବ୍ଦରେ ଅଷ୍ଟ୍ରିଆ ଓ ପ୍ରୁସିଆ ମଧ୍ୟରେ ଯୁଦ୍ଧ ଲାଗିଲା । ଭିକ୍‌ଟର ଇମାନୁଏଲ ପ୍ରୁସିଆ ସହିତ ଯୋଗଦେଲେ ଏବଂ ଯୁଦ୍ଧରେ ପ୍ରୁସିଅ ବିଜୟ ଲଭକଲା । ଯୁଦ୍ଧ ପରେ ଯେଉଁ ସନ୍ଧି-ପତ୍ର ସ୍ୱାକ୍ଷରିତ ହେଲା ତାହା ଫଳରେ ବିସ୍‌ମାର୍କଙ୍କ ପ୍ରତିଶ୍ରୁତିମତେ ଭେନେସିଅକୁ ଇଟାଲୀ ହସ୍ତରେ ସମର୍ପଣ କରାଗଲା । ଚାରିବର୍ଷ ପରେ ୧୮୭୦ ଖ୍ରୀଷ୍ଟାବ୍ଦରେ ଫ୍ରାନ୍‌ସ ଓ ପ୍ରୁସିଅ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା । ଏହି ଯୁଦ୍ଧ ସମୟରେ ଫରାସୀ ବାହିନୀକୁ ରୋମରୁ ଉଠାଇ ଆଣିବା ଦରକାର ପଡ଼ିଲା । ଏହାର ସୁଯୋଗ ନେଇ ଇଟାଲୀୟ ସୈନ୍ୟମାନେ ରୋମରେ ପ୍ରବେଶ କଲେ । ରୋମର ଅଧିକାଂଶ ଅଧିବାସୀ ଇଟାଲୀ ସହିତ ରୋମର ମିଶ୍ରଣ ସମ୍ପର୍କରେ ଭୋଟ ଦେଲେ । ରୋମନଗରୀ ସମ୍ମିଳିତ ଇଟାଲୀର ରାଜଧାନୀ ହେଲା । ମାଜିନି, କାଭୁର୍ ଓ ଗାରିବାଲ୍‌ଡ଼ି ସମସ୍ତଙ୍କ ସ୍ୱପ୍ନ ସଫଳ ହେଲା । ଭିକ୍‌ଟର ଇମାନୁଏଲ ସମ୍ମିଳିତ ଇଟାଲୀର ପ୍ରଥମ ନୃପତି ହେଲେ ।

**ତୁରସ୍କ ଓ ମୁସ୍ତାଫା କେମାଲ:**—ଏକ ସମୟରେ ତୁର୍କମାନେ ଏକ ବିଶାଳ ସାମ୍ରାଜ୍ୟ ଗଠନ କରିଥିଲେ । ଷୋଡ଼ଶ ଶତାବ୍ଦୀରେ ସୁଲ୍‌ତାନ ପ୍ରଥମ ସୁଲେଇମାନଙ୍କ ସମୟରେ ଅଟୋମାନ-ତୁର୍କ ସାମ୍ରାଜ୍ୟ ସୁଦୂର ବିସ୍ତୃତ ଥିଲା । ଉତ୍ତର ଅଫ୍ରିକା, ମିଶର, ସିରିଅ, ଆରବଦେଶ, ଏସିଆମାଇନର, ବଲ୍‌କାନ ଉପଦ୍ୱୀପ ତଥା ରୁଷିଅ ଓ ହଙ୍ଗେରୀର କେତେକ ଅଂଶ ଏହି ବିଶାଳ ସାମ୍ରାଜ୍ୟର ଅନ୍ତର୍ଗତ ଥିଲା । କାଳକ୍ରମେ ଏହି ସାମ୍ରାଜ୍ୟ ଦୁର୍ବଳ ହୋଇପଡ଼ିଲା

ଏବଂ ଏହାର ପରିସର ସଂକୁଚିତ ହୋଇଗଲା । ବୃହତ୍ ଇଉରୋପୀୟ ଶକ୍ତିମାନେ ତୁରସ୍କକୁ କେନ୍ଦ୍ରକରି ନାନା ଗଣ୍ଡଗୋଳ ସୃଷ୍ଟି କଲେ । ରୁଷିଆ ତାର ପ୍ରଧାନ ଶତ୍ରୁ ହୋଇ ବାହାରିଲା । ପ୍ରଥମ ବିଶ୍ୱ ମହାସମର (ଖ୍ରୀ:୧୯୧୪-ଖ୍ରୀ:୧୯୧୮) ସମୟରେ ତୁରସ୍କ ଜର୍ମାନୀପକ୍ଷରେ ଯୋଗ ଦେଇ ଘୋର ଦୁର୍ଦ୍ଦଶା ଭୋଗକଲା । ଯୁଦ୍ଧ ପରେ ୧୯୨୦ ଖ୍ରୀଷ୍ଟାବ୍ଦର ସେଭ୍ରର୍ସ ସନ୍ଧି ( Treaty of Sevres ) ଫଳରେ ତୁରସ୍କ ଏକପ୍ରକାର ଇଉରୋପରୁ ବିତାଡ଼ିତ ହେଲା । ଏହା ଫଳରେ ତୁରସ୍କରେ ତୀବ୍ର ଜାତୀୟ ଅନ୍ଦୋଳନ ଅରମ୍ଭ ହେଲା । ଏହି ଅନ୍ଦୋଳନର ନେତୃତ୍ୱ ନେଇଥିଲେ ମୁସ୍ତାଫା କେମାଲ୍ । ତାଙ୍କ ଯୋଗୁଁ ସେଭ୍ରର୍ସ ସନ୍ଧି ପରିବର୍ତ୍ତିତ ହୋଇ ୧୯୨୩ ଖ୍ରୀଷ୍ଟାବ୍ଦରେ ଲସେନ୍ନ ( Lausanne ) ଠାରେ ଏକ ନୂତନ ସନ୍ଧି ସ୍ୱାକ୍ଷରିତ ହେଲା । ଏହି ସନ୍ଧି ଫଳରେ କନ୍‌ଷ୍ଟାଣ୍ଟିନୋପ୍‌ଲ୍, ଗାଲିପଲି, ଅଡ୍ରିଅନୋପଲ୍, ପୂର୍ବ ଥ୍ରେସ, ଅନାଟୋଲିଅ, ସିଲିସିଅ, ଅର୍ମେନିଅ ଓ ସ୍ମିର୍ଣ୍ଣା ତୁରସ୍କ ହାତରେ ରହିଲା; ମାତ୍ର ଲିବିଅ, ମିଶର, ସୁଡ଼ାନ, ପାଲେଷ୍ଟାଇନ, ସିରିଅ, ମେସୋପୋଟେମିଅ ଓ ଅରବ ଉପରୁ ତାର ସମସ୍ତ କର୍ତ୍ତୃତ୍ୱ ଲୋପ ପାଇଲା ।

ମୁସ୍ତାଫା କେମାଲ:—କେମାଲଙ୍କୁ ଅଧୁନିକ ତୁର୍କୀର ଜନ୍ମଦାତା ବୋଲି କୁହାଯାଏ । ( ଅଚ୍ଛା, ପିଲମାନେ, କହିଲ— ଅଧୁନିକ ଭାରତର ଜନ୍ମଦାତା କିଏ ? ) କେମାଲ ୧୮୮୧ ଖ୍ରୀଷ୍ଟାବ୍ଦରେ ଏକ ସାମାନ୍ୟ ତୁର୍କ ପରିବାରରେ ଜନ୍ମଗ୍ରହଣ କରିଥିଲେ । କନଷ୍ଟାଣ୍ଟିନୋପଲର ସାମରିକ କଲେଜରେ ଶିକ୍ଷାଲାଭ କରିବା ସମୟରେ ସେ ଏକ ଗୁପ୍ତ ଅନ୍ଦୋଳନରେ ଯୋଗ ଦେଇଥିଲେ । ଏହି ଅନ୍ଦୋଳନର ଲକ୍ଷ୍ୟ ଥିଲା ଯଥେଚ୍ଛା ଶାସନର ଲୋପ ଓ ଗଣତନ୍ତ୍ର ଶାସନର ପ୍ରତିଷ୍ଠା । ପ୍ରଥମ ବିଶ୍ୱ ମହାସମର

ସମୟରେ ସେ ଜଣେ ଦକ୍ଷ ସେନାପତିରୂପେ ଖ୍ୟାତିଲାଭ କରିଥିଲେ । ଯୁଦ୍ଧ ପରେ ତୁରସ୍କର ଅବସ୍ଥା ବଡ଼ ଶୋଚନୀୟ ହୋଇପଡ଼ିଥିଲା ବୋଲି ପୂର୍ବରୁ କୁହାଯାଇଅଛି । ଅନେକ ଦିନରୁ ତୁରସ୍କକୁ "ଇଉରୋପର ରୁଗ୍‌ଣବ୍ୟକ୍ତି" (Sickman of Europe) ବୋଲି କୁହାହୋଇ ଆସୁଥିଲା । ପ୍ରଥମ ମହାସମର ପରେ ଏହି ରୁଗ୍‌ଣ ବ୍ୟକ୍ତିର ଅଭିବଞ୍ଚିବାର ଆଶା ରହିଲା ନାହିଁ । ତୁରସ୍କର ସୁଲତାନ ଓ୍ୱାହିଦଉଦ୍ଦିନ ଜଣେ ବ୍ୟକ୍ତିତ୍ୱହୀନ ଲୋକ ଥିଲେ ଓ ସେ ଇଂରେଜମାନଙ୍କ ହସ୍ତରେ କ୍ରୀଡ଼ାପୁତ୍ତଳୀ ଥିଲେ । ଦେଶ ଧ୍ୱଂସ ମୁଖରେ ପଡ଼ିଥିବାବେଳେ ସେ ନିଜକୁ ବଞ୍ଚାଇ ରଖି-ବାକୁ ଅଧିକ ଯତ୍ନବାନ ଥିଲେ । ତୁରସ୍କର ଲୋକେ ଏଥିରେ ହତାଶ



ମୁସ୍ତାଫା କେମାଲ୍

ହୋଇ ପଡ଼ିଥିଲେ । ମାତ୍ର ଏହି ଦୁଃସମୟରେ ସାହସ ଧରିଥିଲେ ଅଳ୍ପ କେତେ ଜଣ ବୀରତୁର୍କ । ସେମାନେ ଦେଶପାଇଁ ନୀରବରେ ଓ ଗୋପନରେ କାର୍ଯ୍ୟକରି ଚାଲିଥିଲେ । ସେମାନେ ଗୁପ୍ତଭାବରେ ଅସ୍ତ୍ରଶସ୍ତ୍ର ଆଣି ଅନାଟୋଲିଆ(ଏସିଆମାଇନର)ରେ ସଞ୍ଚୟ କରିଥିଲେ । ତନ୍ମଧ୍ୟରେ ପ୍ରଧାନ ଥିଲେ ମୁସ୍ତାଫା କେମାଲ୍ ପାଶା ।

କେମାଲ୍ ଇଂରେଜମାନଙ୍କର ଚକ୍ଷୁଶୂଳ ଥିଲେ । ତୁରସ୍କ ସୁଲତାନ ମଧ୍ୟ ତାଙ୍କ ପ୍ରତି ପ୍ରସନ୍ନ ନ ଥିଲେ । ସେ ମନେ କରିଥିଲେ କେମାଲଙ୍କୁ ଦୂରକୁ ସ୍ଥାନାନ୍ତରିତ କରିଦେବା ନିରାପଦ । ତେଣୁ ସେ କେମାଲଙ୍କୁ ସୈନ୍ୟବାହିନୀର ଇନ୍‌ସପେକ୍‌ଟର ଜେନେରାଲ କରି ପୂର୍ବ ଅନାଟୋଲିଆକୁ ପଠାଇ ଦେଇଥିଲେ । କିନ୍ତୁ ଏହାଦ୍ୱାରା କେମାଲଙ୍କର ଅଧିକ ସୁବିଧା ହୋଇଥିଲା । ବିଶ୍ୱସ୍ତ ସହକର୍ମୀମାନଙ୍କୁ ନେଇ ସେ ଗୁପ୍ତଭାବରେ ଜାତୀୟ ଆନ୍ଦୋଳନକୁ ପ୍ରବଳତର କରିବାକୁ ଚେଷ୍ଟା କରିଥିଲେ । ଅନାଟୋଲିଆରେ ଥିବା ସୈନ୍ୟ ବାହିନୀର ଅନ୍ୟାନ୍ୟ ବଡ଼ କର୍ମଚାରୀଙ୍କୁ ସେ ଜାତୀୟ ଭାବରେ ଅନୁପ୍ରାଣିତ କରିଥିଲେ । ଏହି ସମୟରେ ଏକ ଉତ୍ତେଜକ ଘଟଣା ଘଟିଲା । ୧୯୧୯ ଖ୍ରୀଷ୍ଟାବ୍ଦରେ ଇଟାଲି ଏସିଆମାଇନର ଦଖଲକରି ନେବାକୁ ମନସ୍ଥ କଲା । ଇଂରେଜ ଓ ଫରାସୀମାନେ ଏହାର ବିରୋଧୀ ଥିଲେ । ଗ୍ରୀକ୍‌ମାନେ ଏସିଆମାଇନରକୁ ଆତ୍ମଣାର ରାଜ୍ୟଭୁକ୍ତ କରିବାକୁ ଖୁଜୁଁଥିଲେ । ଇଟାଲି ତାର ସଙ୍କଳ୍ପ କାର୍ଯ୍ୟରେ ପରିଣତ କରିବା ପୂର୍ବରୁ ଗ୍ରୀକ୍‌ସୈନ୍ୟମାନେ ଇଂରେଜ ଓ ଫରାସୀମାନଙ୍କ ସାହାଯ୍ୟରେ ବ୍ରିଟିଶ ଜାହାଜରେ ଆସି ଏସିଆ-ମାଇନର ଅନ୍ତର୍ଗତ ସ୍ମର୍ଣ୍ଣା ଅଞ୍ଚଳରେ ଉପସ୍ଥିତ ହୋଇଗଲେ । କେବଳ ସେତିକି ନୁହେଁ, ଏହି ଗ୍ରୀକ୍ ସୈନ୍ୟମାନେ ସେଠାରେ ଭୀଷଣ ହତ୍ୟାକାଣ୍ଡ ଆରମ୍ଭ କରିଦେଲେ ।

ସମସ୍ତ ତୁରସ୍କରେ କ୍ରୋଧାଗ୍ନି ଜଳି ଉଠିଲା । କେମାଲ ପାଶାଙ୍କ ଜାତୀୟ ଆନ୍ଦୋଳନ ତେଜି ଉଠିଲା । ତୁରସ୍କ ସୁଲତାନ କେମାଲଙ୍କୁ ଧରିବାପାଇଁ ଆଦେଶ ଦେଲେ, ମାତ୍ର ଉକ୍ତ ଆଦେଶ କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ନିର୍ବାଚିତ ଲୋକପ୍ରତିନିଧିଙ୍କୁ ନେଇ ଏକ ଜାତୀୟ କଂଗ୍ରେସ ଗଠିତ ହେଲା । ଉକ୍ତ କଂଗ୍ରେସ "ଜାତୀୟ ଚୁକ୍ତିପତ୍ର"

(National Pact) ନାମରେ କେତେକ ସନ୍ଧସର୍ତ୍ତ ମିତ୍ରପକ୍ଷଙ୍କ ନିକଟରେ ଉପସ୍ଥାପିତ କଲେ । ସୁଲତାନ ବ୍ୟସ୍ତ ହୋଇ ନବ ନିର୍ବାଚିତ ପାର୍ଲାମେଣ୍ଟ ଡାକିଲେ ! ଜାତୀୟ ଦଳର ପ୍ରତିନିଧି ସଂଖ୍ୟା ଏଥିରେ ବେଶି ଥିଲା । ଏହା କନଷ୍ଟାଣ୍ଟିନୋପଲ୍ ବା ଇସ୍ତାନବୁଲରେ ବସି ଜାତୀୟ ଚୁକ୍ତିପତ୍ରକୁ ମଞ୍ଜୁର କଲା । ମିତ୍ରପକ୍ଷ ଏହି ଚୁକ୍ତିପତ୍ରର ଦାବିଗୁଡ଼ିକୁ ଗ୍ରହଣ କରିବାକୁ ଅଦୌ ରାଜି ନ ଥିଲେ । ଇଂରେଜ ସେନାପତି ସୈନ୍ୟ ନେଇ ଇସ୍ତାନବୁଲ ଦଖଲ କଲେ, ସେଠାରେ ସାମରିକ ଅାଇନ ଜାରି କଲେ ଏବଂ ଜାତୀୟ ଦଳର କେତେକ ପାର୍ଲାମେଣ୍ଟ ସଭ୍ୟଙ୍କୁ ଧରି ମାଲଟାକୁ ନିର୍ବାସିତ କଲେ ।

ଏହା ଫଳରେ ପୁନର୍ବାର ଭୀଷଣ ଉତ୍ତେଜନାର ତେଉ ଦେଶସାରା ଖେଳିଗଲା । ପାର୍ଲାମେଣ୍ଟର ବହୁ ସଭ୍ୟ ଅଙ୍ଗୋରାକୁ ପଳାଇଗଲେ । ସେଠାରେ ପାର୍ଲାମେଣ୍ଟ ବସି ନିଜକୁ ତୁରସ୍କର ମହାଜାତୀୟ ସମ୍ମିଳନୀ (Grand National Assembly of Turkey) ବୋଲି ଘୋଷଣା କଲା ଏବଂ ସୁଲତାନ ଓ ତାଙ୍କ ସରକାରଙ୍କ ଶାସନକୁ ଅସ୍ୱୀକାର କଲା । ତୁରସ୍କ ସୁଲତାନ କେମାଲ୍ ପାଶା ଓ ଅନ୍ୟ ନେତାମାନଙ୍କୁ ରାଜଦ୍ରୋହ ଅପରାଧରେ ଅପରାଧୀ ବୋଲି ଘୋଷଣା କଲେ ଏବଂ କେମାଲ୍ ପାଶା ପ୍ରଭୃତିଙ୍କୁ ଯେ ହତ୍ୟା କରିବ ସେ ଧର୍ମର କାର୍ଯ୍ୟ କରି ଇହପର ଉଭୟ ଜଗତରେ ପୁରସ୍କାର ପାଇବ ବୋଲି ପ୍ରଚାର କଲେ । ଜାତୀୟବାଦୀ ନେତାମାନଙ୍କ ବିରୁଦ୍ଧରେ ଜିହାଦ (ଧର୍ମଯୁଦ୍ଧ) ଘୋଷଣା କରାଗଲା । ଦେଶରେ ଘୋର ଅନ୍ତର୍ବିପ୍ଳବର ସୂତ୍ରପାତ ହେଲା । ୧୯୨୦ ଖ୍ରୀଷ୍ଟାବ୍ଦରେ ପୂର୍ବୋକ୍ତ ସେଭ୍ରେସ୍ ସନ୍ଧିର ସର୍ତ୍ତମାନ ପ୍ରକାଶିତ ହେଲା । ତଦ୍ୱାରା ତୁରସ୍କର ସ୍ୱାଧୀନ ସତ୍ତା ଏକାବେଳକେ ଲୋପ ପାଇବ ବୋଲି ଲୋକେ ମନେକଲେ । ଦେଶରେ ସାଧାରଣ ଶୋକଦିବସ ଓ ହରତାଳ

ପାଳିତ ହେଲା । ଜାତୀୟବାଦୀମାନେ ସେଭ୍ରେସ ସନ୍ଧିକୁ ସମ୍ପୂର୍ଣ୍ଣ ଅଗ୍ରାହ୍ୟ କଲେ । କେମାଲ୍ ତୁର୍କ-ଜାତିକୁ ଉଦ୍‌ବୋଧନ ଦେଇ କହିଲେ, "ଏ ଜାତୀୟ ସଂଗ୍ରାମରେ ଜୟ ଲଭକର ବା ଜଗତ୍ ପୃଷ୍ଠରୁ ନିଶ୍ଚିହ୍ନ ହୋଇଯାଅ" ( Win or be wiped out ) । ଏହି ସମୟରେ ଅଧିକ ଗ୍ରୀକ୍ ସୈନ୍ୟ ଅସି ପହଞ୍ଚିଲେ ଏବଂ ଯୁଦ୍ଧ ଲାଗିଗଲା । କେମାଲ୍ ବହୁ କଷ୍ଟରେ ଯୁଦ୍ଧ ଚଳାଇଲେ । ଅବଶେଷରେ ସେ ଯୁଦ୍ଧରେ ଜୟୀ ହେଲେ ଏବଂ ଲୁସେନ୍‌ଠାରେ ଏକ ନୂତନ ସନ୍ଧି ସ୍ୱାକ୍ଷରିତ ହେଲା । ତୁରସ୍କର ଜାତୀୟ ନେତାମାନେ "ଜାତୀୟ ଚୁକ୍ତିପତ୍ର"ରେ ଯାହା ଯାହା ଦାବି କରିଥିଲେ ତାହା ପ୍ରାୟ ସମସ୍ତ ହାସଲ କଲେ । କେମାଲ୍ କେବଳ ନିଜର ମାତୃଭୂମି ତୁର୍କୀର ସ୍ୱାଧୀନତା ଚାହୁଁଥିଲେ, ଅନ୍ୟ ରାଜ୍ୟରେ ହସ୍ତକ୍ଷେପ କରିବାକୁ ଚାହୁଁ ନ ଥିଲେ । ତାଙ୍କର ଉଦ୍ଦେଶ୍ୟ ପୂର୍ଣ୍ଣ ହେଲା । ତୁରସ୍କ ଏକ ସ୍ୱାଧୀନ, ଅବିମିଶ୍ର ତୁର୍କ ରାଜ୍ୟରେ ପରିଣତ ହେଲା ।

**ସଂସ୍କାରକ ମୁସ୍ତାଫା କେମାଲ:**—୧୯୨୨ ଖ୍ରୀଷ୍ଟାବ୍ଦର ନଭେମ୍ବର ମାସରେ କେମାଲ୍‌ଙ୍କ ପ୍ରବର୍ତ୍ତନା ଫଳରେ ଜାତୀୟ ସମ୍ମିଳନୀ ସୁଲ୍‌ତାନ ପଦ ଉଠାଇ ଦେଲା । ଏହାର କିଛିଦିନ ପରେ ସୁଲତାନ ମହମ୍ମଦଉଦ୍ଦିନଙ୍କ ବିରୁଦ୍ଧରେ ଦେଶଦ୍ରୋହର ଅଭିଯୋଗ ଅଣାଗଲା । ମହମ୍ମଦଉଦ୍ଦିନ ତୁରସ୍କ ଛାଡ଼ି ପଳାଇଗଲେ । ୧୯୨୩ ଖ୍ରୀଷ୍ଟାବ୍ଦରେ ତୁରସ୍କ ଗଣତାନ୍ତ୍ରିକ ରାଷ୍ଟ୍ର(Republic) ରୂପେ ଘୋଷିତ ହେଲା । ମୁସ୍ତାଫା କେମାଲ୍ ଏହି ଗଣତନ୍ତ୍ରର ସଭାପତି ନିର୍ବାଚିତ ହେଲେ । ଅଙ୍ଗୋରାରେ ଏହାର ରାଜଧାନୀ ପ୍ରତିଷ୍ଠିତ ହେଲା । କେମାଲ୍‌ଙ୍କ ହସ୍ତରେ ସମସ୍ତ କ୍ଷମତା କେନ୍ଦ୍ରୀଭୂତ ହୋଇ ରହିଲା । ଏହା ଫଳରେ ସେ ଏକଚ୍ଛତ୍ର ଶାସକରେ ପରିଣତ ହେଲେ । ୧୯୨୪ ଖ୍ରୀଷ୍ଟାବ୍ଦରେ ସେ ଖଲିଫା ପଦ ମଧ୍ୟ (Caliphate) ଉଠାଇ

ଦେଲେ । ଯେଉଁମାନେ ତାଙ୍କ ସ୍ୱାର୍ଥ ମାତର ବିରୋଧ କରୁଥିଲେ ସେମାନଙ୍କର ସମସ୍ତ ବିରୋଧ ଦମନକରି, କେମାଲ ନିର୍ବିଘ୍ନରେ ନାନା କ୍ଷେତ୍ରର ସଂସ୍କାର ଆରମ୍ଭ କଲେ । ପ୍ରଥମେ ସେ ତୁର୍କୀବାସୀଙ୍କ ପରିଧାନର ଏକ ବିଶିଷ୍ଟ ଅଙ୍ଗ "ଫେଜ" ଟୋପିର ପ୍ରଚଳନ ବନ୍ଦ କରିଦେଲେ । ତା ପରେ ସେ ନାନାବିଧ ସାମାଜିକ ସଂସ୍କାର ପ୍ରବର୍ତ୍ତନ କଲେ । ଅନେକ ପ୍ରାଚୀନ ଧର୍ମାନୁଷ୍ଠାନ ଓ ପ୍ରାଚୀନ କୁପ୍ରଥା ଜାତିର ଉନ୍ନତି ପଥରେ ପ୍ରତିବନ୍ଧକ ସୃଷ୍ଟି କରୁଥିବାର ଦେଖି ସେ ତାହା କ୍ରମେ କ୍ରମେ ଉଠାଇ ଦେଲେ ଓ ସମସ୍ତ ଧର୍ମନିକେତନ ବନ୍ଦ କରିଦେଇ ସେଗୁଡ଼ିକର ସମସ୍ତ ସମ୍ପତ୍ତିକୁ ରାଜ୍ୟର ସମ୍ପତ୍ତି ବୋଲି ଘୋଷଣା କଲେ । ସମସ୍ତ ଫକୀର-ସନ୍ନ୍ୟାସୀ ଶ୍ରେଣୀର ଲୋକଙ୍କୁ ଧର୍ମ ପ୍ରତିଷ୍ଠାନମାନ ତ୍ୟାଗକରି ସାଧାରଣ ଲୋକଙ୍କ ପରି ଜୀବିକାର୍ଜନ କରିବାକୁ ପଡ଼ିଲା । ଏପରିକି ସେମାନଙ୍କୁ ନିଜର ପୋଷାକ ମଧ୍ୟ ବଦଳାଇବାକୁ ପଡ଼ିଲା । ଧର୍ମ ପ୍ରତିଷ୍ଠାନମାନଙ୍କ ସହିତ ସଂଯୁକ୍ତ ସମସ୍ତ ବିଦ୍ୟାଳୟ ଉଠିଗଲା ଏବଂ ତା ପରିବର୍ତ୍ତେ ବୈଜ୍ଞାନିକ ସ୍କୁଲ କଲେଜମାନ ସ୍ଥାପିତ ହେଲା । ଶିକ୍ଷାନୁଷ୍ଠାନମାନଙ୍କରେ ଧର୍ମଶିକ୍ଷା ନିଷେଧ କରି ଦିଆଗଲା । ପୂର୍ବରୁ ଦେଶ ପ୍ରଚଳିତ ଆଇନ ବ୍ୟବସ୍ଥାରେ କୋରାନ୍‌ଜନିତ ବା ସାମ୍ପ୍ରଦାୟିକ ପ୍ରଭାବ ଯଥେଷ୍ଟ ଥିଲା । କେମାଲ ଇଟାଲୀ, ସୁଇଜରଲାଣ୍ଡ ଓ ଜର୍ମାନୀର ଆଇନବ୍ୟବସ୍ଥାକୁ ଆଦର୍ଶସ୍ୱରୂପ ଗ୍ରହଣ କରି ତୁର୍କୀ ପାଇଁ ନୂତନ ବିଧିବ୍ୟବସ୍ଥା ପ୍ରଣୟନ କଲେ । ଦେଶରୁ ବହୁବିବାହ ପ୍ରଥା ଉଠାଇ ଦିଆଗଲା ।

ପୂର୍ବରୁ ଶିଳ୍ପବିଦ୍ୟା ଓ ସ୍ଥାପତ୍ୟଶିଳ୍ପ ଇସ୍‌ଲାମ ଧର୍ମାନୁମୋଦିତ ନୁହେଁ ବୋଲି ଅବହେଳିତ ହେଉଥିଲା । କେମାଲ ସେ ସବୁ ବିଦ୍ୟାର ଅନୁଶୀଳନକୁ ପ୍ରୋତ୍ସାହିତ କଲେ । ବାଳକ ବାଳିକାମାନଙ୍କ ପାଇଁ ଆର୍ଟସ୍କୁଲମାନ ପ୍ରତିଷ୍ଠିତ ହେଲା । ସ୍ତ୍ରୀଲୋକମାନଙ୍କର ପର୍ଦ୍ଦାପ୍ରଥା

ରଦ୍ଦ କରି ଦିଅଗଲା । କେମାଲ୍ ଇଉରୋପୀୟ ସଭ୍ୟତା ଓ ଇଉରୋପୀୟ ନୃତ୍ୟକଳାର ବିଶେଷ ପକ୍ଷପାତୀ ଥିଲେ । ସୁତରାଂ ଉକ୍ତ ନୃତ୍ୟକଳାକୁ ସେ ଉତ୍ସାହ ପ୍ରଦାନ କରିଥିଲେ । ସ୍ତ୍ରୀଶିକ୍ଷାର ବିସ୍ତାର ଫଳରେ ଅନେକ ତୁରସ୍କ ମହିଳା ଓକିଲ, ଡାକ୍ତର, ବିଚାରକ ଓ ଶିକ୍ଷକ ହୋଇ ବାହାରିଲେ । ମହିଳାମାନେ ମଧ୍ୟ ପୋଲିସ ବିଭାଗରେ ନିଯୁକ୍ତ ହେଲେ । ମୁସଲମାନୀ ସଲାମ ପ୍ରଥା ଦେଶରୁ ଉଠାଇ ଦିଅଗଲା । ତା ପରିବର୍ତ୍ତେ ଇଉରୋପୀୟ ହସ୍ତମର୍ଦ୍ଦନ ପ୍ରଥା ପ୍ରବର୍ତ୍ତିତ ହେଲା । ପୁରୁଷମାନେ ଇଉରୋପୀୟ ପୋଷାକ-ପରିଚ୍ଛଦ ପରିଧାନ କଲେ ଓ ମହିଳାମାନେ ଇଉରୋପୀୟ ରମଣୀର ବେଶ ଧାରଣ କଲେ ।

କେମାଲଙ୍କ ଭାଷାଗତ ସଂସ୍କାର ଏକ ବିଶେଷ ଉଲ୍ଲେଖଯୋଗ୍ୟ ଘଟନା । ତୁର୍କଭାଷାରେ ଆରବୀ ଲିପି ବ୍ୟବହୃତ ହେଉଥିଲା । କେମାଲଙ୍କ ଆଦେଶକ୍ରମେ ଆରବୀ ଲିପି ପରିବର୍ତ୍ତେ ଲାଟିନ ଲିପି ବ୍ୟବହୃତ ହେଲା । ସ୍କୁଲ୍, କଲେଜ, କଚେରୀ, ଛାପାଖାନା, ସବୁଆଡ଼େ ଉକ୍ତ ଲିପି ପ୍ରଚଳିତ ହେଲା । ଏପରିକି, ଲାଟିନ ଲିପି ଶିକ୍ଷା ନ କଲେ ବନ୍ଦୀମାନେ କାରାଗାରରୁ ମୁକ୍ତିଲାଭ କରିପାରୁ ନଥିଲେ, କେତେକ ଆରବୀ ଓ ପାରସିକ ଶବ୍ଦ ଲାଟିନ ଲିପିରେ ଲେଖାଯାଇ ନ ପାରିବାରୁ ତୁର୍କଭାଷାରୁ ସେ ସବୁ ଶବ୍ଦ ଉଠାଇ ଦିଅଗଲା ଓ ସେଗୁଡ଼ିକ ସ୍ଥାନରେ ତୁର୍କଶବ୍ଦ ବ୍ୟବହାର କରାଗଲା । କେମାଲ ତୁର୍କଭାଷାକୁ ଖାଣ୍ଟି ଜାତୀୟ ଭାଷାରେ ପରିଣତ କରିବାକୁ ଚେଷ୍ଟା କରି ସେଥିରୁ ଆରବୀ ଓ ପାରସିକ ଶବ୍ଦମାନ ବାଦ ଦେବାକୁ ଆଦେଶ ଦେଲେ । ଅଧ୍ୟାପକମାନେ ଗ୍ରାମ ଗ୍ରାମ ବୁଲି ପଲ୍ଲୀପ୍ରଚଳିତ ଖାଣ୍ଟି ତୁର୍କଶବ୍ଦମାନ ସଂକଳନ କରିବାକୁ ଲାଗିଲେ । କେତେକ ସହରର ବୈଦେଶିକ ନାମ ଉଠାଇଦେଇ ତୁର୍କଭାଷାରେ ସେଗୁଡ଼ିକର ନାମକରଣ ହେଲା ।

ଉଦାହରଣ ସ୍ୱରୂପ କନଷ୍ଟାଣ୍ଟିନୋପଲର ନାମ ଇସ୍ତାନବୁଲ୍, ଅଙ୍ଗୋରାର ନାମ ଅଙ୍କରା ଓ ସ୍ମିର୍ଣ୍ଣାର ନାମ ଇସ୍‌ମିର ରଖାଗଲା । ଆରବୀ ଭାଷାର ପ୍ରାର୍ଥନା ଉଠାଇ ଦେଇ ତୁର୍କି ଭାଷାରେ ପ୍ରାର୍ଥନା ରଚିତ ହୋଇ ପ୍ରଚଳିତ ହେଲା ।

କେମାଲ୍ ଦେଶର କୃଷି ଓ ଶିଳ୍ପ ବ୍ୟବସ୍ଥାରେ କେତେକ ପରିବର୍ତ୍ତନ ଆଣିଥିଲେ । ଆଦର୍ଶ କୃଷିଫାର୍ମମାନ ଦେଶରେ ପ୍ରତିଷ୍ଠିତ ହେଲା । ଚାଷ କରିବା ପାଇଁ ଟ୍ରାକ୍‌ଟର ଯନ୍ତ୍ରର ପ୍ରଚଳନ ଆରମ୍ଭ ହେଲା । କୃଷକଶ୍ରେଣୀର ଉନ୍ନତି ପାଇଁ କୃଷକସମବାୟ ସମିତିମାନ ଗଠିତ ହେଲା । କେମାଲଙ୍କ ସମୟରେ କେତେକ ଶିଳ୍ପକୁ ଜାତୀୟ ଶିଳ୍ପରେ ପରିଣତ କରାଗଲା । ସେଗୁଡ଼ିକ ସରକାର ନିଜ ହାତକୁ ନେଇ ଚଳାଇଲେ । ଦେଶରେ ରେଲରାସ୍ତାର ସଂଖ୍ୟା ବୃଦ୍ଧି କରାଗଲା । ସ୍ୱଦେଶୀ ଶିଳ୍ପର ବିକାଶ ପାଇଁ ବିଦେଶୀ ଶିଳ୍ପଜାତ ଦ୍ରବ୍ୟ ଉପରେ ଅଧିକ ହାରରେ ଶୁଳ୍କ ବସାଗଲା । କେମାଲଙ୍କ ସରକାର ନୂତନ ଯୋଜନାମାନ ପ୍ରସ୍ତୁତ କରି ଦେଶର ଅର୍ଥନୈତିକ ଉନ୍ନତି-ବିଧାନ କରିବାକୁ ଚେଷ୍ଟା କରିଥିଲେ ।

ଏହିପରି ଭାବରେ ମୁସ୍ତାଫା କେମାଲ୍ ଦେଶର ରାଜନୀତି, ସମାଜନୀତି, ଅର୍ଥନୀତି, ଶିକ୍ଷାନୀତି ପ୍ରଭୃତିରେ ନାନା ବିପ୍ଳବ ଆଣି ତୁରସ୍କକୁ ଆଧୁନିକ ଢଙ୍ଗରେ ଗଢ଼ି ଦେଇଯାଇଛନ୍ତି । ସେଥିପାଇଁ ତାଙ୍କୁ "ଅତାତୁର୍କ" ବା ଜାତିର ପିତା ଉପାଧି ପ୍ରଦାନ କରାଯାଇଅଛି ।

ବିଜ୍ଞାନଯୁଗ:—ମନୁଷ୍ୟ କିପରି ଦିନେ ପଶୁଭଳି ଜୀବନ-ଯାପନ କରୁଥିଲା ଏବଂ ନିତାନ୍ତ ଅଜ୍ଞ ଅବସ୍ଥାରେ କାଳ କାଟୁଥିଲା ତାହା ଏହି ପୁସ୍ତକର ଆରମ୍ଭରେ କୁହାଯାଇଛି । କ୍ରମେ କ୍ରମେ ତାର ଅଜ୍ଞ ଅବସ୍ଥା କଟିଯାଇ ସଭ୍ୟତାର ବିକାଶ ଘଟିଲା । ମନୁଷ୍ୟ ବୁଦ୍ଧି ବଳରେ ନାନା ଉଦ୍ଭାବନ କରି ଉନ୍ନତିର ସୋପାନରେ ଆରୋହଣ

କରିବାକୁ ଲାଗିଲା । ଯୁଗ ପରେ ଯୁଗ ଏହି ଉନ୍ନତିର ସ୍ରୋତ ପ୍ରବାହିତ ହୋଇ ମାନବ ସମାଜର ବହୁ କଲ୍ୟାଣ ସାଧନ କଲା । ପ୍ରକୃତିର ନାନା ରହସ୍ୟ ଉଦ୍‌ଘାଟିତ ହେବାକୁ ଲାଗିଲା । ପ୍ରାକୃତିକ କ୍ଷେତ୍ରକୁ ଅଧିକ କରି ମନୁଷ୍ୟ ଉନ୍ନତି ମାର୍ଗରେ ଅଗ୍ରସର ହେଲା । ତାର ଜ୍ଞାନର ପରିସର ଦିନକୁ ଦିନ ବୃଦ୍ଧି ପାଇଲା । ଅବଶ୍ୟ ଏ ପର୍ଯ୍ୟନ୍ତ ମନୁଷ୍ୟ ପ୍ରକୃତିର ସମସ୍ତ ରହସ୍ୟ ଉଦ୍‌ଘାଟନ କରି ତାକୁ ପୂର୍ଣ୍ଣତଃ ଅଧିକାରୀନ କରିବାକୁ ସମର୍ଥ ହୋଇ ନାହିଁ । କେବେ ହେବ, ତାହା କହିବା ଏକ ପ୍ରକାର ଅସମ୍ଭବ; କାରଣ ପ୍ରକୃତିର ରହସ୍ୟ ଅସୀମ । ମାତ୍ର ଆଜି ମନୁଷ୍ୟ ଉଦ୍ୟମ-ପଥରେ ଆଗେଇ ଚାଲିଛି, ତାର ବିଜ୍ଞାନ ଅଗ୍ରଗତି କରୁଛି । ବିଜ୍ଞାନ ବଳରେ ସେ ଅନେକ କ୍ଷେତ୍ରରେ ଅସାଧ୍ୟ ସାଧନ କରିଛି ଏବଂ କରୁଛି । ଯେଉଁ ମନୁଷ୍ୟ ଦିନେ ଅରଣ୍ୟ ମଧ୍ୟରେ ଗୁହାଗର୍ଭରେ ଲୁଚି ରହୁଥିଲା, ଆଜି ସେ ଚନ୍ଦ୍ରଲୋକରେ ଯାଇ ବସତି ସ୍ଥାପନ କରିବାକୁ ଉଦ୍ୟତ । ଏଥିରୁ ବିଜ୍ଞାନର ଅଦ୍ଭୁତ ଉନ୍ନତିର ପରିଚୟ ମିଳେ । ତେଣୁ ବର୍ତ୍ତମାନ ଯୁଗକୁ ବିଜ୍ଞାନର ଯୁଗ ବୋଲି କୁହାଯାଏ । ଊନବିଂଶ ଓ ବିଂଶ ଶତାବ୍ଦୀର ବୈଜ୍ଞାନିକ ଉନ୍ନତି ମାନବ ଇତିହାସର ଏକ ବିପ୍ଳବପୂର୍ଣ୍ଣ କାହାଣୀ ।

ବାଷ୍ପଶକ୍ତିର ଆବିଷ୍କାରଃ—ବିଜ୍ଞାନ ଯୁଗର ଆରମ୍ଭରେ ବାଷ୍ପୀୟ ଯାନର ଉଦ୍ଭାବନ ଏକ ଯୁଗାନ୍ତକାରୀ ଘଟଣା । ପ୍ରଥମେ, କୋଇଲା ଖଣିରୁ ଜଳ ନିଷ୍କାସନ କରିବାପାଇଁ ବାଷ୍ପୀୟ କଳ ବ୍ୟବହୃତ ହେଉଥିଲା । ଟମାସ ନ୍ୟୁକମେନ (Thomas Newcomen) ନାମକ ଜଣେ ଡେଭନସାୟାର ଅଧିବାସୀ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ଏହି ବାଷ୍ପୀୟ କଳ ଉଦ୍ଭାବନ କରିଥିଲେ । ୧୭୬୪ ଖ୍ରୀଷ୍ଟାବ୍ଦରେ ଜେମସ୍ ୱାଟ୍ (James Watt)

ଏହାର ଉନ୍ନତସାଧନ କରି ଏକ ନୂତନ ଢଙ୍ଗର ବାଷ୍ପୀୟକଳ ନିର୍ମାଣ କଲେ । ନ୍ୟୁକମେନଙ୍କ ଇଞ୍ଜିନ୍ କୋଇଲାଖଣିରେ ବ୍ୟବହୃତ ହେବା ପରେ କାରଖାନାମାନଙ୍କରେ ମଧ୍ୟ ବ୍ୟବହାର କରାଗଲା । ୧୮୦୧ ଖ୍ରୀ:ରେ ଉଇଲ୍‌ୟମ ସିମିଂଟନ ( William Symington) ନାମକ ଜଣେ ବ୍ୟକ୍ତି ଉକ୍ତ ଇଞ୍ଜିନ ସାହାଯ୍ୟରେ ପ୍ରଥମ ବାଷ୍ପୀୟ ବୋଟ ନିର୍ମାଣ କରି କେନାଲ୍‌ରେ ଚଳାଇଲେ ।

କିଛିକାଳ ପରେ ବାଷ୍ପୀୟ ପୋତ ନିର୍ମିତ ହୋଇ ସମୁଦ୍ର ବକ୍ଷରେ ଗତି କରିବାକୁ ଆରମ୍ଭ କଲା । ରିଚାର୍ଡ ଟ୍ରେଭେଥିକ୍ (Richard Trevethick) ନାମକ ଜଣେ ବ୍ୟକ୍ତି ନ୍ୟୁକମେନଙ୍କ ଇଞ୍ଜିନକୁ ଟ୍ରକ ସହିତ ସଂଯୁକ୍ତ କରି ଉକ୍ତ ଟ୍ରକ ନେଇ ସାଧାରଣ ସଡ଼କରେ ଚଳାଇଲେ । ୧୮୨୫ ଖ୍ରୀଷ୍ଟାବ୍ଦରେ ଜର୍ଜ ଷ୍ଟିଫେନସନ ( George Stephenson ) ଇଂଲଣ୍ଡର ଷ୍ଟକଟନ୍ ସହରଠାରୁ ଡାରଲିଂଟନ୍ ସହର ପର୍ଯ୍ୟନ୍ତ ରେଲରାସ୍ତା ପକାଇ ତା ଉପରେ ପରୀକ୍ଷା ସ୍ୱରୂପ ଯାତ୍ରୀବାହୀ ରେଲଗାଡ଼ି ଚଳାଇଲେ । ଷ୍ଟିଫେନ୍‌ସନ ତାଙ୍କ ଇଞ୍ଜିନର ନାମ ଦେଇଥିଲେ ରକେଟ୍ । କିଛିଦିନ ପରେ ପୃଥିବୀର ପ୍ରଥମ ରେଲରାସ୍ତା—ଲିଭରପୁଲ-ମାନଚେଷ୍ଟର ରେଲଲାଇନ ନିର୍ମିତ ହେଲା ଏବଂ ଉକ୍ତ ରକେଟ୍ ସାହାଯ୍ୟରେ ରେଲଗାଡ଼ି ଚାଲିଲା । ବାଷ୍ପୀୟ ଶକଟର ପ୍ରଚଳନ ଫଳରେ ଗମନାଗମନର ବିଶେଷ ସୁବିଧା ହେଲା ଏବଂ କ୍ରମେ ଏହାର ବ୍ୟବହାର ପୃଥିବୀବ୍ୟାପୀ ହୋଇପଡ଼ିଲା ।

ବିଦ୍ୟୁତ୍‌ଶକ୍ତିର ପ୍ରୟୋଗ:—ବିଦ୍ୟୁତ୍‌ଶକ୍ତିର ପ୍ରୟୋଗ ବୈଜ୍ଞାନିକ ଯୁଗର ଅନ୍ୟ ଏକ ବିଶେଷତ୍ୱ । ବିଶିଷ୍ଟ ବୈଜ୍ଞାନିକ ମାଇକେଲ ଫାରାଡେ଼ ଏହି ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରିବାର ଉପାୟ ଉଦ୍ଭାବନ କରିଥିଲେ । ଆଜି ଏହି ଶକ୍ତି ନାନା କ୍ଷେତ୍ରରେ ପ୍ରୟୋଗ କରାଯାଉଛି । ବୈଦ୍ୟୁତିକ ଆଲୋକରେ ଆଜି ବାସ ଭବନ

ଓ ନଗରମାଳା ଆଲୋକିତ ହେଉଅଛି । କାରଖାନାମାନଙ୍କରେ ବିଦ୍ୟୁତ୍‌ଶକ୍ତି ସାହାଯ୍ୟରେ କଳ ଚାଲୁଛି । ଶିଳ୍ପ କ୍ଷେତ୍ରରେ ଏହା ନାନା କାର୍ଯ୍ୟରେ ଲାଗୁଛି । ବିଦ୍ୟୁତ୍‌ଚାଳିତ ପଙ୍ଖା ଏ ଯୁଗର ଏକ ବିଶିଷ୍ଟ ବସ୍ତୁ । ବିଦ୍ୟୁତ୍‌ଶକ୍ତି ବଳରେ ଟେଲିଗ୍ରାଫ୍, ଟେଲିଫୋନ୍, ବେତାର, କେବଲ୍ ( Cable ) ଓ ଏକ୍ସରେ କାର୍ଯ୍ୟ ସମ୍ପନ୍ନ ହେଉଅଛି । ଖଣିମାନଙ୍କରେ ବିଦ୍ୟୁତ୍ ଦୀପ ବ୍ୟବହୃତ ହେଉଅଛି ଓ ବିଦ୍ୟୁତ୍ ବଳରେ ଟ୍ରାମ୍, କାର ପ୍ରଭୃତି ଚାଲୁଅଛି । ଆଜିକାଲି ଏହିଶକ୍ତି ମଧ୍ୟ ରେଳଗାଡ଼ି ଚଳାଇବାରେ ବ୍ୟବହୃତ ହେଲଣି । ଇଲେକ୍‌ଟ୍ରୋ-ପ୍ଲେଟିଂ ଶିଳ୍ପ ଆଧୁନିକ ଯୁଗର ଏକ ଲାଭଜନକ ଶିଳ୍ପରେ ପରିଣତ ହୋଇଅଛି । ବିତ୍ତଶାଳୀ ଲୋକଙ୍କ ରନ୍ଧନଶାଳାରେ ଆଜି ବୈଦ୍ୟୁତିକ ଚୁଲ୍ଲୀ ପ୍ରତିଷ୍ଠିତ । ରେଡ଼ିଓ, ଟେଲିଭିଜନ, ରାଡ଼ାର ପ୍ରଭୃତି ଆଧୁନିକ ଯନ୍ତ୍ରମାନ ଏହି ବିଦ୍ୟୁତ୍‌ଶକ୍ତି ଉପରେ ନିର୍ଭର କରେ ।

ମାନବ ସମାଜ କଲ୍ୟାଣ ଉଦ୍ଦେଶ୍ୟରେ ବିଦ୍ୟୁତ୍‌ଶକ୍ତିକୁ ପ୍ରୟୋଗକରି ଆଧୁନିକ ଯୁଗର ବହୁ ବୈଜ୍ଞାନିକ ଜଗତରେ ଅମରତ୍ୱ ଅର୍ଜ୍ଜନ କରିଯାଇଅଛନ୍ତି । ସେମାନଙ୍କ ମଧ୍ୟରେ ଏଡ଼ିସନ ଓ ମାର୍କୋନିଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ଟମାସ ଆଲଭା ଏଡ଼ିସନ ୧୮୪୭ ଖ୍ରୀଷ୍ଟାବ୍ଦରେ ଆମେରିକାର ଯୁକ୍ତରାଷ୍ଟ୍ରରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନରୁ ତାଙ୍କ ମନରେ ଆବିଷ୍କାର ସ୍ପୃହା ବଳବତୀ ହେବାକୁ ଆରମ୍ଭ କରିଥିଲା ଏବଂ ଉତ୍ତରକାଳରେ ସେ ଅନେକ ଗୁରୁତ୍ୱପୂର୍ଣ୍ଣ ଉଦ୍ଭାବନ ଓ ଆବିଷ୍କାର କରିବାକୁ ସମର୍ଥ ହୋଇଥିଲେ । ପ୍ରଥମେ ଟେଲିଗ୍ରାଫି ଆଡ଼କୁ ଆକୃଷ୍ଟ ହୋଇ ସେ ଟେଲିଗ୍ରାଫ ଯନ୍ତ୍ରର ଉନ୍ନତି ସାଧନ କରିଥିଲେ । ତା ପରେ ସେ ଏକପ୍ରକାର ଡୁପ୍ଲିକେଟର ଓ ଉନ୍ନତ ଧରଣର ଟାଇପରାଇଟର ପ୍ରସ୍ତୁତ କରିଥିଲେ । ତାଙ୍କ ପୂର୍ବରୁ ଗ୍ରାହାମ ବେଲ୍ ନାମକ ଜଣେ ବୈଜ୍ଞାନିକ ଟେଲିଫୋନ ଯନ୍ତ୍ର

ଉଦ୍ଭାବନ କରିପାରିଥିଲେ । ଏଡ଼ିସନ୍ ଏହି ଯନ୍ତ୍ରର ଉନ୍ନତି ସାଧନ କରି ତାହାକୁ ବିଶ୍ୱବ୍ୟାପୀ କରିପାରିଥିଲେ । ତାଙ୍କର ପରବର୍ତ୍ତୀ ଉଦ୍ଭାବନ ହେଉଛି ଫନୋଗ୍ରାଫ୍ ଯନ୍ତ୍ର । ତତ୍‌ପରେ ଏଡ଼ିସନ୍ ନାନା ବୈଦ୍ୟୁତିକ ଉଦ୍ଭାବନରେ ମନୋନିବେଶ କରିଥିଲେ । ତାଙ୍କ ଚେଷ୍ଟାରେ ବୈଦ୍ୟୁତିକ ଆଲୋକ ସୁଲଭ ହୋଇ ପାରିଥିଲା । ସେ ଉନ୍ନତଧରଣର ଜେନେରେଟର ଓ ନୂତନ ଧରଣର ଡାଇନାମୋ ନିର୍ମାଣ କରିଥିଲେ । କିଛିଦିନ ପରେ ଏଡ଼ିସନ କିନେଟୋ-ସ୍କୋପ (**Kineto-scope**) ଯନ୍ତ୍ର ନିର୍ମାଣ କରି ବିଜ୍ଞାନ ଜଗତରେ ନବଯୁଗ ସୃଷ୍ଟି କରିଥିଲେ । ୧୯୧୨ ଖ୍ରୀଷ୍ଟାବ୍ଦରେ ସେ 'ଟକି' ବା କଥାକୁହା ସିନେମା ଉଦ୍ଭାବନ କଲେ । ପ୍ରଥମ ବିଶ୍ୱ ମହାସମର ସମୟରେ ଏଡ଼ିସନ୍ ଏପରି ଏକ ଯନ୍ତ୍ର ଉଦ୍ଭାବନ କରିଥିଲେ, ଯାହା ସାହାଯ୍ୟରେ ସମୁଦ୍ର ଗର୍ଭରେ ଦୂରାଗତ ଟର୍ପେଡୋର ଶବ୍ଦ ଶୁଣାଯାଇ ପାରୁଥିଲା । ଏଡ଼ିସନ ତାଙ୍କ ଜୀବନକାଳ ମଧ୍ୟରେ ଅନ୍ୟୂନ ତେରଶହ ବୈଜ୍ଞାନିକ ଯନ୍ତ୍ର ଉଦ୍ଭାବନ କରିବାକୁ ସମର୍ଥ ହୋଇଥିଲେ ।



ମାର୍କୋନି

ମାର୍କୋନି ଆଧୁନିକ ରେଡ଼ିଓ ଯନ୍ତ୍ରର ଉଦ୍ଭାବନ କରି ଯଶସ୍ୱୀ ହୋଇଅଛନ୍ତି । ୧୮୭୪ ଖ୍ରୀଷ୍ଟାବ୍ଦରେ ଇଟାଲି ଦେଶରେ ତାଙ୍କର ଜନ୍ମ । ଯେତେବେଳେ ସେ ଏକୋଇଶ ବର୍ଷର ଯୁବକ, ସେତେବେଳେ

ସେ ବେତାର ଯନ୍ତ୍ର ଉଦ୍ଭାବନ କରିବାକୁ ସମର୍ଥ ହୋଇଥିଲେ । ୧୮୯୫ ରୁ ୧୯୦୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସେ ଉକ୍ତ ଯନ୍ତ୍ରର ଉନ୍ନତିରେ ମନପ୍ରାଣ ଢାଳିଦେଇଥିଲେ । ୧୮୯୮ ଖ୍ରୀଷ୍ଟାବ୍ଦରେ ସେ ଇଂଲଣ୍ଡରୁ ଫ୍ରାନ୍ସକୁ ପ୍ରଥମ ବେତାର ବାର୍ତ୍ତା ପ୍ରେରଣ କରିଥିଲେ ଓ ୧୯୦୧ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡରୁ ଆମେରିକାକୁ ବେତାର ସମ୍ବାଦ ପ୍ରେରିତ ହୋଇଥିଲା । ୧୯୧୯ ଖ୍ରୀଷ୍ଟାବ୍ଦରେ ମାର୍କୋନି ଇଂଲଣ୍ଡର ଚେମସ୍‌-ଫୋର୍ଡ଼ଠାରେ ତାଙ୍କର ବିଖ୍ୟାତ ବେତାର କେନ୍ଦ୍ର ପ୍ରତିଷ୍ଠା କରିଥିଲେ ।

ରେଡ଼ିଓ ଯନ୍ତ୍ର ସାଙ୍ଗକୁ ଟେଲିଭିଜନ ଯନ୍ତ୍ର ଅଧୁନିକ ବିଜ୍ଞାନ ଯୁଗର ଏକ ଅପୂର୍ବ ଅବଦାନ । ବେୟାର୍ଡ଼ ନାମକ ବୈଜ୍ଞାନିକ ଏହି ଯନ୍ତ୍ରର ଉଦ୍ଭାବନ କର୍ତ୍ତା । ଟେଲିଭିଜନ ସାହାଯ୍ୟରେ ଆଜି ମନୁଷ୍ୟ ହଜାର ହଜାର ମାଇଲ୍ ଦୂରରୁ ଆସୁଥିବା ଆକାଶବାଣୀ ଶୁଣିପାରୁଛି ଓ ତାହା ଉଚ୍ଚାରଣ କରୁଥିବା ଲୋକର ଅବିକଳ ମୂର୍ତ୍ତି ଦେଖିପାରୁଛି । ଏବେ ରୁଷିଆରେ ଏକପ୍ରକାର ଟେଲିଫୋନ୍ ଯନ୍ତ୍ର ନିର୍ମିତ ହୋଇଛି, ଯାହାଦ୍ୱାରା ଲୋକେ ପରସ୍ପର ସହିତ କଥୋପକଥନ କଲାବେଳେ ପରସ୍ପରକୁ ଦେଖି ପାରୁଛନ୍ତି ।

**ମନୁଷ୍ୟର ଆକାଶ ବିଜୟ**:—ଊନବିଂଶ ଶତାବ୍ଦୀରେ ମନୁଷ୍ୟର ଆକାଶ ବିଜୟ ଆରମ୍ଭ ହେଲା । ୧୮୮୬ ଖ୍ରୀଷ୍ଟାବ୍ଦରେ ଡାଏମଲର ( **Daimler** ) ନାମକ ଜଣେ ଜର୍ମାନ ଏକପ୍ରକାର ପେଟ୍ରୋଲ୍ ଚାଳିତ ଇଞ୍ଜିନ ତିଆରି କଲେ । ପ୍ରଥମେ ତାହା ମଟର-ସାଇକେଲ୍ ଓ ମଟରଗାଡ଼ିରେ ବ୍ୟବହୃତ ହେଲା । ୧୯୦୦ ଖ୍ରୀଷ୍ଟାବ୍ଦରେ ଆମେରିକାର ରାଇଟ ଭ୍ରାତୃଦ୍ୱୟ ( **Orville Wright and Wilbur Wright** ) ଗ୍ଲାଇଡ଼ ( **Glider** ) ନାମକ ଏକ ଆକାଶ-

ଯାନ ନିର୍ମାଣ କରି ୧୯୦୩ ଖ୍ରୀଷ୍ଟାବ୍ଦରେ ତହିଁରେ ପେଟ୍ରୋଲ୍ ଇଞ୍ଜିନ ଖଞ୍ଜି ତାହା କିଛିଦୂର ପର୍ଯ୍ୟନ୍ତ ଆକାଶରେ ଉଡ଼ାଇଥିଲେ । ପରେ ଉଡ଼ାଜାହାଜ ନିର୍ମିତ ହେଲା । ପ୍ରଥମ ବିଶ୍ୱ ମହାସମର ଓ ଦ୍ୱିତୀୟ ବିଶ୍ୱ ମହାସମର ସମୟରେ ଉଡ଼ାଜାହାଜର ଅପୂର୍ବ ଉନ୍ନତି ସାଧିତ ହେଲା । ବର୍ତ୍ତମାନ ଉଡ଼ାଜାହାଜ ସାହାଯ୍ୟରେ ଗମନାଗମନର ବିଶେଷ ସୁବିଧା ହୋଇଅଛି । ଯାତ୍ରୀ ଡାକ ଓ ମାଲ୍‌ପତ୍ର ବହନ କରିବାରେ ଏହା ବ୍ୟବହୃତ ହେଉଅଛି । ସୈନ୍ୟବିଭାଗର ଏହା ଏକ ଅପରିହାର୍ଯ୍ୟ ଅସ୍ତ୍ର । କି ଯୁଦ୍ଧ ସମୟରେ, କି ଶାନ୍ତି ସମୟରେ, ସବୁବେଳେ ଏହା ମନୁଷ୍ୟର କାର୍ଯ୍ୟରେ ଲାଗୁଛି । ଆଜିକାଲି ନାନା ଉନ୍ନତ ଧରଣର ଉଡ଼ାଜାହାଜ ନିର୍ମିତ ହୋଇଅଛି ।

ଆଣବିକ ଶକ୍ତିର ପ୍ରୟୋଗ:—ଅଧୁନିକ ବିଜ୍ଞାନ ଯୁଗର ଅନ୍ୟତମ ବୈଶିଷ୍ଟ୍ୟ ଅଣବିକ ଶକ୍ତିର ବ୍ୟବହାର । ଅଣୁ-ପରମାଣୁ ଏତେ କ୍ଷୁଦ୍ର ଯେ, ତାହା କଳ୍ପନା କରି ହେବ ନାହିଁ । ପ୍ରତି ଅଣୁ ଓ ପରମାଣୁ ଅସଂଖ୍ୟ ଘୂର୍ଣ୍ଣାୟମାନ ବିଦ୍ୟୁତ୍‌କଣାର ସମଷ୍ଟି । ବୈଜ୍ଞାନିକ-ମାନେ ଏହି ଅଣୁ-ପରମାଣୁ ସମ୍ବନ୍ଧରେ ଗଭୀର ଗବେଷଣା କରି ନାନା ତଥ୍ୟ ଆବିଷ୍କାର କରିଅଛନ୍ତି । କଳ୍ପନାତୀତ ପରିମାଣରେ କ୍ଷୁଦ୍ର ହେଲେହେଁ ଏହାର ଶକ୍ତି ଅନନ୍ତ । ଉକ୍ତ ଶକ୍ତି ବଳରେ କି ଧ୍ୱଂସାତ୍ମକ, କି ରଚନାତ୍ମକ, ଉଭୟବିଧ କାର୍ଯ୍ୟ କରାଯାଇ ପାରେ । ଅଣବିକ ବୋମା ପ୍ରୟୋଗ କରି ଦ୍ୱିତୀୟ ବିଶ୍ୱ ମହାସମର ସମୟରେ ଜାପାନର ହିରୋସିମା ଓ ନାଗାସାକି ନାମକ ଦୁଇଟି ସମୃଦ୍ଧିଶାଳୀ ନଗର ମୁହୂର୍ତ୍ତିକ ମଧ୍ୟରେ ଧ୍ୱଂସ କରିଦିଆଗଲା । ଅନ୍ୟ ଦିଗରେ ଏହି ଶକ୍ତି ପ୍ରୟୋଗ କରି ଜଗତର ଅପୂର୍ବ ସମୃଦ୍ଧି ମଧ୍ୟ ସାଧନ କରାଯାଇ ପାରେ । ଶିଳ୍ପକ୍ଷେତ୍ରରେ ଏହା ଯୁଗାନ୍ତର ସୃଷ୍ଟି କରିପାରେ । ଉନ୍ନତ ଦେଶମାନଙ୍କରେ ଏପରି ଉଦ୍ୟମ ଆରମ୍ଭ ହୋଇଅଛି । ଆମ ଭାରତର

ବୈଜ୍ଞାନିକମାନେ ମଧ୍ୟ ଜାତୀୟ ସରକାରଙ୍କ ପ୍ରେରଣାରେ ଏ ଦିଗରେ ଚେଷ୍ଟା କରୁଛନ୍ତି ।

ରକେଟ୍ ଉଦ୍ଭାବନ:—ମହାଶୂନ୍ୟରେ ଗତି କରିବା ପାଇଁ ଅଧିକ ରକେଟ୍ ନାମକ ଶୂନ୍ୟଯାନ ଆବିଷ୍କୃତ ହୋଇଅଛି । ପୃଥିବୀର ବାୟୁମଣ୍ଡଳଠାରୁ ବହୁ ଊର୍ଦ୍ଧ୍ୱରେ ପୃଥିବୀର ଆକର୍ଷଣୀ ଶକ୍ତିକୁ ଏଡ଼ି, ଏହା ଅତି ଦ୍ରୁତ ବେଗରେ ଗତି କରି ପାରୁଛି । ଏହାର ବଳରେ ଦିନେ ମନୁଷ୍ୟ ଚନ୍ଦ୍ର-ଲୋକରେ ଯାଇ ଉପସ୍ଥିତ ହେବାର ଆଶା ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହୋଇଉଠିଛି । ରୁଷିଆ ଓ ଆମେରିକାର ଯୁକ୍ତରାଷ୍ଟ୍ର ଏ ଦିଗରେ ପ୍ରବଳ ଉଦ୍ୟମ ଚଳାଇଛନ୍ତି । ଉଭୟେ କୃତ୍ରିମ ଉପଗ୍ରହ ସୃଷ୍ଟି କରିଛନ୍ତି । ରୁଷିଆର ଉପଗ୍ରହ ଶୂନ୍ୟମଣ୍ଡଳରେ ପୃଥିବୀ ପ୍ରଦକ୍ଷିଣ କରି କୃତକାର୍ଯ୍ୟ ହୋଇଅଛି । ମହାଶୂନ୍ୟକୁ ମନୁଷ୍ୟ-ଯାତ୍ରୀ ପଠାଇ ପୁଣି ତାକୁ ନିର୍ବିଘ୍ନରେ ପୃଥିବୀ ପୃଷ୍ଠକୁ ଫେରାଇ ଆଣିବା ବିଷୟରେ ରୁଷିଆ ଅଗ୍ରଣୀ । ଆମେରିକାର ଯୁକ୍ତରାଷ୍ଟ୍ର ମଧ୍ୟ ଏ ଦିଗରେ କେତେକ ପରିମାଣରେ ସଫଳତା ଅର୍ଜନ କରିପାରିଛି ।

ବିଜ୍ଞାନର ବିଭିନ୍ନ ବିଭାଗରେ ଅଗ୍ରଗତି:—ଊନବିଂଶ ଶତାବ୍ଦୀରେ ପ୍ରଧାନତଃ ପଦାର୍ଥବିଜ୍ଞାନ ଓ ରସାୟନବିଦ୍ୟାରେ ବିଶେଷ ଗବେଷଣା ଚାଲିଥିଲା । ତା ପରେ ପ୍ରାଣୀବିଜ୍ଞାନ ଓ ଉଦ୍ଭିଦ-ବିଜ୍ଞାନର ମଧ୍ୟ ବିସ୍ତୃତ ଚର୍ଚ୍ଚା ହେଲା । ଆଧୁନିକ ଯୁଗର ପ୍ରାଣୀବିଜ୍ଞାନ କହେ—ଇଞ୍ଜେକ୍‌ସନ ପ୍ରୟୋଗ ଓ ଅନ୍ୟାନ୍ୟ ପ୍ରକ୍ରିୟା ଦ୍ୱାରା ମନୁଷ୍ୟର ସ୍ୱଭାବ ବଦଳାଇବା ନିକଟ ଭବିଷ୍ୟତରେ ସମ୍ଭବପର ହେବ । ଉଦାହରଣ ସ୍ୱରୂପ, ଭୀରୁ କାପୁରୁଷ ବ୍ୟକ୍ତିକୁ ସାହସୀ, ବୀରତ୍ୱସମ୍ପନ୍ନ ବ୍ୟକ୍ତିରେ ପରିଣତ କରିହେବ । ପ୍ରାଣୀବିଜ୍ଞାନ ସାଙ୍ଗକୁ ମନସ୍ତତ୍ତ୍ୱର ମଧ୍ୟ ଅପୂର୍ବ ବିକାଶ ସାଧିତ ହୋଇଅଛି । ବୈଜ୍ଞାନିକମାନେ ନାନା ଦିଗରେ ବିଜ୍ଞାନର ଉନ୍ନତିବିଧାନରେ ଲାଗିଛନ୍ତି । ବିଂଶ

ଶତାବ୍ଦୀର ସୁପ୍ରସିଦ୍ଧ ବୈଜ୍ଞାନିକ 'ଅଲବାର୍ଟ ଅଇନଷ୍ଟାଇନ ପ୍ରକୃତ-ବିଜ୍ଞାନର ଗମ୍ଭୀର ଆଲୋଚନା କରି ଅନେକ ମୌଳିକ ତଥ୍ୟ ଆବିଷ୍କାର କରିଅଛନ୍ତି ।

ଡାରଉଇନଙ୍କ ବିବର୍ତ୍ତନବାଦ:—ଡାରଉଇନଙ୍କ "ବିବର୍ତ୍ତନ-ବାଦ" ( **Theory of Evolution** ) ଆଧୁନିକ ବିଜ୍ଞାନ ଯୁଗର ଏକ ବିଶିଷ୍ଟ ମତବାଦ ।

ଡାରଉଇନ ୧୮୦୯ ଖ୍ରୀ:ରେ ଇଂଲଣ୍ଡରେ ଜନ୍ମଗ୍ରହଣ କରିଥିଲେ । ସେ ଉଦ୍ଭିଦ ଜଗତ୍ ଓ ପ୍ରାଣୀ ଜଗତ୍ ସମ୍ବନ୍ଧରେ ନାନା ଗବେଷଣା କରି ଅନେକ ପୁସ୍ତକ ରଚନା କରି-ଯାଇଅଛନ୍ତି । ତନ୍ମଧ୍ୟରୁ **The Origin of species'** ଓ "**The Descent of Man**"ନାମକ ଦୁଇଟି ପୁସ୍ତକ ଅତି ପ୍ରସିଦ୍ଧ । ତାଙ୍କ ମତରେ



ଡାରଉଇନ

ବାନରସଦୃଶ ଏକ ଜୀବର କ୍ରମବିବର୍ତ୍ତନ ଘଟି ତାହା ମନୁଷ୍ୟରେ ପରିଣତ ହୋଇଅଛି । ଡାରଉଇନଙ୍କ ପ୍ରବର୍ତ୍ତିତ ବିବର୍ତ୍ତନବାଦ ପ୍ରସିଦ୍ଧ ବୈଜ୍ଞାନିକ ଲାଏଲ୍ (**Lyell**) ଓ ହକ୍ସଲେ (**Huxley**)ଙ୍କ ଦ୍ୱାରା ସମର୍ଥିତ ହୋଇଥିଲା । ଆଜିକାଲି ଏହି ମତବାଦ ପ୍ରାଣୀ-ବିଜ୍ଞାନର ଏକ ମୌଳିକ ସତ୍ୟରୂପେ ଗୃହୀତ ।

ଆଧୁନିକ ଚିକିତ୍ସାବିଜ୍ଞାନ:—ଆଧୁନିକ ଯୁଗରେ ଚିକିତ୍ସା-ବିଜ୍ଞାନର ଅପୂର୍ବ ଉନ୍ନତି ସାଧିତ ହୋଇଅଛି ଏବଂ ହେଉଅଛି ।

ଜୋସେଫ୍ ଲିଷ୍ଟର (**Joseph Lister**), ଲୁଇ ପାଷ୍ଟର (**Lewis Pasteur**), ଜେମ୍‌ସ ସିମ୍‌ସନ୍ (**James Simpson**), ମ୍ୟାଡ଼ାମ୍



ଲୁଇ ପାଷ୍ଟର

କ୍ୟୁରି (**Madam Curie**) ପ୍ରଭୃତି ଏହି ଯୁଗରେ ଅବତୀର୍ଣ୍ଣ ହୋଇ ଜଗତର ବହୁ କଲ୍ୟାଣ କରିଯାଇଅଛନ୍ତି । ଲିଷ୍ଟର ବାୟୁମଣ୍ଡଳରେ ଓ ଜଳରେ ନାନା ସୂକ୍ଷ୍ମ ଜୀବାଣୁ ବା **Microbe** ଅବିଷ୍କାର କରିଥିଲେ । ଉକ୍ତ ଜୀବାଣୁ କ୍ଷତ ସ୍ଥାନରେ ପଶି କ୍ଷତକୁ ବିଷାକ୍ତ କରି ଦିଅନ୍ତି ଓ ତାହାଫଳରେ କ୍ଷତ ମାରାତ୍ମକ ହୋଇଉଠେ । ଲିଷ୍ଟର ସେହି ଜୀବାଣୁ ନଷ୍ଟ କରିବା ପାଇଁ ବିଷନାଶକ ଔଷଧ ପ୍ରସ୍ତୁତ କରିଥିଲେ । ଲୁଇପାଷ୍ଟର ନାମକ



ଜୋସେଫ୍‌ଲିଷ୍ଟର

ଏକ ଫରାସୀ ଚିକିତ୍ସକ ଲିଷ୍ଟରଙ୍କ ସମସାମୟିକ ଥିଲେ । ସେ ପାଗଳ କୁକୁର ବା ଶୃଗାଳର ଦଂଶନ ଫଳରେ ଯେଉଁ ରୋଗ ଜାତହୁଏ ତାର ଚିକିତ୍ସାପାଇଁ ଏକପ୍ରକାର ଇଞ୍ଜେକ୍‌ସନ ବାହାର କରିଥିଲେ । ତାହା ଏଣ୍ଟିରାବିଡ଼ ଇଞ୍ଜେକ୍‌ସନ (Anti-rabid Injection) ନାମରେ ପରିଚିତ । ୧୮୪୭ ଖ୍ରୀଷ୍ଟାବ୍ଦରେ ଜେମ୍‌ସ ସିମ୍‌ସନ କ୍ଳୋରୋଫର୍ମ (Chloroform) ନାମକ ଏକ ପଦାର୍ଥ ପ୍ରସ୍ତୁତ କରିଥିଲେ । ଅସ୍ତ୍ରୋପଚାରର ସମୟରେ ଏହା ପ୍ରୟୋଗରେ ରୋଗୀ ଅଚେତ ହୋଇ ଯନ୍ତ୍ରଣା ଅନୁଭବ କରେ ନାହିଁ । ମ୍ୟାଡାମ କ୍ୟୁରୀ ରେଡ଼ିୟମ୍‌ସାହାଯ୍ୟରେ ଦୁଃସାଧ୍ୟ କର୍କଟ (Cancer) ରୋଗର ଚିକିତ୍ସା ବାହାର କରିଥିଲେ । ଏଡ଼ୱାର୍ଡ଼ ଜେନର (Edward Jenner) ନାମକ ଏକ ପ୍ରସିଦ୍ଧ ଚିକିତ୍ସକ ବସନ୍ତ ରୋଗର ଫଳପ୍ରଦ ପ୍ରତିଷେଧକ ବାହାର କରି ଯଶସ୍ୱୀ ହୋଇଅଛନ୍ତି ।



ମ୍ୟାଡ଼ାମ କ୍ୟୁରୀ

ବର୍ତ୍ତମାନ କେତେକ ବଶିଷ୍ଟ ବୈଜ୍ଞାନିକ ମୃତ୍ୟୁ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଅଛନ୍ତି । ମୃତ ମନୁଷ୍ୟକୁ କିପରି ପୁନର୍ଜୀବିତ କରିବାକୁ ହେବ ସେଥିପାଇଁ ସେମାନେ ଗବେଷଣାରେ ନିୟୁକ୍ତ ।

ଏଥିରୁ ଏ ବିଜ୍ଞାନ ଯୁଗର ଅଭୂତ ଅଗ୍ରଗତିର ପରିଚୟ ମିଳେ । ବିଜ୍ଞାନ ବଳରେ ଯେ ମାନବ ସମାଜର ଅପରିମିତ ଉନ୍ନତି ସାଧିତ ହେଉଛି, ଏଥିରେ ସନ୍ଦେହ ନାହିଁ; ମାତ୍ର ଏହି ଉନ୍ନତି ସଙ୍ଗେ ସଙ୍ଗେ ବିଜ୍ଞାନଯୁଗର ବିପଦ ମଧ୍ୟ ପୃଥିବୀକୁ ଆତଙ୍କପୂର୍ଣ୍ଣ କରୁଛି । ବିଜ୍ଞାନର ଶକ୍ତି କେବଳ କଲ୍ୟାଣସାଧନ ଦିଗରେ ନୁହେଁ, ଧ୍ୱଂସସାଧନ ଦିଗରେ ମଧ୍ୟ ସମର୍ଥ । ମନୁଷ୍ୟ ଉକ୍ତ ଶକ୍ତି ପ୍ରୟୋଗ କରି ଆଜି ନାନା ମାରଣାସ୍ତ୍ର ସୃଷ୍ଟି କରିଛନ୍ତି । ଆଣବିକ ବୋମା, ଉଦ୍‌ଯାନ ବୋମା, ନ୍ୟୁଟ୍ରନ ବୋମା, ବିଷାକ୍ତ ବାଷ୍ପ, ଟ୍ୟାଙ୍କ ମେସିନଗନ, ମାଇନ୍, ଟର୍ପେଡୋ, ସବ୍‌ମେରିନ୍ ପ୍ରଭୃତି ଏହାର ଉଦାହରଣ । କେବଳ ପରମାଣୁ ଅସ୍ତ୍ର ପ୍ରୟୋଗରେ ସମଗ୍ର ପୃଥିବୀ ମୁହୂର୍ତ୍ତକ ମଧ୍ୟରେ ଧ୍ୱଂସ ପାଇପାରେ । ଆଜି କେତେକ ଦେଶ ଏହି ପରମାଣୁ ଅସ୍ତ୍ରବଳରେ ବଳୀୟାନ ହୋଇଥିବାରୁ ଓ ସେମାନଙ୍କ ମଧ୍ୟରେ ଅସଦ୍‌ଭାବ ତୀବ୍ର ଆକାର ଧାରଣ କରିଥିବାରୁ, ମାନବସମାଜ ପ୍ରଳୟର ଆଶଙ୍କା କରୁଛି । ଏ ଅବସ୍ଥାର ଆଶୁ ପ୍ରତିକାର କରିବା ବର୍ତ୍ତମାନ ଯୁଗର ପ୍ରଧାନ ସମସ୍ୟା ହୋଇ ପଡ଼ିଛି । ଏଥିପାଇଁ ଆମ ପ୍ରଧାନମନ୍ତ୍ରୀ ଶ୍ରୀଜବାହାରଲାଲ୍ ନେହେରୁ ପ୍ରମୁଖ ବିଶ୍ୱ-ଜନନେତାମାନେ ଉଦ୍ୟମ କରୁଥିବା ଆଶା ଓ ଆଶ୍ୱାସନାର ବିଷୟ ।

## ଅନୁଶୀଳନୀ

୧ । ଆଧୁନିକ ପାଶ୍ଚାତ୍ୟ ସଭ୍ୟତା କିପରି ସୃଷ୍ଟିହେଲା ତାହା ବର୍ଣ୍ଣନା କରି ଗୋଟିଏ କ୍ଷୁଦ୍ର ପ୍ରବନ୍ଧ ଲେଖ ।

୨ । ଶିଳ୍ପବିପ୍ଳବ କହିଲେ କଣ ବୁଝାଏ ? ତାହାର ଫଳାଫଳ ବର୍ଣ୍ଣନା କର ।

୩ । ସଂକ୍ଷେପରେ ନିମ୍ନୋକ୍ତ ପ୍ରଶ୍ନାବଳୀର ଉତ୍ତର ଦିଅ :—

(କ) ଇଂଲଣ୍ଡ ଶିଳ୍ପପ୍ରଧାନ ଦେଶ ମଧ୍ୟରେ ଅଗ୍ରଣୀ ହେଲା କିପରି ?

(ଖ) ଶିଳ୍ପବିପ୍ଳବ ଦ୍ୱାରା ଇଂଲଣ୍ଡର ସମାଜ କିପରି ପ୍ରଭାବିତ ହେଲା ?

(ଗ) ଇଂଲଣ୍ଡର ଶିଳ୍ପୋନ୍ନତି ଆମ ଭାରତର କିପରି ଅନିଷ୍ଟ-ସାଧନ କଲା ?

(ଘ) ଫରାସୀମାନେ ବିପ୍ଳବ ପାଇଁ ଆମେରିକାରୁ କି ପ୍ରେରଣା ପାଇଲେ ?

(ଙ) ଇଂଲଣ୍ଡରେ ୧୬୮୮ ଖ୍ରୀଷ୍ଟାବ୍ଦର ବିପ୍ଳବକୁ ଗୌରବମୟ ବିପ୍ଳବ (**Glorious Revolution**) ବୋଲି କାହିଁକି କୁହାଯାଏ ?

୪ । କୁଟୀରଶିଳ୍ପ ଓ ଯନ୍ତ୍ରଶିଳ୍ପ ମଧ୍ୟରେ ପ୍ରଭେଦ କଣ ?

୫ । ବର୍ତ୍ତମାନ ଯୁଗରେ ଭାରତରେ କୁଟୀରଶିଳ୍ପର ବିକାଶ ବେଶୀ ଦରକାର, ନା ଯନ୍ତ୍ରଶିଳ୍ପର ବିକାଶ ବେଶୀ ଦରକାର ? ତାହା ଉପଯୁକ୍ତ ଯୁକ୍ତିବଳରେ ପ୍ରତିପନ୍ନ କର ।

୬ । ନିମ୍ନଲିଖିତ ଯନ୍ତ୍ରମାନ କିଏ ଉଦ୍ଭାବନ କରିଥିଲେ ?

ଫ୍ଲାଇଂସଟଲ୍; ମ୍ୟୁଲ୍, ରକେଟ୍ (ରେଲଇଞ୍ଜିନ), ରେଡ଼ିଓ, ଗ୍ଲାଇଡ଼ର, କିନେଟୋସ୍କୋପ୍ ।

୭ । ଫରାସୀ ବିପ୍ଳବର କାରଣମାନ ବର୍ଣ୍ଣନା କର ।

୮ । ନିମ୍ନଲିଖିତ ବ୍ୟକ୍ତିମାନେ କାହିଁକି ବିଖ୍ୟାତ ?

ରୁଷୋ, କାର୍ଟରାଇଟ, ଭଲଟେୟାର, ହାରଗ୍ରୀଭସ୍, ଜେମ୍ସ-ଓ୍ୱାଟ, ଫାରାଡ଼େ, ଲୁଇ ପାଷ୍ଟର, ମ୍ୟାଡ଼ାମକ୍ୟୁରି, ଲିଷ୍ଟର, ମାର୍କୋନି, ମଣ୍ଟେସ୍କୁ ।

୯ । ବୈଜ୍ଞାନିକ ଏଡ଼ିସନ (Edison)ଙ୍କ ନିକଟରେ ମାନବ ସମାଜ କିପରି ଭାବରେ ଋଣୀ ।

୧୦ । ଗ୍ରେଟ୍‌ବ୍ରିଟେନରେ ଗଣତାନ୍ତ୍ରିକ ଶାସନ କିପରି ବିକାଶଲାଭ କଲା, ତାହା ସଂକ୍ଷେପରେ ବର୍ଣ୍ଣନା କର ।

୧୧ । ନିମ୍ନଲିଖିତ ବିଷୟରେ ସଂକ୍ଷିପ୍ତ ଟିପ୍‌ପଣୀ ଲେଖ:—

ପିଟିସନ୍ ଅଫ ରାଇଟ୍‌ସ (Petition of Rights), ଅଲିଭର କ୍ରମୱେଲ, ବିସ୍‌ମାର୍କ, କାଭୋନାର୍ଦ୍ଦ, ମାଜିନି, ଇଉରୋପର ରୁଗ୍‌ଣ ବ୍ୟକ୍ତି, ନେପୋଲିୟନ, 'ଆତଙ୍କ କାଳ' (Reign of Terror)

୧୨ । ଜର୍ମାନୀର ଏକତ୍ରୀକରଣ କିପରି ଘଟିଲା ?

୧୩ । ଇଟାଲୀର ସ୍ୱାଧୀନତା ସଂଗ୍ରାମ ବର୍ଣ୍ଣନା କର ।

୧୪ । ମୁସ୍ତାଫା କେମାଲଙ୍କୁ "ଅତାତୁର୍କ" ବୋଲି କାହିଁକି କୁହାଯାଏ ?

୧୫ । ଗାରିବାଲ୍‌ଡି କିଏ ? ତାଙ୍କର କାର୍ଯ୍ୟାବଳୀ ବର୍ଣ୍ଣନା କର ।

୧୬ । 'କ' ସ୍ତମ୍ଭରେ ଆବିଷ୍କାରକମାନଙ୍କ ନାମ ଓ 'ଖ' ସ୍ତମ୍ଭରେ ଆବିଷ୍କାରର ନାମ ଦିଆଯାଇଛି । ସେଥିରୁ କିଏ କଣ ଆବିଷ୍କାର କରିଥିଲେ ତାହା ପ୍ରକାଶ କର—

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ବେୟାର୍ଡ଼ | ଜଳୀୟ ଫ୍ରେମ୍ |
| ଲୁଇ ପାଷ୍ଟର | ଗ୍ରାମୋଫୋନ୍ |
| ଏଡ଼ିସନ୍ | ଟେଲିଭିଜନ |
| ହାରଗ୍ରୀଭ୍‌ସ | ଆଣ୍ଟିରାବିଡ଼୍ ଇଞ୍ଜେକ୍‌ସନ |
| ଆର୍କରାଇଟ | ସ୍ପିନିଂଜେନି |

୧୭ । "ବିବର୍ତ୍ତନବାଦ" କ'ଣ ଓ ତା'ର ପ୍ରବର୍ତ୍ତକ କିଏ ?

୧୮ । ଆଧୁନିକ ଯୁଗରେ ବିଜ୍ଞାନର କି ଉନ୍ନତି ଘଟିଛି ?

୧୯ । ବିଜ୍ଞାନର ଉନ୍ନତି ଆଧୁନିକ ମାନବ ସମାଜର ଅଡୁଳର କାରଣ ହୋଇଛି କିପରି ?

---

## ସପ୍ତମ ପରିଚ୍ଛେଦ

### ଆଧୁନିକ ଇତିହାସ

ଭାରତରେ ବ୍ରିଟିଶ ଶକ୍ତିର ଦୃଢ଼ ପ୍ରତିଷ୍ଠା—ପୂର୍ବରୁ କୁହାଯାଇଛି, ଅନ୍ୟାନ୍ୟ ଇଉରୋପୀୟ ଜାତି ଭଳି ଇଂରେଜମାନେ ଭାରତକୁ ବାଣିଜ୍ୟ କରିବାକୁ ଆସିଥିଲେ ଏବଂ ବାଣିଜ୍ୟ କ୍ଷେତ୍ରରେ ପ୍ରତିଷ୍ଠାଲାଭ କରିବାକୁ ସଙ୍ଗେ ସଙ୍ଗେ ଭାରତୀୟ ରାଜନୀତିକ୍ଷେତ୍ରରେ ମଧ୍ୟ ପ୍ରବେଶ କଲେ । ସେତେବେଳେ ମୋଗଲ ସାମ୍ରାଜ୍ୟର ଅବସ୍ଥା ନିତାନ୍ତ ଶୋଚନୀୟ । ଅଉରଙ୍ଗଜେବଙ୍କ ଅନ୍ତେ ମୋଗଲ ସାମ୍ରାଜ୍ୟ କ୍ଷିପ୍ରଗତିରେ ଭାଙ୍ଗିପଡ଼ୁଥାଏ । ଦେଶରେ ଏକତା ନ ଥାଏ । ବିଭିନ୍ନ ଦେଶୀୟରାଜ୍ୟ ମଧ୍ୟରେ ଘୋର ଶତ୍ରୁତା ଲାଗିରହିଥାଏ । ଏହି ଅଶାନ୍ତି ଓ ଅନ୍ତର୍ବିବାଦର ସୁଯୋଗ ନେଇ ଫରାସୀ ଓ ଇଂରେଜମାନେ ଭାରତରେ ରାଜନୈତିକ ପ୍ରାଧାନ୍ୟ ଲାଭ ପାଇଁ ଚେଷ୍ଟା କଲେ । ଅବଶେଷରେ ଫରାସୀ ଶକ୍ତିର ପତନ ଘଟିଲା । ଇଂରେଜମାନେ ମୁଖ୍ୟ ବୈଦେଶିକ ଶକ୍ତିରୂପେ ଭାରତରେ ମୁଣ୍ଡ ଟେକି ଉଠିଲେ । ଦାକ୍ଷିଣାତ୍ୟରେ ଓ ବଙ୍ଗଳାରେ ସେମାନେ ପ୍ରଭାବଶାଳୀ ହେଲେ ।

କ୍ଲାଇଭ୍ ଭାରତରେ ବ୍ରିଟିଶ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପନ କଲେ । ୧୭୫୭ ଖ୍ରୀଷ୍ଟାବ୍ଦରେ ବଙ୍ଗର ନବାବ ସିରାଜ ଉଦ୍ଦୌଲା

ପଲାଶୀ ଯୁଦ୍ଧରେ ପରାସ୍ତ ହେଲେ ଏବଂ ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟର ମୂଳପତ୍ତନ ଏହିଠାରୁ ଆରମ୍ଭ ହେଲା । କିଛିଦିନ ପରେ, ୧୭୬୫ ଖ୍ରୀଷ୍ଟାବ୍ଦରେ କ୍ଲାଇଭଙ୍କ ଚେଷ୍ଟାରେ ଇଂରେଜ ଇଷ୍ଟଇଣ୍ଡିଆ କମ୍ପାନୀ ତତ୍କାଳୀନ ମୋଗଲ ସମ୍ରାଟ୍ ସାହାଆଲମଙ୍କଠାରୁ ବଙ୍ଗ, ବିହାର ଏବଂ ଓଡ଼ିଶାର ଦେବାନୀ ଲାଭ କଲେ । ରାଜସ୍ୱ ଆଦାୟ ଓ ଦେଶ ରକ୍ଷାର ଭାର କମ୍ପାନୀ ହାତରେ ରହିଲା । ଏହାଫଳରେ ବଙ୍ଗଳାର ନବାବଙ୍କ କ୍ଷମତା ପ୍ରାୟ ଲୋପ ପାଇଲା । କ୍ଲାଇଭଙ୍କ ପରେ ଉଆରେନ ହେଷ୍ଟିଙ୍ଗସ୍ ଶାସନକର୍ତ୍ତା ହୋଇ ଇଂରେଜ ସାମ୍ରାଜ୍ୟର ମୂଳଭିତ୍ତି ଅଧିକ ଦୃଢ଼ କଲେ । ୧୭୮୫ ଖ୍ରୀଷ୍ଟାବ୍ଦରେ ହେଷ୍ଟିଙ୍ଗସ୍ ପଦତ୍ୟାଗ କଲେ । ହେଷ୍ଟିଙ୍ଗସ୍‌ଙ୍କ ପରବର୍ତ୍ତୀ ଶାସକମାନଙ୍କ ସମୟରେ ଏହି ସାମ୍ରାଜ୍ୟ କ୍ରମେ ଉତ୍ତରୋତ୍ତର ବୃଦ୍ଧି ଲାଭକଲା ଏବଂ ଅବଶେଷରେ ଇଂରେଜମାନେ ସମଗ୍ର ଭାରତର ପ୍ରଭୁ ହେଲେ ।


ଓ୍ୱାରେନ୍ ହେଷ୍ଟିଙ୍ଗସ୍

**ଭାରତରେ ଇଂରେଜ ସାମ୍ରାଜ୍ୟ ବୃଦ୍ଧି**—ନାନା ଉପାୟରେ ଇଂରେଜମାନେ ଭାରତରେ ରାଜ୍ୟବୃଦ୍ଧି କରିଥିଲେ । ତନ୍ମଧ୍ୟରୁ ଯୁଦ୍ଧ ଅନ୍ୟତମ । ବିଭିନ୍ନ ସମୟରେ ବିଭିନ୍ନ ଯୁଦ୍ଧ ସଂଘଟିତ ହୋଇଥିଲା । ଦକ୍ଷିଣ ଭାରତରେ ମହୀଶୂର ରାଜ୍ୟ ସହିତ ଇଂରେଜମାନଙ୍କର ଚାରିଥର ଯୁଦ୍ଧ ଲାଗିଥିଲା । ପ୍ରଥମେ ମହୀଶୂର ରାଜ୍ୟର ପ୍ରତିଷ୍ଠାତା ହାଇଦର ଅଲ୍ଲିଙ୍କ ସହିତ ଓ ପରେ ତାଙ୍କ ପୁତ୍ର

ଟିପୁସୁଲତାନଙ୍କ ସହିତ ଯୁଦ୍ଧ ହୋଇଥିଲା । ଟିପୁ ଯୁଦ୍ଧକ୍ଷେତ୍ରରେ ପ୍ରାଣ ହରାଇଥିଲେ । ଚତୁର୍ଥ ମହୀଶୂର ଯୁଦ୍ଧ ଫଳରେ ଇଂରେଜମାନେ ମହୀଶୂର ରାଜ୍ୟର ମୁଖ୍ୟଭାଗ ନିଜ ରାଜ୍ୟଭୁକ୍ତ କରି ନେଇଥିଲେ । ମହୀଶୂର ରାଜ୍ୟ ଲୋପ ପାଇଥିଲା ।


ଟିପୁସୁଲତାନ୍

ମହୀଶୂରକୁ ଛାଡ଼ି ଦେଲେ, ମରହଟ୍ଟା ଶକ୍ତି ଥିଲା ଇଂରେଜ-ମାନଙ୍କର ଏକ ପ୍ରବଳ ପ୍ରତିଦ୍ୱନ୍ଦୀ । ମରହଟ୍ଟା ଶକ୍ତି ଏକ ସମ୍ମିଳିତ ଶକ୍ତି ନ ଥିଲା । ପେଶବା, ସିନ୍ଧିଆ, ହୋଲକାର, ଭୋଁସଲା ଓ ଗାଇକବାଡ଼—ଏହି ପାଞ୍ଚଟି ଶାଖାରେ ତାହା ବିଭକ୍ତ ଥିଲା । ମରହଟ୍ଟାମାନଙ୍କ ସହିତ ଇଂରେଜମାନଙ୍କର ତିନିଥର ଯୁଦ୍ଧ ହୋଇଥିଲା । ଏଗୁଡ଼ିକ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ମରହଟ୍ଟା ସମର ନାମରେ ଇତିହାସରେ ଅଭିହିତ । ତୃତୀୟ ମରହଟ୍ଟା ସମରର ଫଳ ସ୍ୱରୂପ ମରହଟ୍ଟା ଜାତିର ଗୌରବସୂର୍ଯ୍ୟ ଅସ୍ତମିତ ହୋଇଥିଲା । ୧୮୧୯ ଖ୍ରୀଷ୍ଟାବ୍ଦରେ ଲର୍ଡ଼ ହେଷ୍ଟିଂସଙ୍କ ସମୟରେ ସେମାନଙ୍କର ଚରମ ପରାଜୟ ଘଟିଥିଲା ।

ତୃତୀୟ ମରହଟ୍ଟା ସମରର କିଛି ଦିନ ପୂର୍ବରୁ ୧୮୧୪ ଖ୍ରୀ:ରେ ନେପାଳ ସହିତ ଇଂରେଜମାନଙ୍କର ଯୁଦ୍ଧ ଲାଗିଥିଲା ଏବଂ ୧୮୧୬ ଖ୍ରୀଷ୍ଟାବ୍ଦରେ ନେପାଳ ସଗୌଲିଠାରେ ସନ୍ଧି କରିବାକୁ ବାଧ୍ୟ ହୋଇଥିଲା । ଉକ୍ତ ସନ୍ଧି ଫଳରେ କୁମାୟୁନ ଓ ଗଡ଼ୱାଲ ଏବଂ

ତରାଇ ଅଞ୍ଚଳର ଏକ ମୁଖ୍ୟଭାଗ ଇଂରେଜ ରାଜ୍ୟଭୁକ୍ତ ହୋଇଥିଲା । ନେପାଳ ସିକ୍କିମ ରାଜ୍ୟ ଉପରୁ ଦାବି ପରିତ୍ୟାଗ କରିଥିଲା ଓ ସିକ୍କିମରେ ବ୍ରିଟିଶ୍ ପ୍ରଭାବ ପ୍ରତିଷ୍ଠିତ ହୋଇଥିଲା ।

ପୂର୍ବ ଅଡ଼େ ବ୍ରହ୍ମଦେଶ ସହିତ ଇଂରେଜମାନଙ୍କର ମଧ୍ୟ ଯୁଦ୍ଧ ଲାଗିଥିଲା । ୧୮୨୬ ଖ୍ରୀଷ୍ଟାବ୍ଦରେ ବ୍ରହ୍ମଦେଶର ରାଜା ୟାନ୍ଦାବୁ ନାମକ ସ୍ଥାନରେ ସନ୍ଧି କରିବାକୁ ବାଧ୍ୟ ହୋଇଥିଲେ । ଏହି ସନ୍ଧି ଫଳରେ ଆସାମ, ମଣିପୁର, କାଚ୍ଛାର, ଜୟନ୍ତିଆ, ଆରାକାନ ଓ ଟେନାସେରିମ୍ ଇଂରେଜମାନଙ୍କ ଅଧିକାରକୁ ଆସିଥିଲା । ୧୮୫୨ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ବ୍ରହ୍ମସମର ଆରମ୍ଭ ହୋଇଥିଲା । ଏହାର ଫଳସ୍ୱରୂପ ବ୍ରହ୍ମଦେଶର ଦକ୍ଷିଣାଞ୍ଚଳ ଇଂରେଜ ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ୧୮୮୫ ଖ୍ରୀଷ୍ଟାବ୍ଦରେ ତୃତୀୟ ବ୍ରହ୍ମସମର ପରେ ସମଗ୍ର ବ୍ରହ୍ମଦେଶ ଇଂରେଜମାନଙ୍କ ଦଖଲକୁ ଆସିଲା ।

ପଞ୍ଜାବରେ ଶିଖମାନଙ୍କ ସହିତ ଇଂରେଜମାନଙ୍କର ବିବାଦ ଏକ ଉଲ୍ଲେଖଯୋଗ୍ୟ ଘଟନା । ଶିଖମାନଙ୍କର ପ୍ରସିଦ୍ଧ ରାଜା ରଣଜିତ୍ ସିଂହଙ୍କ ମୃତ୍ୟୁପରେ ସେଠାରେ ଘୋର ଅଶାନ୍ତି ଦେଖାଦେଇଥିଲା । ଶିଖ ସୈନ୍ୟମାନେ ଇଂରେଜ ଅଧିକୃତଅଞ୍ଚଳ ଆକ୍ରମଣ କରିଥିଲେ । ୧୮୪୫ ଖ୍ରୀଷ୍ଟାବ୍ଦରେ ପ୍ରଥମ ଶିଖସମର ଆରମ୍ଭ ହୋଇଥିଲା । ଏଥିରେ ଜୟ ଲାଭକରି ଇଂରେଜମାନେ ଜଳନ୍ଧର ଦୋଆବ ଲାଭ କରିଥିଲେ । ୧୮୪୮ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ଶିଖସମରର ପରିଣାମ ସ୍ୱରୂପ ସମଗ୍ର ପଞ୍ଜାବ ଇଂରେଜ ସାମ୍ରାଜ୍ୟଭୁକ୍ତ ହେଲା ।

୧୮୪୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ସିନ୍ଧୁ ଜୟ କରି ନେଇଥିଲେ । ୧୮୫୬ ଖ୍ରୀଷ୍ଟାବ୍ଦରେ ଅଯୋଧ୍ୟାର ନବାବଙ୍କ କୁଶାସନ ଯୋଗୁଁ ଅଯୋଧ୍ୟା ଇଂରେଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ସେତେବେଳେ ଲର୍ଡ଼ ଡେଲହାଉସୀ ଗଭର୍ଣ୍ଣର ଜେନେରାଲ ଥିଲେ ।

ଡେଲ୍‌ହାଉସୀଙ୍କ "ରାଜ୍ୟସ୍ୱତ୍ୱ-ଲୋପ ନୀତି" ଫଳରେ ସତାରା, ଝାନ୍‌ସି, ନାଗପୁର ପ୍ରଭୃତି ଅନେକ ଦେଶୀୟ ରାଜ୍ୟ ଇଂରେଜ ସାମ୍ରାଜ୍ୟର ଅଙ୍ଗୀଭୂତ ହୋଇଥିଲା । ଏହିପରି ଭାବରେ କାଳକ୍ରମେ ଭାରତରେ ବିଶାଳ ଇଂରେଜ ସାମ୍ରାଜ୍ୟ ପ୍ରତିଷ୍ଠିତ ହେଲା ।

**ମୋଗଲଶକ୍ତିର ଲୋପ ଓ ତାର ସ୍ଥାନ ପୂରଣ ପାଇଁ ମରହଟ୍ଟାଶକ୍ତିର ଅପାରଗତା :**—ଅଉରଙ୍ଗଜେବଙ୍କ ରାଜତ୍ୱ ଶେଷ ଭାଗରେ ମୋଗଲ ସାମ୍ରାଜ୍ୟ ପତନର ସୂତ୍ରପାତ ହୋଇଥିଲା । ତାଙ୍କର ମୃତ୍ୟୁ ପରେ ଉକ୍ତ ସାମ୍ରାଜ୍ୟ କ୍ଷିପ୍ରଗତିରେ ଭାଙ୍ଗି ପଡ଼ିଲା । ପ୍ରାଦେଶିକ ଶାସକମାନେ ସ୍ୱାଧୀନ ହୋଇଗଲେ । ଭାରତ ବହୁ କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହେବାରୁ ଶାନ୍ତି ଶୃଙ୍ଖଳାର ସୂତ୍ର ଛିନ୍ନ ହୋଇଗଲା । ପ୍ରବଳ କେନ୍ଦ୍ର ଶକ୍ତି ବୋଲି କୌଣସି ଶକ୍ତି ରହିଲା ନାହିଁ । ଏ ଅବସ୍ଥାର ସୁଯୋଗ ନେଇ ଫରାସୀ ଓ ଇଂରେଜମାନେ ନିଜର କ୍ଷମତା ବିସ୍ତାର କରିବାକୁ ସୁଯୋଗ ପାଇଲେ । ମୋଗଲ ସମ୍ରାଟ କେବଳ ନାମକୁ ମାତ୍ର ସମ୍ରାଟ୍ ହୋଇ ରହିଲେ । ମୋଗଲ କ୍ଷମତା ଏହିପରି ଲୋପ ପାଇଲା ।

କାଳକ୍ରମେ ଫରାସୀମାନଙ୍କର ପତନ ଘଟିଲା । ପଣ୍ଡିଚେରୀ ଓ ଚନ୍ଦନନଗର ନାମରେ ଦୁଇଟି କ୍ଷୁଦ୍ରସ୍ଥାନ ସେମାନଙ୍କ ହାତରେ ରହିଲେ ସୁଦ୍ଧା ଭାରତରୁ ଫରାସୀ ପ୍ରଭାବ ବିଲୁପ୍ତ ହେଲା । ଦେଶୀୟ ଶକ୍ତି ମଧ୍ୟରେ ମରହଟ୍ଟାମାନେ କ୍ରମଶଃ ପ୍ରବଳ ହୋଇ ଉଠିଥିଲେ । ପ୍ରଥମ ବାଜିରାଓଙ୍କ ସମୟରେ ସେମାନେ ଦକ୍ଷିଣ ଭାରତରେ ଆଧିପତ୍ୟ ବିସ୍ତାର କରି ଉତ୍ତର ଭାରତରେ ଦିଲ୍ଲୀ ପର୍ଯ୍ୟନ୍ତ ଅଗ୍ରସର ହୋଇ ପାରିଥିଲେ । ତାଙ୍କ ପୁତ୍ର ବାଲାଜି ବାଜିରାଓଙ୍କ ସମୟରେ ମରହଟ୍ଟାମାନେ ଦିଲ୍ଲୀ ଓ ପଞ୍ଜାବ ଅଧିକାର କରିଥିଲେ, ମାତ୍ର ୧୭୬୧ ଖ୍ରୀଷ୍ଟାବ୍ଦରେ ତୃତୀୟ ପାନିପଥ ଯୁଦ୍ଧରେ ସେମାନେ ଅହମ୍ମଦସାହ ଦୁରାନୀଙ୍କ ହସ୍ତରେ ଭୀଷଣଭାବରେ ପରାସ୍ତ ହୋଇଥିଲେ ।

ଏହାପରେ ସେମାନଙ୍କର ସାମ୍ରାଜ୍ୟ ପ୍ରତିଷ୍ଠାର ସମ୍ଭାବନା ପ୍ରାୟ ଲୋପ ପାଇଥିଲା । ଅବଶ୍ୟ କିଛିଦିନ ପରେ ମହାରାଷ୍ଟ୍ରମାନେ ପୁନଶ୍ଚ କେତେକ ପରିମାଣରେ ଶକ୍ତି ସଞ୍ଚୟ କରିଥିଲେ ଓ ଚାଳିଶ ବର୍ଷକାଳ ରାଜନୈତିକ ପ୍ରାଧାନ୍ୟ ଲାଭ ପାଇଁ ସେମାନେ ଇଂରେଜମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ; ମାତ୍ର ଅବଶେଷରେ ତୃତୀୟ ମରହଟ୍ଟା ସମର ପରେ ସେମାନଙ୍କର ସମସ୍ତ ଉଦ୍ୟମ ବ୍ୟର୍ଥତାରେ ପର୍ଯ୍ୟବସିତ ହେଲା । ତାର ପ୍ରଧାନ କାରଣ—ମରହଟ୍ଟାମାନେ ନିଜ ମଧ୍ୟରେ ଜାତୀୟ ଏକତା ଆଣିପାରି ନ ଥିଲେ । ଶିବାଜୀଙ୍କ ପରେ ଜାଗୀର ପ୍ରଥା ପୁନଃ ପ୍ରବର୍ତ୍ତିତ ହୋଇଥିଲା ଏବଂ ଜାଗୀରଦାରମାନେ ନିତାନ୍ତ ସ୍ୱାର୍ଥପର ଥିଲେ । ରାଜ୍ୟରେ ଅନ୍ତର୍ବିବାଦ ଓ ଷଡ଼ଯନ୍ତ୍ର ଭୀଷଣ ହୋଇ ଉଠିଥିଲା । ମରହଟ୍ଟାମାନେ ପାଶ୍ଚାତ୍ୟ ଢଙ୍ଗରେ ସାମରିକ ସଂଗଠନ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇ ନ ଥିଲେ । ଅନ୍ୟ ପକ୍ଷରେ ଇଂରେଜମାନଙ୍କର ସାମରିକ ସଂଗଠନ ଅତି ଉତ୍କୃଷ୍ଟ ଧରଣର ଥିଲା । ଇଂରେଜମାନେ ମଧ୍ୟ କୂଟନୀତିରେ ଅଧିକ ଧୁରନ୍ଧର ଥିଲେ । ଏହି ସବୁ କାରଣରୁ ମୋଗଲ ସାମ୍ରାଜ୍ୟର ଧ୍ୱଂସାବଶେଷ ଉପରେ ମରହଟ୍ଟାମାନେ ନୂତନ ସାମ୍ରାଜ୍ୟ ପ୍ରତିଷ୍ଠା କରିବାକୁ ସମର୍ଥ ହେଲେ ନାହିଁ । ଭାରତର ଭାଗ୍ୟଲକ୍ଷ୍ମୀ ଅବଶେଷରେ ପ୍ରବଳ ପରାକ୍ରାନ୍ତ ଇଂରେଜ ଶକ୍ତିକୁହିଁ ବରଣକଲା ।

**ଭାରତରେ ବ୍ରିଟିଶ୍ ଭାବଧାରା ଓ ବ୍ରିଟିଶ ଜୀବନାଦର୍ଶର ପ୍ରବର୍ତ୍ତନ** :—ଇଂରେଜମାନେ ଭାରତର ପ୍ରଭୁ ହେଲେ । ଇଂରେଜ ରାଜତ୍ୱ ଭାରତରେ ଏକ ନୂତନ ଯୁଗ ପ୍ରବର୍ତ୍ତନ କଲା । ଇଂରେଜମାନେ ଏ ଦେଶରେ ନୂତନ ଶାସନ ପ୍ରଣାଳୀ ପ୍ରବର୍ତ୍ତନ କଲେ । କ୍ରମେ କ୍ରମେ ଭାରତୀୟ ଶିକ୍ଷାପ୍ରଣାଳୀ ପରିବର୍ତ୍ତିତ ହେଲା ।

ବ୍ରିଟିଶ୍ ଭାବଧାରା ଭାରତରେ ପ୍ରବେଶ କଲା । ରାଜନୈତିକ ଓ ଅର୍ଥ-ନୈତିକ କ୍ଷେତ୍ରରେ ଭାରତରେ ଅବନତି ଘଟିଲେ ସୁଦ୍ଧା, ଭାରତୀୟ ସମାଜ ଓ ଧର୍ମଉପରେ ତାର ପ୍ରବଳ ପ୍ରଭାବ ପଡ଼ିଲା । ମଧ୍ୟଯୁଗର ଭାବଧାରା ବଦଳି ଗଲା । ଅନେକ ଲୋକ ପାଶ୍ଚାତ୍ୟ ଭାବରେ ଅନୁ-ପ୍ରାଣିତ ହେଲେ । ପ୍ରାଚୀନ ପ୍ରଥା ଓ ପ୍ରାଚୀନ ବିଶ୍ୱାସକୁ ସେମାନେ ବିବେକ ଦୃଷ୍ଟିରେ ପରୀକ୍ଷା କରି ଦେଖିବାକୁ ଆରମ୍ଭ କଲେ । ପାଶ୍ଚାତ୍ୟ ଜଗତର ବୈଜ୍ଞାନିକ ଉନ୍ନତି ପ୍ରତି ଭାରତୀୟ ମନ ଆକୃଷ୍ଟ ହେବାକୁ ଆରମ୍ଭ କଲା ।

ସଂସ୍କାର ପାଇଁ ନବୀନ ଉନ୍ମାଦନାର ସୃଷ୍ଟି ହେଲା । ପ୍ରଥମେ ପ୍ରଥମେ ଅଳ୍ପ କେତେକ ଲୋକଙ୍କ ମଧ୍ୟରେ ଏହି ନୂତନ ଚିନ୍ତାଧାରା ଆବଦ୍ଧ ହୋଇ ରହିଥିଲା ସତ୍ୟ, ମାତ୍ର କାଳକ୍ରମେ ତାହା ଅନ୍ୟମାନଙ୍କୁ ପ୍ରଭାବିତ କଲା । ଏପରକି, ସମାଜର ଅତି ସାଧାରଣ ସ୍ତରକୁ ମଧ୍ୟ ତାହା ଧୀରେ ସଞ୍ଚାରିତ ହେଲା । ଇଂରେଜୀ ଶିକ୍ଷିତ ବ୍ୟକ୍ତିମାନଙ୍କ ମଧ୍ୟରୁ ଅନେକେ ଇଉରୋପୀୟ ଜୀବନଯାପନ ପଦ୍ଧତି ଅନୁକରଣ କଲେ । ସେମାନେ ଇଂରେଜ ପୋଷାକ ପରିଧାନ କଲେ ଓ ଇଂରେଜମାନଙ୍କ ଚାଲିଚଳନ ଅନୁସରଣ କରି ଚଳିଲେ । ସମାଜରେ ଏକ ନୂତନ ଶ୍ରେଣୀର ସୃଷ୍ଟି ହେଲା । ବ୍ରିଟିଶ୍ ଭାବଧାରାର ପ୍ରଭାବରେ ଭାରତରେ ଜାତୀୟତାର ଅପୂର୍ବ ଉନ୍ମେଷ ଘଟିଲା । ଇଂରେଜ ଜାତିର ସ୍ୱାଧୀନତା-ପ୍ରୀତି ଭାରତୀୟ ମନକୁ ସ୍ପର୍ଶ କଲା ଏବଂ ଭାରତୀୟ ମନରେ ସ୍ୱାଧୀନତାର ଆକାଂକ୍ଷା ଜାଗ୍ରତ ହେଲା । ଇଂଲଣ୍ଡର ଲୋକେ ସେତେବେଳେ ଗଣତନ୍ତ୍ର ଭାବରେ ଉଦ୍‌ବୁଦ୍ଧ ହୋଇ ରହିଥିଲେ । ଭାରତୀୟ ଲୋକେ ଚିନ୍ତାଶୀଳ ଇଂରେଜ ଲୋକମାନଙ୍କ ଲେଖା ପଢ଼ି ଗଣତନ୍ତ୍ର ( Democracy ) କୁ ଆଦର ଚକ୍ଷୁରେ ଦେଖିଲେ ।

ପାଶ୍ଚାତ୍ୟଭାବଧାରାର ପ୍ରଭାବ ହିନ୍ଦୁଧର୍ମ ଉପରେ ମଧ୍ୟ କେତେକ ପରିମାଣରେ ପଡ଼ିଥିଲା । ଇଂରେଜୀ ଶିକ୍ଷିତ ଲୋକଙ୍କ ମଧ୍ୟରୁ ଅନେକେ ରକ୍ଷଣଶୀଳତା ବର୍ଜନ କରିଥିଲେ ଏବଂ ଧର୍ମସଂସ୍କାରର ପକ୍ଷପାତୀ ହୋଇ ପଡ଼ିଥିଲେ । ବଙ୍ଗଳାର ବ୍ରାହ୍ମ ସମାଜ ଓ ପଞ୍ଜାବର ଆର୍ଯ୍ୟ ସମାଜ ଏହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

**ଭାରତର ସାମାଜିକ ଜୀବନ ଉପରେ ଇଂରେଜ ଶାସନର ପ୍ରଭାବ**:—ଇଂରେଜ ଶାସନର ପ୍ରାରମ୍ଭରୁ ସରକାରଙ୍କ ନୀତି ଥିଲା ଭାରତର ସାମାଜିକ ଜୀବନ ଓ ଭାରତୀୟମାନଙ୍କର ଧର୍ମ ଧାରଣାରେ ହସ୍ତକ୍ଷେପ ନ କରିବା । ଭାରତୀୟମାନଙ୍କର ସାମାଜିକ ଅନୁଷ୍ଠାନ ଓ ସାମାଜିକ ପ୍ରଥା ପ୍ରତି ବିରୋଧଭାବ ପ୍ରକାଶ କରିବାକୁ ସେମାନେ କୁଣ୍ଠାବୋଧ କରୁଥିଲେ । ହିନ୍ଦୁ ମୁସଲମାନ ସାମାଜିକ ନିୟମକୁ ସେମାନେ ବାଧା ଦେଉ ନ ଥିଲେ । ମାତ୍ର ଚିରଦିନ ଏପରି ନୀତି ଅବଲମ୍ବନ କରି ଶାସନ ପରିଚାଳନା କରିବା ସମ୍ଭବପର ହେଲା ନାହିଁ । କେତେକ କ୍ଷେତ୍ରରେ ଏହାର ବ୍ୟତିକ୍ରମ କରିବାକୁ ପଡ଼ିଲା । କେତେକ ସାମାଜିକ ପ୍ରଥାକୁ ଦେଶରୁ ଲୋପ କରିବାକୁ ଇଂରେଜ ସରକାର ବାଧ୍ୟ ହେଲେ । ସେ ବିଷୟ ପରେ ଆଲୋଚିତ ହେବ ।

ଇଂରେଜ ଶାସନ ଫଳରେ ଭାରତର ପ୍ରାଚୀନ ଗ୍ରାମ ପଞ୍ଚାୟତ ପ୍ରଥା ଉଠିଗଲା । ପୂର୍ବେ ପଞ୍ଚାୟତଗୁଡ଼ିକ ସ୍ୱାଧୀନ ଥିଲେ । ପ୍ରତ୍ୟେକ ପଞ୍ଚାୟତ ସ୍ୱତନ୍ତ୍ର ଭାବରେ ଚଳୁଥିଲେ । ବିଭିନ୍ନ ଗ୍ରାମ ପଞ୍ଚାୟତ-ଗୁଡ଼ିକ ମଧ୍ୟରେ ବିଶେଷ ସମ୍ପର୍କ ନ ଥିଲା । ତାର ପ୍ରଧାନ କାରଣ ଗମନାଗମନର ଅସୁବିଧା । ଗ୍ରାମଗୁଡ଼ିକୁ ପରସ୍ପର ସହିତ ସଂଯୁକ୍ତ କରି ରଖିବାକୁ ଉପଯୁକ୍ତ ରାସ୍ତାର ଅଭାବ ଥିଲା । ବ୍ରିଟିଶ୍ ସରକାର ଯେତେବେଳେ ଭଲ ଭଲ ସଡ଼କ ଓ ରେଳରାସ୍ତା ନିର୍ମାଣ କଲେ,

ସେତେବେଳେ ଅବସ୍ଥାର ପରିବର୍ତ୍ତନ ଘଟିଲା । ଗ୍ରାମଗୁଡ଼ିକ ଆଉ ସ୍ୱତନ୍ତ୍ର ଓ ସମ୍ପର୍କହୀନ ହୋଇ ରହିପାରିଲା ନାହିଁ । ବାହାର ସହିତ ସମ୍ପର୍କ କ୍ରମେ କ୍ରମେ ଦୃଢ଼ୀଭୂତ ହେଲା । ପୂର୍ବରୁ ଗ୍ରାମର କୃଷକଙ୍କୁ କେବଳ ନିଜ ଗ୍ରାମ ପାଇଁ ଶସ୍ୟ ଉତ୍ପାଦନ କରିବାକୁ ହେଉଥିଲା, ବର୍ତ୍ତମାନ ଅନ୍ୟ ଅଞ୍ଚଳ ପାଇଁ ମଧ୍ୟ ତାଙ୍କୁ କୃଷି କରିବାକୁ ପଡ଼ିଲା । ଏହା ଫଳରେ ଗ୍ରାମର ସ୍ୱାତନ୍ତ୍ର୍ୟ ଲୋପ ପାଇଲା ।

ବ୍ରିଟିଶ ଶାସନ ଫଳରେ ଜମିଦାରୀ ପ୍ରଥାର ପ୍ରବର୍ତ୍ତନ ହେଲା । * ବ୍ରିଟିଶ ରାଜତ୍ୱରେ ଯେଉଁ ଧରଣର ଜମିଦାର ସୃଷ୍ଟି ହେଲେ ପୂର୍ବରୁ ସେପରି ଜମିଦାର ନ ଥିଲେ । ଜମି ଚାଷ କରୁଥିବା ଲୋକ ସିଧା ରାଜ-ସରକାରଙ୍କୁ ଉତ୍ପନ୍ନ ଶସ୍ୟର ଏକ ନିର୍ଦ୍ଦିଷ୍ଟ ଅଂଶ ଖଜଣା ସ୍ୱରୂପ ଦେଉଥିଲା । ବେଳେ ବେଳେ ଗ୍ରାମ ପଞ୍ଚାୟତ ସମଗ୍ର ଗ୍ରାମ ପାଇଁ ରାଜ-ଭାଗ ଦାଖଲ କରୁଥିଲା । ଯେତେବେଳେ ମୋଗଲ ସାମ୍ରାଜ୍ୟ ଭାଙ୍ଗିଗଲା ଓ କେନ୍ଦ୍ର ସରକାର ଦୁର୍ବଳ ହୋଇପଡ଼ି ରାଜସ୍ୱ ଆଦାୟ କରିବାକୁ ଅକ୍ଷମ ହେଲା, ସେତେବେଳେ ରାଜସ୍ୱ ଆଦାୟକାରୀମାନେ ନିଯୁକ୍ତ ହୋଇଥିଲେ । ସେମାନେ ରାଜସରକାର ତରଫରୁ ରାଜସ୍ୱ ଆଦାୟକରି ତାର ଦଶମାଂଶ ନିଜର ପ୍ରାପ୍ୟସ୍ୱରୂପ ନେଲେ । ସେମାନଙ୍କୁ ଜମିଦାର ବା ତାଲୁକଦାର ବୋଲି କୁହାଗଲା । ଜମିଦାର ଯେଉଁ ଅଞ୍ଚଳରୁ ରାଜସ୍ୱ ଆଦାୟ କଲେ ସେହି ଅଞ୍ଚଳକୁ ତାର ଜମିଦାରୀ ବୋଲି କୁହାଗଲା ।

---

*ସ୍ୱର୍ଗତ ଜବାହାରଲାଲ ନେହେରୁଙ୍କ ଲିଖିତ Glimpses of World Historyର "The Villge, the peasant, and the Land-lord in India" ଶୀର୍ଷକ ପରିଚ୍ଛେଦ ଦ୍ରଷ୍ଟବ୍ୟ ।

ପରେ ରାଜସ୍ୱ ଅଦାୟ ବ୍ୟବସ୍ଥାରେ ନିଲାମ ପ୍ରଥା ପ୍ରଚଳିତ ହେଲା । ନିଲାମରେ ଯେଉଁ ବ୍ୟକ୍ତି ସର୍ବୋଚ୍ଚ ଡାକ ଡାକି ପାରିଲା ସେହି ହେଲା ଜମିଦାର । ରାଜ ସରକାର ଯେତେବେଳେ ନିତାନ୍ତ ଦୁର୍ବଳ ହୋଇ ପଡ଼ିଲା ଓ ଜମିଦାର ହାତରୁ ଜମିଦାରୀ ଛଡ଼ାଇବାର ସାମର୍ଥ୍ୟ ତାର ରହିଲା ନାହିଁ, ସେତେବେଳେ ଜମିଦାର ପଦ ବଂଶାନୁକ୍ରମିକ ହୋଇଗଲା । ପ୍ରକୃତରେ କହିବାକୁ ଗଲେ, ବଙ୍ଗ, ବିହାର ଏବଂ ଓଡ଼ିଶାର ଦେଓ୍ୱାନି ଲାଭ କରି ଇଂରେଜ କମ୍ପାନୀ ମୋଗଲ ସମ୍ରାଟ୍‌ଙ୍କ ଅଧୀନରେ ଏକ ଜମିଦାର ହୋଇଥିଲେ । କମ୍ପାନୀ ମଧ୍ୟ ନିଜ ଅଧୀନରେ ଅନେକ ଜମିଦାର ସୃଷ୍ଟି କରିଥିଲେ । ରାଜସ୍ୱ ଅଦାୟର ସୁବ୍ୟବସ୍ଥା ପାଇଁ ଓ୍ୱାରେନ୍ ହେଷ୍ଟିଂସ୍ ପାଞ୍ଚ ବର୍ଷରେ ଥରେ ଜମିଦାରୀମାନ ନିଲାମ କରୁଥିଲେ । କିନ୍ତୁ ଏହାର ଫଳ ସନ୍ତୋଷଜନକ ହୋଇ ନ ଥିଲା । ଅସ୍ଥାୟୀ ଜମିଦାରମାନେ ରଇତଙ୍କ ଉପରେ ଅତିରିକ୍ତ ଅତ୍ୟାଚାର କରୁଥିଲେ । ତେଣୁ ଗଭର୍ଣ୍ଣର ଜେନେରାଲ ଲର୍ଡ଼ କର୍ଣ୍ଣୱାଲିସ୍ ଜମିଦାରୀ ପ୍ରଥାର ସଂସ୍କାରବିଧାନ କଲେ ।

ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳନ:—କର୍ଣ୍ଣୱାଲିସ୍ ନିଜେ ଇଂଲଣ୍ଡର ଜଣେ ବିଶିଷ୍ଟ ଜମିଦାର ଥିଲେ । ଇଂରେଜୀ ଛାଞ୍ଚରେ ଭାରତରେ ସେ ଏକ ଜମିଦାରଶ୍ରେଣୀ ଗଠନ କରିବାକୁ ଚେଷ୍ଟାକଲେ । କର୍ଣ୍ଣୱାଲିସ୍ ବୁଝିଥିଲେ ଯେ, ଅଳ୍ପଦିନ ପାଇଁ ଜମିଦାରୀର ମାଲିକ ହୋଇ କେହି ଜମିର ଉତ୍କର୍ଷ ସାଧନ ଲାଗି ଯତ୍ନବାନ୍ ହେବେ ନାହିଁ । ଅସ୍ଥାୟୀ ଜମିଦାରମାନେ ନିଶ୍ଚୟ ପ୍ରଜାମାନଙ୍କୁ ଶୋଷଣ କରିବେ ଏବଂ ପ୍ରଜାମାନଙ୍କୁ ଅତ୍ୟାଚାରରୁ ରକ୍ଷାକରିବା କଷ୍ଟକର ହେବ । କର୍ଣ୍ଣୱାଲିସ୍ ଭାବିଥିଲେ, ଚିରସ୍ଥାୟୀ

ବନ୍ଦୋବସ୍ତ ଫଳରେ ଦେଶରେ ଏକ ରାଜଭକ୍ତ ଅଭିଜାତ ସମ୍ପ୍ରଦାୟର ସୃଷ୍ଟିହେବ, ସେମାନେ ସରକାରଙ୍କୁ ସାହାଯ୍ୟ କରିବେ ଓ ନିଜ ଜମିଦାରୀର ଉନ୍ନତି ପ୍ରତି ଧ୍ୟାନ ଦେବେ । ସରକାରୀ ରାଜସ୍ୱ ଆଦାୟରେ ମଧ୍ୟ ସୁବିଧା ଘଟିବ । ୧୭୮୯ ଖ୍ରୀଷ୍ଟାବ୍ଦରେ କର୍ଣ୍ଣୱାଲିସ୍ ପ୍ରଥମେ ଦଶବର୍ଷ ପାଇଁ ବନ୍ଦୋବସ୍ତ ଆରମ୍ଭ କଲେ । ସାର୍ ଜନ ସୋର୍ ନାମକ ଜଣେ ଅଭିଜ୍ଞବ୍ୟକ୍ତି ତାଙ୍କୁ ଏ ଦିଗରେ ବିଶେଷ ସାହାଯ୍ୟ କରିଥିଲେ । ୧୭୯୩ ଖ୍ରୀଷ୍ଟାବ୍ଦରେ ଏହି ଦଶବର୍ଷିଆ ବନ୍ଦୋବସ୍ତ ଚିରସ୍ଥାୟୀ ବନ୍ଦୋବସ୍ତରେ ପରିଣତ ହେଲା । ସୋର୍ ଚିରସ୍ଥାୟୀ ବନ୍ଦୋବସ୍ତର ବିରୋଧୀ ଥିଲେ, ମାତ୍ର କର୍ଣ୍ଣୱାଲିସ୍ ତାଙ୍କର ପ୍ରତିବାଦ ଅଗ୍ରାହ୍ୟ କଲେ । ଚିରସ୍ଥାୟୀ ବନ୍ଦୋବସ୍ତ ବଙ୍ଗ, ବିହାର ଓ ଓଡ଼ିଶାରେ ପ୍ରଚଳିତ ହେଲା । ଜମିଦାରମାନେ ଜମିର ସ୍ଥାୟୀ ମାଲିକ ହେଲେ, ରାଜସ୍ୱ ପରିମାଣ ଚିରଦିନ ପାଇଁ ନିର୍ଦ୍ଦିଷ୍ଟ କରିଦିଆଗଲା । ଜମିଦାର ପଦ ବଂଶାନୁକ୍ରମିକ ହେଲା । ପ୍ରତିବର୍ଷ ଚୈତ୍ରମାସର ଶେଷ ଦିବସରେ ସୂର୍ଯ୍ୟାସ୍ତ ପୂର୍ବରୁ କମ୍ପାନୀସରକାରଙ୍କୁ ରାଜସ୍ୱ ପ୍ରଦାନ କରିବାକୁ ହେବ ବୋଲି ବିଧାନ ପ୍ରଣୟନ କରାଗଲା ।

**ଚିରସ୍ଥାୟୀ ବନ୍ଦୋବସ୍ତର ଫଳାଫଳ**:—ଚିରସ୍ଥାୟୀ ବନ୍ଦୋବସ୍ତ କେତେକ ବିଷୟରେ ସୁଫଳପ୍ରଦ ହୋଇଥିଲା ଓ ଅନ୍ୟ କେତେକ ଦିଗରେ ତାର କୁଫଳ ମଧ୍ୟ ପ୍ରକାଶ ପାଇଥିଲା । ଏହି ବ୍ୟବସ୍ଥା ପ୍ରବର୍ତ୍ତନ କରି ସରକାର ଜନପ୍ରିୟ ହୋଇ ପାରିଥିଲେ । ବଙ୍ଗଦେଶ ଧନୀ ଓ ସମୃଦ୍ଧିଶାଳୀ ଦେଶରେ ପରିଣତ ହୋଇଥିଲା । ଜମିଦାରମାନେ ସ୍ଥାୟୀ ଅଧିକାର ଲାଭକରି ଜମିଦାରୀର ଉନ୍ନତି କରିବାକୁ ଯତ୍ନବାନ୍ ହୋଇଥିଲେ । ଇଂଲଣ୍ଡର ସାମନ୍ତ ପ୍ରଥା (Feudal System)ର ଅନୁକରଣରେ ଏହି ଜମିଦାରୀ ପ୍ରଥା

ପ୍ରବର୍ତ୍ତିତ ହୋଇଥିଲା । ଇଂଲଣ୍ଡର ଅନୁରକ୍ତ ସାମନ୍ତଦଳ ଭଳି ଭାରତରେ ଏକ ସାମନ୍ତଦଳ ଗଠିତ ହୋଇ ସରକାର ପ୍ରତି ଅନୁରକ୍ତ ରହିଲେ । ସାମାଜିକ କ୍ଷେତ୍ରରେ ସେମାନଙ୍କର ବିଶେଷ ପ୍ରଭୁତ୍ୱ ଓ ପ୍ରତିପତ୍ତି ପ୍ରତିଷ୍ଠିତ ହେଲା । ଏହି ଅଭିଜାତ ସମ୍ପ୍ରଦାୟ ବଙ୍ଗଳାର ନାନା ଉନ୍ନତି କରିଯାଇଅଛନ୍ତି । ଜମିଦାରମାନେ ଶାନ୍ତିଶୃଙ୍ଖଳା ପ୍ରତିଷ୍ଠା ଦିଗରେ ସରକାରଙ୍କୁ ସାହାଯ୍ୟ କଲେ । ରାଜସ୍ୱ ନିର୍ଦ୍ଦିଷ୍ଟ ହେବାରୁ ସରକାରର ଆୟବ୍ୟୟ ବ୍ୟବସ୍ଥା ପୂର୍ବାପେକ୍ଷା ଅନେକ ପରିମାଣରେ ସୁଗମ ହେଲା ।

ମାତ୍ର ଚିରସ୍ଥାୟୀ ବନ୍ଦୋବସ୍ତର ଅନେକ ଦୋଷତ୍ରୁଟି ରହିଗଲା । ଏହାଦ୍ୱାରା ରୟତମାନଙ୍କ ସ୍ୱାର୍ଥ ସଂରକ୍ଷିତ ହେଲା ନାହିଁ । ପୂର୍ବରୁ ଜମିରେ କୃଷକ ଥିଲା ସ୍ୱତ୍ୱସମ୍ପନ୍ନ, ସେ ସ୍ୱତ୍ୱ ଜମିଦାର ହାତକୁ ଗୁଲିଗଲା । ଜମିଦାର ଇଚ୍ଛା କଲେ ପ୍ରଜାଙ୍କୁ ଜମିରୁ ଉଚ୍ଛେଦ କରି ପାରିଲେ ଓ ଜମିର ଖଜଣା ବୃଦ୍ଧିକରି ପାରିଲେ । ଜମିଦାରଙ୍କ ଉତ୍ପୀଡ଼ନରୁ ପ୍ରଜାମାନଙ୍କୁ ରକ୍ଷା କରିବାର କୌଣସି ବିଧି ବ୍ୟବସ୍ଥା ରହିଲା ନାହିଁ । ଏଥିପାଇଁ ପରବର୍ତ୍ତୀକାଳରେ ଅନେକ "ପ୍ରଜାସ୍ୱତ୍ୱ ଆଇନ" ପ୍ରଣୟନ କରିବାକୁ ପଡ଼ିଥିଲା । ଚିରସ୍ଥାୟୀ ବନ୍ଦୋବସ୍ତ ଫଳରେ ଜମିର ମୂଲ୍ୟ ବୃଦ୍ଧି ପାଇଲେ ସୁଦ୍ଧା ସରକାରର ରାଜସ୍ୱବୃଦ୍ଧି ଘଟିଲା ନାହିଁ । ଜମିଦାରମାନଙ୍କର ଅନେକ ସୁବିଧା ହେଲା ସତ, କିନ୍ତୁ ସୂର୍ଯ୍ୟାସ୍ତ ଆଇନ ଜାରି ହେବା ଫଳରେ ବହୁ ଜମିଦାର ଠିକ୍ ସମୟରେ ରାଜସ୍ୱ ଦାଖଲ କରି ନ ପାରି ସର୍ବସ୍ୱାନ୍ତ ହେଲେ ।

ବର୍ତ୍ତମାନ କାଳରେ ଜାତୀୟ ସରକାର ପ୍ରତିଷ୍ଠା ଫଳରେ ଭାରତରୁ ଏହି ଜମିଦାରୀ ପ୍ରଥା ଲୋପ ପାଇଛି । ଜମିଦାରମାନଙ୍କୁ କ୍ଷତିପୂରଣ ଦେଇ ସରକାର ଜମିଦାରୀମାନ ନିଜ ହାତକୁ ନେଇ

ଯାଇଛନ୍ତି । ପ୍ରଜାମାନଙ୍କ ସହିତ ସରକାରଙ୍କର ପ୍ରତ୍ୟକ୍ଷ ସମ୍ପର୍କ ପ୍ରତିଷ୍ଠିତ ହୋଇଅଛି ।

ବ୍ରିଟିଶ୍‌ଶାସନରେ ସାମାଜିକ ସଂସ୍କାରः—ପୂର୍ବରୁ କୁହାଯାଇଛି ଯେ, ସାମାଜିକ ଓ ଧର୍ମଗତ ବିଷୟରେ ବ୍ରିଟିଶ୍ ସରକାର ମୂଳରୁ ନିରପେକ୍ଷ ନୀତି ଅବଲମ୍ବନ କରିଥିଲେ ମଧ୍ୟ କିଛି ଦିନ ପରେ ତାହା ତ୍ୟାଗ କରିବାକୁ ପଡ଼ିଲା । ମାନବିକତା ଦୃଷ୍ଟିରୁ ଇଂରେଜ ଶାସକମାନଙ୍କୁ ଦିନେ କେତେକ ଗର୍ହିତ ସାମାଜିକ ପ୍ରଥା ଓ ଧର୍ମଗତ କୁସଂସ୍କାରରେ ହସ୍ତକ୍ଷେପ କରିବାକୁ ହେଲା । ପ୍ରଗତିଶୀଳ ଭାରତୀୟ ସଂସ୍କାରକମାନଙ୍କ ସହଯୋଗରେ ସେମାନେ ତାର ଉଚ୍ଛେଦ ସାଧନ କରିବାକୁ ଦୃଢ଼-ସଂକଳ୍ପ ହେଲେ । ଏ ଦିଗରେ ଗଭର୍ଣ୍ଣର ଜେନେରାଲ ଲର୍ଡ଼ ଉଇଲିୟମ ବେଣ୍ଟିଙ୍କ୍ ପ୍ରଶଂସନୀୟ ଉଦ୍ୟମ କରି ଯଶସ୍ୱୀ ହୋଇଅଛନ୍ତି । ତାଙ୍କ ସମୟରେ ଅନେକ ଗୁଡ଼ିଏ ସାମାଜିକ ସଂସ୍କାର ପ୍ରବର୍ତ୍ତିତ ହୋଇଥିଲା ।


ବେଣ୍ଟିଙ୍କ୍

ବେଣ୍ଟିଙ୍କ୍ ୧୮୨୮ରୁ ୧୮୩୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶାସନ ଦାୟିତ୍ୱରେ ଥିଲେ । ସତୀଦାହ ନିବାରଣ ତାଙ୍କ ଅମଳର ଏକ ଗୁରୁତ୍ୱପୂର୍ଣ୍ଣ ସମାଜସଂସ୍କାର । ବହୁ କାଳରୁ ସତୀଦାହ ପ୍ରଥା ହିନ୍ଦୁ ସମାଜରେ ଚଳି ଆସୁଥିଲା । ପ୍ରଥମେ ପ୍ରଥମେ ଶାସ୍ତ୍ର ଓ ସମାଜର ନିର୍ଦ୍ଦେଶ ମାନି ସଦ୍ୟବିଧବା ସ୍ୱେଚ୍ଛାପୂର୍ବକ ଏହି ମୃତ୍ୟୁ ବରଣ କରୁଥିଲା । ଶାସ୍ତ୍ରରେ ଲେଖାଥିଲା ଯେ, ସତୀରମଣୀ ସ୍ୱାମୀର ଚିତାନଳରେ ପ୍ରାଣ

ବିସର୍ଜ୍ଜନ କଲେ ସ୍ୱର୍ଗରେ ସ୍ୱାମୀସହ ଅନନ୍ତ ସୁଖଭୋଗ କରିବ; କେବଳ ସେତିକି ନୁହେଁ, ତାର ଚିତାରୋହଣ ଫଳରେ ସ୍ୱାମୀ-ପରିବାର ତିନି ପୁରୁଷପର୍ଯ୍ୟନ୍ତ ସମସ୍ତ ପାପରୁ ନିସ୍ତାର ଲାଭ କରିବ । ଏହି ସ୍ୱେଚ୍ଛାମରଣ ଅବଶେଷରେ ଏକ ନିଷ୍ଠୁର ଲୋକାଚାରରେ ପରିଣତ ହୋଇଥିଲା । ମୃତବ୍ୟକ୍ତିର ଆତ୍ମୀୟ ସ୍ୱଜନବର୍ଗ ଅନେକ ସମୟରେ ତାର ବିଧବା ପତ୍ନୀକୁ ବଳପୂର୍ବକ ସହମୃତା ହେବାକୁ ବାଧ୍ୟ କରୁଥିଲେ । ମଧ୍ୟ-ଯୁଗରେ ସମ୍ରାଟ ଅକବର ଏହି ନୃଶଂସ ପ୍ରଥା ଦମନ କରିବାକୁ ଚେଷ୍ଟା କରିଥିଲେ, ମାତ୍ର ସେ ଚେଷ୍ଟା ବିଶେଷ ଫଳବତୀ ହୋଇ ନ ଥିଲା । ପରେ ଖ୍ରୀଷ୍ଟାନ ପାଦ୍ରୀମାନେ ଏ ଦିଗରେ ଉଦ୍ୟମ କରି ବ୍ୟର୍ଥମନୋରଥ ହୋଇଥିଲେ । ୧୮୨୯ ଖ୍ରୀଷ୍ଟାବ୍ଦରେ ଲର୍ଡ଼ ଉଇଲିୟମ ବେଣ୍ଟିଙ୍କ ଦୃଢ଼ତାର ସହିତ କଠୋର ଆଇନ ପ୍ରଣୟନ କରି ଏହି ନିର୍ଦ୍ଦୟ ପ୍ରଥାର ଲୋପ ସାଧନ କରିଥିଲେ । ରାଜା ରାମମୋହନ ରାୟ ଓ ଦ୍ୱାରକାନାଥ ଠାକୁର ପ୍ରଭୃତି ସଂସ୍କାରକମାନେ ତାଙ୍କୁ ଏ କାର୍ଯ୍ୟରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ବେଣ୍ଟିଙ୍କ୍ ଆଉ ଗୋଟିଏ କାର୍ଯ୍ୟ କରି ସ୍ମରଣୀୟ ହୋଇଅଛନ୍ତି । ତାହା ଠଗଦମନ । ଠଗ ନାମକ ଏକ ଭୀଷଣ ଦସ୍ୟୁଦଳ ସେତେବେଳେ ପ୍ରାୟ ସାରା ଭାରତରେ ଆତଙ୍କ ବିସ୍ତାର କରିଥିଲେ । ସେମାନେ ତୀର୍ଥଯାତ୍ରୀ ଓ ପଥିକମାନଙ୍କୁ ହତ୍ୟା କରି ସେମାନଙ୍କର ସମସ୍ତ ଜିନିଷ ଲୁଣ୍ଠନ କରି ନେଉଥିଲେ । ବେଣ୍ଟିଙ୍କ୍ ମେଜରସ୍ଲିମାନଙ୍କ ସାହାଯ୍ୟରେ ଏହି ଠଗଦଳଙ୍କୁ ମୂଳପୋଚ୍ଛ କରିଥିଲେ ।

ଶିକ୍ଷାସଂସ୍କାରଃ—ଲର୍ଡ଼ ଉଇଲିୟମ ବେଣ୍ଟିଙ୍କ୍ ଶିକ୍ଷାକ୍ଷେତ୍ରରେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ସଂସ୍କାର ପ୍ରବର୍ତ୍ତନ କରିଥିଲେ । ତାଙ୍କ ସମୟରେ ଇଂରେଜୀ ଭାଷା ଓ ପାଶ୍ଚାତ୍ୟ ବିଜ୍ଞାନ ଶିକ୍ଷା ପାଇଁ ଭାରତରେ ପ୍ରବଳ ଆନ୍ଦୋଳନ ଚାଲିଥିଲା । ତାହା ଫଳରେ ଦେଶରେ ଦୁଇଟି ପରସ୍ପର

ବିରୋଧୀ ଦଳର ଆବିର୍ଭାବ ଘଟିଥିଲା, ଯଥା:—ପ୍ରାଚ୍ୟଦଳ ଓ ପାଶ୍ଚାତ୍ୟଦଳ । ପାଶ୍ଚାତ୍ୟଦଳ ଇଂରେଜୀ ଶିକ୍ଷାର ପକ୍ଷପାତୀ ଥିଲେ । ରାଜା ରାମମୋହନ ଓ ଲର୍ଡ଼ ମେକ୍‌ଲେ ଏହି ଦଳକୁ ପ୍ରବଳ ଭାବରେ ସମର୍ଥନ କରିଥିଲେ । ପ୍ରାଚ୍ୟଦଳ ସଂସ୍କୃତ, ଆରବୀ ଓ ଫାର୍ସୀ ଭାଷା ଶିକ୍ଷାର ପକ୍ଷପାତୀ ଥିଲେ ଏବଂ ସେମାନଙ୍କୁ ସମର୍ଥନ କରୁଥିଲେ ସାର୍ ଉଇଲିୟମ ଜୋନ୍‌ସ, ହୋରେସ୍ ଉଇଲସନ ଓ ରାଜା ରାଧାକାନ୍ତ ଦେବ ପ୍ରଭୃତି । ଅବଶେଷରେ ପାଶ୍ଚାତ୍ୟଦଳ ଜୟଲାଭ କରିଥିଲେ । ଲର୍ଡ଼ ଉଇଲିୟମ ବେଣ୍ଟିଙ୍କ୍ ସ୍ଥିର କରିଥିଲେ ଯେ ସରକାର ପାଶ୍ଚାତ୍ୟ ଶିକ୍ଷା ବିସ୍ତାର ଦିଗରେ ଅର୍ଥବ୍ୟୟ କରିବେ । ପାଶ୍ଚାତ୍ୟ ଚିକିତ୍ସା-ବିଜ୍ଞାନ ଶିକ୍ଷା ଦେବା ପାଇଁ ୧୮୩୫ ଖ୍ରୀଷ୍ଟାବ୍ଦରେ କଲିକତାରେ ମେଡ଼ିକାଲ କଲେଜ ପ୍ରତିଷ୍ଠା କରାଗଲା ।

ବେଣ୍ଟିଙ୍କଙ୍କ ପୂର୍ବରୁ ମଧ୍ୟ ଇଂରେଜମାନେ କେତେକ ସାମାଜିକ ସଂସ୍କାର ପ୍ରବର୍ତ୍ତନ କରିଥିଲେ । ଭାରତର କେତେକ ଅଞ୍ଚଳରେ ଶିଶୁହତ୍ୟା ପ୍ରଥା ପ୍ରଚଳିତ ଥିଲା । ବଙ୍ଗ ଦେଶରେ ସନ୍ତାନହୀନା ରମଣୀମାନେ ବହୁ ସନ୍ତାନବତୀ ହେବା ପାଇଁ ଗଙ୍ଗାଦେବୀଙ୍କ ଉଦ୍ଦେଶ୍ୟରେ ମାନସିକ କରୁଥିଲେ ଏବଂ ପ୍ରଥମ ଶିଶୁ ସନ୍ତାନକୁ ଗଙ୍ଗା ମୁହାଣରେ ବିସର୍ଜ୍ଜନ କରୁଥିଲେ । ରାଜପୁତ, ଜାଠ ଓ ମେୱାଟି ଜାତିର ଲୋକେ ସହରରେ କନ୍ୟାବିବାହ ସମ୍ପନ୍ନ କରିପାରିବେ ନାହିଁ ବୋଲି ଶିଶୁ କନ୍ୟାକୁ ବିଷ ଦେଇ ମାରି ଦେଉଥିଲେ । ୧୭୯୫, ୧୮୦୨ ଓ ୧୮୦୪ ଖ୍ରୀଷ୍ଟାବ୍ଦରେ ଆଇନ ପ୍ରଣୟନ କରାଯାଇ ଏହା ବନ୍ଦ କରିବାକୁ ସରକାରଙ୍କ ତରଫରୁ ଉଦ୍ୟମ ହୋଇଥିଲା । ଏହି ସବୁ ଉଦ୍ୟମ ବିଶେଷ ଫଳପ୍ରଦ ହୋଇ ନ ଥିଲା । ଅବଶେଷରେ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ପ୍ରଭାବ ଫଳରେ ଉକ୍ତ ନିଷ୍ଠୁର ପ୍ରଥା ସବୁ ଧୀରେ ଧୀରେ ଲୋପ ପାଇଗଲା ।

ଅମ ଓଡ଼ିଶାରେ ଭନ୍ଧ ଜାତିର ଲୋକେ ବିଶ୍ୱାସ କରୁଥିଲେ ଯେ, ଜମିରେ ନରବଳି ଦେଲେ ତାର ଉର୍ବରତା ବଢ଼େ ଓ ବସୁଧା ସନ୍ତୁଷ୍ଟ ହୋଇ ପ୍ରଚୁର ଶସ୍ୟ ପ୍ରଦାନ କରେ । ପ୍ରଥମ ଲର୍ଡ଼ ହାର୍ଡ଼ିଞ୍ଜଙ୍କ ସମୟରେ ଏହି ନରବଳି ପ୍ରଥା ବନ୍ଦ କରିବାକୁ ଚେଷ୍ଟା କରାହୋଇଥିଲା, ମାତ୍ର ତାହା ବିଶେଷ ଫଳବତୀ ହୋଇ ନ ଥିଲା । କ୍ୟାମ୍ପବେଲ (**Campbell**) ଓ ଅନ୍ୟାନ୍ୟ କର୍ମଚାରୀଙ୍କ ପ୍ରବଳ ଉଦ୍ୟମ ଫଳରେ ୧୮୪୭ ଓ ୧୮୫୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ନରବଳି ପ୍ରଥା ଏ ଦେଶରୁ ଲୋପ ପାଇଲା ।

**ଲର୍ଡ ଡେଲହାଉସୀ:**—ଲର୍ଡ଼ ବେଣ୍ଟିଙ୍କଙ୍କ ସମୟରେ ଯେପରି ନାନାବିଧ ସଂସ୍କାର ପ୍ରବର୍ତ୍ତିତ ହୋଇଥିଲା, ଭାରତର ଅନ୍ୟ ଜଣେ ଗଭର୍ଣ୍ଣର ଜେନେରାଲ ଲର୍ଡ଼ ଡେଲହାଉସୀଙ୍କ ସମୟରେ ମଧ୍ୟ ସେହିପରି କେତେକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଘଟିଥିଲା । ଡେଲହାଉସୀ ୧୮୪୮ ଖ୍ରୀ:ରୁ ୧୮୫୬ ଖ୍ରୀ: ପର୍ଯ୍ୟନ୍ତ ଭାରତର ବଡ଼ଲାଟ ଥିଲେ । ତାଙ୍କ ଶାସନକାଳ ଆଧୁନିକ ଭାରତ ଇତିହାସର ଏକ ସ୍ମରଣୀୟ ସମୟ । ସମାଜ ସଂସ୍କାର, ଅର୍ଥନୈତିକ ବିକାଶ ଏବଂ ଶିକ୍ଷୋନ୍ନତି ଦିଗରେ ସେ ଯଥେଷ୍ଟ ଦୃଷ୍ଟି ଦେଇଥିଲେ ।



ଡେଲହାଉସୀ

ତାଙ୍କ ସମୟରେ ବିଧବା ବିବାହ ପ୍ରଶ୍ନ ନେଇ ବିଶେଷ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ସ୍ୱନାମଧନ୍ୟ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଏହି ଆନ୍ଦୋଳନକୁ ସାଫଲ୍ୟମଣ୍ଡିତ କରିଥିଲେ । ତାଙ୍କ ଚେଷ୍ଟା ଫଳରେ

ଡେଲହାଉସୀଙ୍କ ଶାସନ କାଳରେ ବିଧବାବିବାହ ଆଇନ ପ୍ରଚଳିତ ହୋଇଥିଲା । ତତ୍‌କାଳୀନ ହିନ୍ଦୁସମାଜରେ ବିଧବା ବିବାହ ନିଷିଦ୍ଧ ଥିଲା । ବିଧବାମାନଙ୍କୁ ନାନା ଅସୁବିଧା ଭୋଗ କରିବାକୁ ପଡ଼ୁଥିଲା । ଈଶ୍ୱରଚନ୍ଦ୍ର ନାନା ଯୁକ୍ତି ଓ ଶାସ୍ତ୍ରୀୟ ପ୍ରମାଣ ଦେଖାଇ ବିଧବା ବିବାହ ଶାସ୍ତ୍ରସମ୍ମତ ବୋଲି ପ୍ରମାଣ କରିଥିଲେ । ଲର୍ଡ଼ ଡେଲହାଉସୀଙ୍କ ସମୟରେ ତାହା ଆଇନ ସମ୍ମତ ହୋଇଥିଲା । ତାଙ୍କର ସମୟରେ ଅନ୍ୟ ଗୋଟିଏ ଆଇନ ମଧ୍ୟ ପ୍ରଚଳିତ ହୋଇଥିଲା, ଯାହା ଫଳରେ ଧର୍ମାନ୍ତର ଗ୍ରହଣ କରି ସୁଦ୍ଧା ଲୋକ ପୈତୃକ ସମ୍ପତ୍ତି ଉପରେ ନିଜର ଉତ୍ତରାଧିକାର ବଜାୟ ରଖି ପାରିଲା ।

ଡେଲହାଉସୀ ଭାରତରେ ରେଳପଥ ନିର୍ମାଣ ଆରମ୍ଭ କରିଥିଲେ । ତାଙ୍କ ସମୟରେ ଟେଲିଗ୍ରାଫ୍‌ର ପ୍ରଚଳନ ମଧ୍ୟ ଆରମ୍ଭ ହୋଇଥିଲା । ଡାକବିଭାଗର ଉନ୍ନତି କରି ସେ ଚିଠିପତ୍ର ସାମାନ୍ୟ ଦୁଇ ପଇସା ମାସୁଲ୍‌ରେ ଭାରତର ଯେ କୌଣସି ସ୍ଥାନକୁ ପ୍ରେରିତ ହେବା ବ୍ୟବସ୍ଥା କରିଥିଲେ । ଡେଲହାଉସୀଙ୍କ ସମୟରେ ପୂର୍ତ୍ତବିଭାଗ ନାମକ ଏକ ନୂତନ ବିଭାଗ ଖୋଲା ହୋଇଥିଲା । କଲିକତାଠାରୁ ପଞ୍ଜାବ ପର୍ଯ୍ୟନ୍ତ ଗ୍ରାଣ୍ଡ୍‌ଟ୍ରଙ୍କରୋଡ଼୍ ନାମକ ଏକ ଦୀର୍ଘପଥ ନିର୍ମାଣ ତାଙ୍କର ଅନ୍ୟ ଏକ ବିଶିଷ୍ଟ କୀର୍ତ୍ତି । ପ୍ରସିଦ୍ଧ ଗଙ୍ଗା କେନାଲ୍ ତାଙ୍କ ସମୟରେ ସମ୍ପୂର୍ଣ୍ଣ ହୋଇଥିଲା । ଡେଲ୍‌ହାଉସୀ ଶିକ୍ଷାର ଉନ୍ନତିବିଧାନ ପାଇଁ ସ୍କୁଲ୍, କଲେଜମାନ ସ୍ଥାପନ କରିଥିଲେ ଓ ସବୁ ପ୍ରଦେଶରେ ଶିକ୍ଷାବିଭାଗ ( **Departments of Public Instruction** ) ନାମକ ଏକ ସ୍ୱତନ୍ତ୍ର ସୁନିୟନ୍ତ୍ରିତ ବିଭାଗ ଖୋଲିଥିଲେ । ଏହି ସବୁ ଜନହିତକର କାର୍ଯ୍ୟ ଫଳରେ ଭାରତରେ ନବଯୁଗର ସୂତ୍ରପାତ ହୋଇଥିଲା ।

ଡେଲହାଉସୀ କେବଳ ଜନହିତକର ସଂସ୍କାରମାନ ପ୍ରବର୍ତ୍ତନ କରି ନ ଥିଲେ, ସେ ମଧ୍ୟ ନାନା ଉପାୟରେ ରାଜ୍ୟ ବିସ୍ତାର କରିବାକୁ ସମର୍ଥ ହୋଇଥିଲେ । ତାଙ୍କ ସମୟରେ ଭାରତରେ ବ୍ରିଟିଶ ସାମ୍ରାଜ୍ୟ ସୁଦୂର ପ୍ରସାରିତ ହୋଇ ପାରିଥିଲା । ଇଂରେଜ ଅଧିପତ୍ୟ ପୂର୍ଣ୍ଣ ପ୍ରତିଷ୍ଠା କରିବାର ଗୌରବ ଡେଲହାଉସୀଙ୍କ ପ୍ରାପ୍ୟ । ଯୁଦ୍ଧଦ୍ୱାରା ସେ ପଞ୍ଜାବର ଶିଖରାଜ୍ୟ ଓ ବ୍ରହ୍ମଦେଶର ପେଗୁ ଜୟ କରିଥିଲେ ଏବଂ ସ୍ୱତ୍ୱଲୋପନୀତି ପ୍ରୟୋଗ କରି ସତାରା, ଝାନ୍ସି, ନାଗପୁର, ସମ୍ବଲପୁର ପ୍ରଭୃତି ଇଂରେଜ ସାମ୍ରାଜ୍ୟଭୁକ୍ତ କରିଥିଲେ । ଡେଲହାଉସୀଙ୍କର ଦୃଢ଼ ଧାରଣା ଥିଲା ଯେ, ଦେଶୀୟ ରାଜାମାନଙ୍କର ଶାସନ ଅପେକ୍ଷା ଇଂରେଜଶାସନ ବହୁ ଗୁଣରେ ଶ୍ରେୟସ୍କର । ତେଣୁ ସେ କୁଶାସନର ଦୋହାଇ ଦେଇ, ଅଯୋଧ୍ୟାର ନବାବ ଉଅଜିଦ ଅଲ୍ଲୀଙ୍କୁ ସିଂହାସନଚ୍ୟୁତ କରି ଅଯୋଧ୍ୟା ରାଜ୍ୟ ହସ୍ତଗତ କରିଥିଲେ ଏବଂ ବିଶ୍ୱାସଘାତକତାର ଦୋହାଇ ଦେଇ ସିକିମ ରାଜ୍ୟର କେତେକାଂଶ ଅଧିକାର କରି ନେଇଥିଲେ । ସେ ଯାହାହେଉ, ଭାରତ ପକ୍ଷରେ ଡେଲହାଉସୀଙ୍କ ଶାସନର ଗୁରୁତ୍ୱ, ରାଜ୍ୟ ବୃଦ୍ଧିରେ ନୁହେଁ, ଯୁଗ ପ୍ରବର୍ତ୍ତନକାରୀ ଦେଶୋନ୍ନତିକର କାର୍ଯ୍ୟ କଳାପରେ ନିହିତ ।

**ଜାତୀୟତାର ବିକାଶ**:—ବିଦେଶୀଶାସନ ହିଁ ଜାତୀୟ ଚେତନା ଆଣେ । ସାମ୍ରାଜ୍ୟବାଦ ଜାତୀୟତା ଉଦ୍ରେକ କରେ । ପରାଧୀନତାର ଅପମାନ କୌଣସି ଜାତି ଚିରଦିନ ସହ୍ୟ କରିପାରେ ନାହିଁ । ବିଦେଶୀ ଶାସନ ବିରୁଦ୍ଧରେ ନିଶ୍ଚୟ ହିଁ ପ୍ରତିକ୍ରିୟା ଘଟେ । ଆମ ଭାରତରେ ବିଦେଶୀ ବ୍ରିଟିଶ୍ ସରକାର ବିରୁଦ୍ଧରେ ତାହାହିଁ ଘଟିଥିଲା । ବ୍ରିଟିଶ୍ ଶାସନ ପୂର୍ବରୁ ଏ ଦେଶରେ ମୋଗଲ୍ ରାଜତ୍ୱ ପ୍ରଚଳିତ ଥିଲା । ମୋଗଲ୍‌ମାନେ ବିଦେଶରୁ ଆସିଥିଲେ

ସୁଦ୍ଧା, ଭାରତବର୍ଷକୁ ସେମାନେ ସ୍ୱଦେଶ ବୋଲି ଗ୍ରହଣ କରି ନେଇଥିଲେ । ମୁସଲମାନ ଧର୍ମାବଲମ୍ବୀ ହୋଇ ମଧ୍ୟ ସେମାନେ କୌଣସି ମୁସଲମାନ ଦେଶକୁ ସ୍ୱଦେଶ ବୋଲି ମନେକରୁ ନ ଥିଲେ । ଭାରତର ସମ୍ପଦ ଶୋଷଣକରି ସେମାନେ ତାହା ଅନ୍ୟ କୌଣସି ଦେଶକୁ ବୋହି ନେଇ ନ ଥିଲେ । ମୋଗଲ ସମ୍ରାଟମାନେ ଥିଲେ ଭାରତର ଜାତୀୟ ସମ୍ରାଟ । ଏପରି କି, କୋରାନ୍ ନୀତିରେ ଶାସନ ପରିଚାଳନା କରିବାର ଏକାନ୍ତ ପକ୍ଷପାତୀ ସମ୍ରାଟ୍ ଅଉରଙ୍ଗଜେବ ସୁଦ୍ଧା ନିଜକୁ ଅନ୍ୟ ଦେଶର ଲୋକ ବୋଲି ମନେ କରୁ ନ ଥିଲେ ।

ପକ୍ଷାନ୍ତରେ ଭାରତର ବ୍ରିଟିଶ୍ ଶାସକମାନେ ଥିଲେ ଖାଣ୍ଟି ବୈଦେଶିକଶାସକ । ସେମାନେ ଭାରତକୁ ନିଜର ଦେଶ ବୋଲି ମନେ କରୁ ନ ଥିଲେ । ଭାରତର ଧନ ସମ୍ପଦରେ ସେମାନେ ନିଜ ଦେଶର ସମୃଦ୍ଧିସାଧନ କରିବାକୁ ଚେଷ୍ଟା କରୁଥିଲେ । କି ବାଣିଜ୍ୟରେ, କି ଦେଶ ଶାସନରେ, ଏହି ଶୋଷଣ ନୀତି ଥିଲା ସେମାନଙ୍କର ପ୍ରଧାନ ନୀତି । ଅତି କୌଶଳରେ ଏବଂ ଅତି ଚତୁରତା ସହିତ ବ୍ରିଟିଶ ଶାସକବର୍ଗ ଓ ଇଂଲଣ୍ଡର ରାଜସରକାର ଉକ୍ତ ନୀତି ପ୍ରୟୋଗ କରିଥିଲେ । ବଦାନ୍ୟତାର ଆବରଣ ତଳେ ବ୍ରିଟିଶଶାସନ ପ୍ରକୃତରେ ଏହି ସ୍ୱାର୍ଥପର ନୀତିଦ୍ୱାରା ପରିଚାଳିତ ହେଉଥିଲା । ଇଂରେଜମାନେ ଦେଶରୁ ଅଶାନ୍ତି, ଅରାଜକତା ଓ ବିଶୃଙ୍ଖଳା ଦୂର କରି ତା ସ୍ଥାନରେ ଶାନ୍ତିଶୃଙ୍ଖଳା ପ୍ରତିଷ୍ଠା କରିଥିବାରୁ ଭାରତୀୟମାନେ ବ୍ରିଟିଶ ଶାସନକୁ ପ୍ରଥମେ ସ୍ୱାଗତ କରିଥିଲେ ଏବଂ ଶ୍ରଦ୍ଧା ଚକ୍ଷୁରେ ଦେଖିଥିଲେ, ମାତ୍ର କ୍ରମେ କ୍ରମେ ସେମାନେ ଏ ବିଦେଶୀ ଶାସନର ପ୍ରକୃତ ରୂପ ଦେଖି ପାରିଲେ ଏବଂ ଶାସନ ବ୍ୟାପାରରେ ସ୍ୱାଧିକାର ପ୍ରତିଷ୍ଠା ପାଇଁ ଉଦ୍ୟମ କଲେ । ଦେଶରେ ଜାତୀୟ ଜାଗରଣ ଦେଖାଦେଲା ଓ ଜାତୀୟ

ଆନ୍ଦୋଳନର ସୂତ୍ରପାତ ହେଲା । ଭାରତରେ ଇଂରେଜୀ ଶିକ୍ଷାର ବିସ୍ତାର ଏହାକୁ ବିଶେଷ ଭାବରେ ସାହାଯ୍ୟ କଲା । ଧୀରେ ଧୀରେ ବିକାଶଲାଭ କରି ଏହି ଜାତୀୟ ଆନ୍ଦୋଳନ ଅବଶେଷରେ ଏକ ଅହିଂସା ସ୍ୱାଧୀନତା ସଂଗ୍ରାମରେ ପରିଣତ ହେଲା । ଏହା ଫଳରେ ଭାରତ ୧୯୪୭ ଖ୍ରୀଷ୍ଟାବ୍ଦରେ ସ୍ୱାଧୀନତା ଲାଭ କଲା ।

୧୮୫୭ ଖ୍ରୀଷ୍ଟାବ୍ଦର ଜାତୀୟ ବିକ୍ଷୋଭ :—ଏହି ସ୍ୱାଧୀନତା ଲାଭର ଠିକ୍ ୯୦ ବର୍ଷ ପୂର୍ବେ ଭାରତରେ ବ୍ରିଟିଶ ଶାସନ ବିରୁଦ୍ଧରେ ଏକ ବ୍ୟାପକ ହିଂସାତ୍ମକ ବିପ୍ଳବ ଦେଖା ଦେଇଥିଲା । ଏହା ସାଧାରଣତଃ "ସିପାହୀ ବିଦ୍ରୋହ" (Sepoy Mutiny) ନାମରେ ପରିଚିତ । ଇଂରେଜ ଐତିହାସିକମାନେ ଏହାକୁ ଏପରି ଆଖ୍ୟା ଦେଇଅଛନ୍ତି । ମୁଖ୍ୟତଃ କମ୍ପାନୀର ସିପାହୀମାନେ ଅବଶ୍ୟ କମ୍ପାନୀ ବିରୁଦ୍ଧରେ ସଶସ୍ତ୍ର ବିଦ୍ରୋହ କରିଥିଲେ, ତଥାପି ଏହାକୁ କେବଳ ସିପାହୀମାନଙ୍କର ବିଦ୍ରୋହ ବୋଲି କହିବା ଯୁକ୍ତିଯୁକ୍ତ ନୁହେଁ । ପ୍ରସିଦ୍ଧ ଆଧୁନିକ ଭାରତୀୟ ଐତିହାସିକମାନଙ୍କ ମଧ୍ୟରୁ କେହି କେହି ଏହାକୁ "ପ୍ରଥମ ଭାରତୀୟ ମୁକ୍ତି ସଂଗ୍ରାମ" ( First war of Indian Independence ) ନାମରେ ଅଭିହିତ କରିଅଛନ୍ତି । * ଏହାର ଉଦ୍ଦେଶ୍ୟ ଥିଲା ଭାରତରୁ ଇଂରେଜମାନଙ୍କୁ

---

* "All were united in the object they had in view. the expulsion of the British and the recovery of national independence. In that sense the 'mutiny' was no mutiny at all, but a great national uprising"—A Survey of Indian History by Sardar Pannikar.

ବିତାଡ଼ିତ କରି ଜାତୀୟ ସ୍ୱାଧୀନତା ପୁନଃପ୍ରତିଷ୍ଠା କରିବା । ନାନା କାରଣରୁ ଉକ୍ତ ବିପ୍ଳବ ଆରମ୍ଭ ହୋଇଥିଲା । ତନ୍ମଧ୍ୟରୁ କେତେକ ରାଜନୈତିକ, କେତେକ ସାମାଜିକ, କେତେକ ଅର୍ଥନୈତିକ, କେତେକ ଧର୍ମଗତ ଏବଂ ଅନ୍ୟ କେତେକ ସାମରିକ । ଲର୍ଡ଼ ଡେଲହାଉସୀଙ୍କ ସମୟରେ ଅନେକ ଦେଶୀୟ ରାଜ୍ୟ ଇଂରେଜ ସାମ୍ରାଜ୍ୟଭୁକ୍ତ ହୋଇଥିଲା ଏବଂ ଅନେକ ଲୋକଙ୍କର ବୃତ୍ତି ଲୋପ କରାଯାଇଥିଲା । ଦିଲ୍ଲୀର ମୋଗଲ୍ ବାଦଶାହଙ୍କୁ ତାଙ୍କ ରାଜପ୍ରାସାଦରୁ ତଡ଼ିଦେବା ପାଇଁ କଳ୍ପନା-ଜଳ୍ପନା ଚାଲିଥିଲା । ଏହା ଫଳରେ ଦେଶରେ ଘୋର ଉତ୍ତେଜନା ସୃଷ୍ଟି ହୋଇଥିଲା । ଅଯୋଧ୍ୟା ଇଂରେଜ ଶାସନାଧୀନ ହେବାରୁ ଏବଂ ମୋଗଲ୍ ବାଦଶାହଙ୍କର ଗୌରବହ୍ରାସ ଘଟିବାରୁ ମୁସଲମାନ ସମ୍ପ୍ରଦାୟ ବଡ଼ ବ୍ୟଥିତ ହୋଇଥିଲେ । ଦ୍ୱିତୀୟ ବାଜୀରାଓଙ୍କ ପୋଷ୍ୟପୁତ୍ର ନାନା ସାହେବ ପୈତୃକ ବୃତ୍ତିଭୋଗରୁ ବଞ୍ଚିତ ହେବାରୁ ହିନ୍ଦୁ ସମ୍ପ୍ରଦାୟ ମଧ୍ୟ ଅସନ୍ତୁଷ୍ଟ ହୋଇ ପଡ଼ିଥିଲେ ।

ରାଜ୍ୟଚ୍ୟୁତ ରାଜାମାନଙ୍କ ପୋଷ୍ୟ ଓ ଅନୁଚରବର୍ଗ ଏବଂ ସେମାନଙ୍କ ସୈନ୍ୟସାମନ୍ତାଦି କର୍ମଚ୍ୟୁତ ହୋଇ ଅସୀମ ଆର୍ଥିକ ଦୁର୍ଗତି ଭୋଗ କରିଥିଲେ । ରାଜ୍ୟଚ୍ୟୁତ ରାଜାମାନଙ୍କର ଦୁର୍ଦ୍ଦଶା ଦେଖି ଅନ୍ୟ ରାଜାମାନେ ମଧ୍ୟ ମନେ ମନେ ଘୋର ଆଶଙ୍କା ପୋଷଣ କରିଥିଲେ । ଝାନ୍ସୀର ରାଜା ମରିଯିବାରୁ ତାଙ୍କର ରାଣୀ ଲକ୍ଷ୍ମୀବାଈ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ଇଚ୍ଛା କରିଥିଲେ, କିନ୍ତୁ ଡେଲହାଉସୀଙ୍କ ରାଜ୍ୟସ୍ୱତ୍ୱଲୋପ ନୀତି ଫଳରେ ସେ ଉକ୍ତ ଅଭିଳାଷ ପୂର୍ଣ୍ଣ କରି ପାରି ନ ଥିଲେ । ତାଙ୍କ ରାଜ୍ୟ ଇଂରେଜମାନେ ଅଧିକାର କରି ନେଇଥିଲେ । ଏହିପରି ଭାବରେ ଡେଲହାଉସୀଙ୍କ ରାଜ୍ୟ-

ଲପ୍ସା, ସ୍ୱତ୍ୱଲୋପ ନୀତି, ବୃତ୍ତିବିଲୋପ ପ୍ରଭୃତି ଦେଶରେ ଭୀଷଣ ଅତୃପ୍ତି ଜାତ କରିଥିଲା । ଅଳ୍ପତ୍ର ସେତେବେଳେ ବ୍ରିଟିଶ ସରକାର ବିରୁଦ୍ଧରେ ଘୋର ବିଦ୍ୱେଷ ପ୍ରଚାର କରିଥିଲେ । ସେମାନଙ୍କ ମଧ୍ୟରେ ବିଶିଷ୍ଟ ଥିଲେ ଅଯୋଧ୍ୟାର ରାଜ୍ୟଚ୍ୟୁତ ନବାବଙ୍କ ମନ୍ତ୍ରୀ ଅହମ୍ମଦଉଲ୍ଲା, ପୂର୍ବୋକ୍ତ ନାନାସାହେବ, ନାନାସାହେବଙ୍କ ଭ୍ରାତୃଷ୍ପୁତ୍ର ରାଓ ସାହେବ, ତାଙ୍କର ସେନାପତି ତାଣ୍ଡିଆ ଟୋପି, ଝାନ୍ସୀର ରାଣୀ ଲକ୍ଷ୍ମୀବାଈ, ବିହାର ଅନ୍ତର୍ଗତ ଜଗଦୀଶପୁରର ରାଜପୁତ ରାଜା କୁନୱାରସିଂହ ଓ ମୋଗଲ ସମ୍ରାଟ୍ ବାହାଦୁରସାହଙ୍କ ଅତ୍ମୀୟ ଫିରୋଜ ସାହ ।



ଲକ୍ଷ୍ମୀବାଈ

ଡେଲହାଉସୀଙ୍କ ଜନହିତକର କାର୍ଯ୍ୟଗୁଡ଼ିକୁ ସୁଦ୍ଧା ଭାରତୀୟମାନେ ସନ୍ଦେହ ଚକ୍ଷୁରେ ଦେଖିଥିଲେ । ରେଲରାସ୍ତା ନିର୍ମାଣ, ଡାକ ଓ ତାରବାର୍ତ୍ତା ପ୍ରଚଳନ, ଇଂରେଜୀ ଶିକ୍ଷାର ବିସ୍ତାର ପ୍ରଭୃତି ଦେଖି ସେମାନେ ମନେ କରିଥିଲେ, ଇଂରେଜମାନେ ଭାରତକୁ ଦ୍ୱିତୀୟ ଇଂଲଣ୍ଡରେ ପରିଣତ କରିବାକୁ ଚାହାଁନ୍ତି । ଏହି ସମୟରେ ଖ୍ରୀଷ୍ଟଧର୍ମର ପ୍ରଚାରକମାନେ ଉକ୍ତ ଧର୍ମର ଶ୍ରେଷ୍ଠତ୍ୱ

ପ୍ରଚାର କରି ବୁଲୁଥିଲେ ଏବଂ ଲୋକଙ୍କୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ପ୍ରବର୍ତ୍ତାଉଥିଲେ । ଏହା ଫଳରେ ଲୋକଙ୍କ ସନ୍ଦେହ ଘନୀଭୂତ ହୋଇଥିଲା । ଏତଦ୍‌ବ୍ୟତୀତ ବେଣ୍ଟିକ୍‌ଙ୍କ ସାମାଜିକ ସଂସ୍କାର ଓ ଓ ଡେଲହାଉସୀଙ୍କ ଅମଳର ବିଧବା ବିବାହ ଆଇନ ପ୍ରଚଳନ ଫଳରେ ଜନସାଧାରଣଙ୍କ ମନରେ ଏକ ଧାରଣା ଜାତ ହୋଇଥିଲା ଯେ, ଇଂରେଜମାନେ ଭାରତୀୟମାନଙ୍କର ଧର୍ମ ଓ ସଂସ୍କୃତିକୁ ଲୋପ କରିଦେବାକୁ ଚାହାନ୍ତି । ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ମଧ୍ୟ ଭାରତୀୟ ଲୋକେ ପୈତୃକ ସମ୍ପତ୍ତିର ଉତ୍ତରାଧିକାରୀ ହୋଇ ପାରିବେ ବୋଲି ସେତେବେଳେ ଏକ ଆଇନ ପ୍ରଚଳିତ ହୋଇଥିଲା । ଏହି ଆଇନ ଭାରତୀୟମାନଙ୍କର ସନ୍ଦେହକୁ ଆହୁରି ଦୃଢ଼ୀଭୂତ କରିଥିଲା ।

ଏ ସମସ୍ତ ସନ୍ଦେହ ଓ ଅସନ୍ତୋଷ ସତ୍ତ୍ୱେ, ଯଦି କମ୍ପାନୀର ଭାରତୀୟ ସୈନିକବର୍ଗ ବା ସିପାହୀମାନେ କମ୍ପାନୀ ପ୍ରତି ଅନୁରକ୍ତ ରହିଥାନ୍ତେ, ତେବେ ଭାରତରେ ଗୁରୁତର ବିପ୍ଳବ ଘଟି ନ ଥାନ୍ତା । କିନ୍ତୁ ନାନା କାରଣରୁ ସିପାହୀଦଳ ମଧ୍ୟ କମ୍ପାନୀ ଉପରେ ବିରକ୍ତ ହୋଇ ଉଠିଥିଲେ । ଦ୍ୱିତୀୟ ବ୍ରହ୍ମସମର ସମୟରେ ସେମାନଙ୍କୁ ସମୁଦ୍ର ପାର ହୋଇ ବ୍ରହ୍ମଦେଶକୁ ଯିବାକୁ ବାଧ୍ୟ କରାହୋଇଥିଲା । ସିପାହୀମାନଙ୍କ ମଧ୍ୟରେ ଅନେକ ହିନ୍ଦୁଧର୍ମାବଲମ୍ବୀ ଥିଲେ । ସେମାନଙ୍କର ବିଶ୍ୱାସ ଥିଲା ଯେ, ସମୁଦ୍ର ଅତିକ୍ରମ କଲେ ଜାତି-ଧର୍ମ ନଷ୍ଟ ହୁଏ । ସେଥିପାଇଁ ସେମାନେ ଅସନ୍ତୁଷ୍ଟ ହୋଇ ଉଠିଥିଲେ । ତାଛଡ଼ା, ଦୂର ଦେଶରେ ଯାଇ ଯୁଦ୍ଧ କରିବାକୁ ହେଲେ ସିପାହୀମାନେ ସେଥିପାଇଁ ଅଧିକ ବେତନ ଦାବି କରୁଥିଲେ, ମାତ୍ର କମ୍ପାନୀ ସରକାର ସେଥିପ୍ରତି ଆଦୌ କର୍ଣ୍ଣପାତ କରି ନ ଥିଲା । ସୈନ୍ୟବିଭାଗର ସୁଦକ୍ଷ ଭାରତୀୟ ଅଫିସରମାନଙ୍କର ପଦୋନ୍ନତି କରାଯାଉ ନ ଥିଲା । ପକ୍ଷାନ୍ତରରେ ୭୦ ବର୍ଷର ବୃଦ୍ଧ ଅପାରଗ ଇଂରେଜ ସେନାପତି

କ

ଗଡ଼ଉଇନଙ୍କୁ ଦ୍ୱିତୀୟ ବ୍ରହ୍ମସମର ବେଳେ ମୁଖ୍ୟଦାୟିତ୍ୱ ପ୍ରଦାନ କରାହୋଇଥିଲା । କମ୍ପାନୀର ସୈନ୍ୟବିଭାଗରେ ଭାରତୀୟ ସିପାହୀଙ୍କ ସଂଖ୍ୟା ଗୋରା ସିପାହୀଙ୍କ ତୁଳନାରେ ଖୁବ୍ ବେଶୀ ଥିଲା । ତେଣୁ ଭାରତୀୟ ସିପାହୀମାନେ ମନେ କରୁଥିଲେ ଯେ, ଭାରତରେ ବ୍ରିଟିଶ ସାମ୍ରାଜ୍ୟର ନିରାପତ୍ତା କେବଳ ସେମାନଙ୍କ ଉପରେ ନିର୍ଭର କରେ ।

ଏହି ଧାରଣା ମଧ୍ୟ ସେମାନଙ୍କୁ ବିଦ୍ରୋହ କରିବାକୁ ଉତ୍ସାହିତ କରିଥିଲା । ମାତ୍ର ବିଦ୍ରୋହର ପ୍ରତ୍ୟକ୍ଷ କାରଣ ଉପସ୍ଥିତ ହେଲା ଏନ୍‌ଫିଲ୍‌ଡ଼ ରାଇଫଲ୍ ନାମକ ଏକ ନୂତନ ବନ୍ଧୁକର ପ୍ରଚଳନ ଯୋଗୁଁ । ପଶୁଚର୍ବି ବୋଳାଯାଇ ଉକ୍ତ ବନ୍ଧୁକ-ଟୋଟା ପ୍ରସ୍ତୁତ କରା-ହେଉଥିଲା । ବନ୍ଧୁକରେ ଗୁଳି ଭର୍ତ୍ତି କରିବାବେଳେ ଟୋଟାର ଚର୍ବିବୋଳା ଆବରଣ ଦାନ୍ତରେ ଛିଣ୍ଡାଇବାକୁ ପଡ଼ୁଥିଲା । ହିନ୍ଦୁ ଓ ମୁସଲମାନ ସିପାହୀମାନଙ୍କର ସନ୍ଦେହ ଜାତ ହୋଇଥିଲା ଯେ, ସେମାନଙ୍କର ଧର୍ମ ନଷ୍ଟ କରିବା ଉଦ୍ଦେଶ୍ୟରେ ଇଂରେଜମାନେ ସେଥିରେ ଗୋରୁ ଓ ଘୁଷୁରିର ଚର୍ବି ବୋଳିଛନ୍ତି । ଏହି ସନ୍ଦେହ ଫଳରେ ସେମାନଙ୍କ ମନରେ ବିଦ୍ରୋହ ଅଗ୍ନି ପ୍ରଚଣ୍ଡ ଭାବରେ ଜଳି ଉଠିଥିଲା ।

**ବିଦ୍ରୋହର ବ୍ୟାପ୍ତି**:—୧୮୫୭ ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ବାରାକ୍‌ପୁର ଓ ବରହମ୍‌ପୁରଠାରେ ପ୍ରଥମେ ସିପାହୀବିଦ୍ରୋହ ପ୍ରକାଶ ପାଇଲା ଏବଂ ତାହା ଶୀଘ୍ର ଦମନ କରାଗଲା । ମାତ୍ର ଉକ୍ତ ବର୍ଷ ମେ ମାସର ଦଶ ତାରିଖରେ ମିରଟଠାରେ ତାହା ପ୍ରଚଣ୍ଡ ଆକାର ଧାରଣ କଲା । ବିଦ୍ରୋହୀ ସିପାହୀଦଳ କେତେକ ଇଉରୋପୀୟ କର୍ମଚାରୀଙ୍କୁ ହତ୍ୟା କରି ସେମାନଙ୍କର ବାସଗୃହ ପୋଡ଼ିଦେଲେ ଓ କାରାଗାରରୁ ବନ୍ଦୀମାନଙ୍କୁ ମୁକ୍ତ କରିଦେଲେ । ବିଦ୍ରୋହାଗ୍ନି ଲକ୍ଷ୍ନୌ, ଦିଲ୍ଲୀ,

କାନପୁର, ବେରଲି, ଝାନ୍‌ସୀ ପ୍ରଭୃତି ସ୍ଥାନକୁ କ୍ଷିପ୍ରଗତିରେ ବ୍ୟାପି ଗଲା । ଆମ ଓଡ଼ିଶାର **ସୁରେନ୍ଦ୍ର ସାଏ** ମଧ୍ୟ ଏହି ବିଦ୍ରୋହରେ ଯୋଗଦେଇଥିଲେ । ନାନାସାହେବ କାନପୁରଠାରେ ନିଜକୁ ପେଶବା ବୋଲି ଘୋଷଣା କଲେ । ଦ୍ୱିତୀୟ ବାହାଦୁରଶାହ "ଭାରତର ସମ୍ରାଟ୍" ବୋଲି ବିପ୍ଳବୀମାନଙ୍କ ଦ୍ୱାରା ଘୋଷିତ ହେଲେ । ଭାରତରେ ବ୍ରିଟିଶ ସାମ୍ରାଜ୍ୟ ଏକପ୍ରକାର ଟଳମଳ ହେବାକୁ ଆରମ୍ଭ କଲା ।

ସେତେବେଳେ **ଲର୍ଡ଼ କ୍ୟାନିଂ** ଭାରତର ବଡ଼ଲାଟ ଥିଲେ । ଏହି ଗୁରୁତର ବିପଦରେ ସେ ଧୈର୍ଯ୍ୟଚ୍ୟୁତ ହୋଇ ନ ଥିଲେ । ଦିଲ୍ଲୀ, ଲକ୍ଷ୍ନୌ, କାନପୁର, ବେରଲି,ଝାନ୍‌ସୀ ସବୁଆଡ଼େ ବିଦ୍ରୋହ ଦମିତ ହେଲା । ନିକଲସନ, ଆଉଟ୍ରାମ, ଲରେନ୍‌ସ, କ୍ୟାମ୍ପବେଲ, ହେଭ୍‌ଲକ୍ ପ୍ରଭୃତି ବିଚକ୍ଷଣ ଇଂରେଜ ସେନାପତିମାନେ ବିଦ୍ରୋହ ଦମନ କଲେ । ନାନାସାହେବ ଓ ତାଙ୍କ ସେନାପତି ତାନ୍ତିଆ ଟୋପି ପଳାଇଗଲେ । ବିଦ୍ରୋହ ସମୟରେ ସେ ଅତ୍ୟନ୍ତ ନିଷ୍ଠୁରତା ଓ ବିଶ୍ୱାସ-ଘାତକତାର କାର୍ଯ୍ୟ କରି-ଥିଲେ । ପ୍ରଥମେ ସେ କାନ-ପୁରର ଇଂରେଜମାନଙ୍କୁ ଆଶ୍ୱାସନା ଦେଇଥିଲେ ଯେ, ସେମାନଙ୍କୁ


ଲର୍ଡ଼ କ୍ୟାନିଂ

ନିର୍ବିପଦରେ ଆଲ୍ଲାହାବାଦକୁ ପଠାଇ ଦିଆଯିବ, କିନ୍ତୁ ସେମାନେ ଯେତେବେଳେ ଗଙ୍ଗା ନଦୀ ପାରି ହେବାକୁ ଆରମ୍ଭ କଲେ ସେତେବେଳେ ସେମାନଙ୍କୁ ନଦୀକୂଳରୁ ଗୁଳି କରି ମାରି ଦିଆଗଲା । ପ୍ରାୟ ଦୁଇ ଶହ ଇଂରେଜ ରମଣୀ ଓ ଶିଶୁ ଗୋଟିଏ ସ୍ଥାନରେ ଆଶ୍ରୟ ନେଇଥିଲେ । ସେମାନଙ୍କୁ ସୁଦ୍ଧା ଖଣ୍ଡିରେ ହାଣି ଦିଆଗଲା ଓ ସେମାନଙ୍କ ଶବ ନେଇ ନିକଟବର୍ତ୍ତୀ ଏକ କୂପରେ ନିକ୍ଷେପ କରାଗଲା । ଝାନ୍ସୀର ରାଣୀ ଲକ୍ଷ୍ମୀବାଈ ଯୁଦ୍ଧ ଭୂମିରେ ପ୍ରାଣ ଦେଲେ । ଇଂରେଜ ସେନାପତି ସାର୍ ହିଉ ରୋଜ୍‌ଙ୍କ ମତରେ ବିଦ୍ରୋହୀ ନେତୃବର୍ଗଙ୍କ ମଧ୍ୟରେ ବୀରତ୍ୱ ଓ ଯୋଗ୍ୟତା ବିଷୟରେ ଅନ୍ୟ କେହି ତାଙ୍କର ସମକକ୍ଷ ନଥିଲେ । ଲକ୍ଷ୍ମୀବାଈ ଇଉରୋପୀୟଙ୍କ ହତ୍ୟା ବ୍ୟାପାରରେ କେବେ ହେଲେ ଲିପ୍ତ ନ ଥିଲେ । ବୃଦ୍ଧ ସମ୍ରାଟ ବାହାଦୁର ଶାହ ରେଙ୍ଗୁନକୁ ନିର୍ବାସିତ ହେଲେ । ଚାରି ବର୍ଷ ପରେ ତାଙ୍କର ସେଠାରେ ମୃତ୍ୟୁ ହେଲା । ସିପାହୀବିଦ୍ରୋହ ଅବଶେଷରେ ଏକ ବ୍ୟର୍ଥ ପ୍ରୟାସରେ ପରିଣତ ହେଲା ।

ବିଦ୍ରୋହୀମାନଙ୍କର ଦୃଢ଼ ସଂଗଠନ ନଥିଲା । ସେମାନଙ୍କ ମଧ୍ୟରେ ସୁଦକ୍ଷ ନେତାର ଅଭାବ ଥିଲା । ସିପାହୀବିଦ୍ରୋହ ଭାରତୀୟ ଜନସାଧାରଣଙ୍କର ଆନ୍ତରିକ ସହଯୋଗ ଲାଭ କରିପାରି ନ ଥିଲା । ତାହାକୁ କୌଣସି ମତେ ଗଣ-ଅଭ୍ୟୁତ୍ଥାନ ବୋଲି କହିହେବନାହିଁ । କେବଳ ଅଯୋଧ୍ୟା ରାଜ୍ୟରେ ଏହା ଏକ ଗଣବିପ୍ଳବର ଆକାରଧାରଣ କରିଥିଲା । ପଞ୍ଜାବର ଶିଖ ଜାତି ଓ ନେପାଳର ଗୁର୍ଖା ଜାତି ଏଥିରେ ଅଂଶ ଗ୍ରହଣ କରି ନ ଥିଲେ । ଏ ସମସ୍ତ ଛଡ଼ା, ସମଗ୍ର ଭାରତର ସିପାହୀମାନେ ସୁଦ୍ଧା ଏଥିରେ ଯୋଗ ଦେଇ ନ ଥିଲେ । ଅନ୍ୟ ପକ୍ଷରେ ଇଂରେଜ ସେନାପତିମାନେ ବଡ଼ ବିଚକ୍ଷଣ ଥିଲେ ଓ ଇଂରେଜମାନଙ୍କ ହାତରେ ଉପଯୁକ୍ତ ଯୁଦ୍ଧୋପକରଣ ଥିଲା ।

ରେଲ୍ ଓ ଟେଲିଗ୍ରାଫ ସାହାଯ୍ୟରେ ସେମାନେ ସହଜରେ ସମ୍ବାଦ-ପ୍ରେରଣ ଓ ସୈନ୍ୟ ପରିଚାଳନା କରି ପାରିଥିଲେ ।

**ଭାରତୀୟ ସମାଜ ଉପରେ ସିପାହୀ ବିଦ୍ରୋହର ପ୍ରଭାବ:**—ସିପାହୀବିଦ୍ରୋହ ବ୍ୟର୍ଥ ହୋଇଥିଲା ସତ, କିନ୍ତୁ ଏହା ଭାରତୀୟ ସମାଜ ଉପରେ ବହୁ ପରିମାଣରେ ପ୍ରଭାବ ପକାଇବାକୁ ସମର୍ଥ ହୋଇଥିଲା । ଭାରତୀୟମାନଙ୍କ ମନରେ ଏହା ଜାତୀୟ ଚେତନା ଆଣି ଦେଇଥିଲା । ବିଦେଶୀ ସରକାର ବିରୁଦ୍ଧରେ ଏହା ଅଶ୍ରଦ୍ଧା ଓ ତିକ୍ତତା ଅନେକ ପରିମାଣରେ ସୃଷ୍ଟି କରିଥିଲା । ବିଶେଷତଃ, ବିଦ୍ରୋହ ଦମନବେଳେ ଇଂରେଜମାନଙ୍କର ନିର୍ମମ ବ୍ୟବହାର ଦେଶରେ ଆତଙ୍କର ଢେଉ ଖେଳାଇ ଦେଇଥିଲା । କେତେକ ଇଂରେଜ କର୍ମଚାରୀ ନାନାସାହେବଙ୍କୁ ମଧ୍ୟ ନିର୍ମମତାରେ ଅତିକ୍ରମ କରି ଯାଇଥିଲେ । ନିଲ୍ (Neill) ନାମକ ଜଣେ ଇଂରେଜ ସେନାପତି ଆଲ୍ଲାହାବାଦଠାରୁ କାନପୁର ପର୍ଯ୍ୟନ୍ତ ଗତି କଲାବେଳେ ଏତେ ଲୋକଙ୍କୁ ଫାଶି ଦେଇଥିଲେ ଯେ ରାସ୍ତା ପାର୍ଶ୍ୱରେ ଗୋଟାଏ ସୁଦ୍ଧା ଗଛ ବାଦ୍ ପଡ଼ି ନ ଥିଲା ଯହିଁରେ ଲୋକ ଫାଶି ପାଇ ନ ଥିଲେ । ଏଭଳି ଦାରୁଣ ଦୃଶ୍ୟ ଜନସମାଜରେ କି ପରିମାଣରେ ଘୃଣ୍ୟ ଓ ଆତଙ୍କ ସୃଷ୍ଟି କରିପାରେ ତାହା ସହଜରେ ଅନୁମେୟ ।

ସିପାହୀବିଦ୍ରୋହ ଦମିତ ହେଲା ପରେ ଇଂଲଣ୍ଡର ସରକାର ଏକ ବଣିକଦଳ ହାତରେ ଭାରତ ଶାସନ ଛାଡ଼ିଦେବା ଆଉ ଉଚିତ ମନେ କଲେ ନାହିଁ । ସେହି ଦିନଠାରୁ କମ୍ପାନୀ ଶାସନର ଅବସାନ ଘଟିଲା । ବ୍ରିଟିଶ ପାର୍ଲାମେଣ୍ଟରେ ଏକ ଆଇନ ପାସ୍ ହେଲା । ତଦନୁସାରେ ଇଂଲଣ୍ଡର ରାଣୀ ଭିକ୍ଟୋରିଆ ଭାରତ ଶାସନ ନିଜ ହାତକୁ ନେଲେ । ଭାରତର ଗଭର୍ଣ୍ଣର ଜେନେରାଲ୍ ତାଙ୍କର ପ୍ରତିନିଧି

(Viceroy) ରୂପେ ଶାସନ ପରିଚାଳନା କଲେ । ଭିକ୍ଟୋରିଆ ଘୋଷଣା କଲେ ଯେ, ଧର୍ମ ଓ ସମାଜସମ୍ବନ୍ଧୀୟ ବିଷୟରେ ସରକାର ନିରପେକ୍ଷ ରହିବେ, ଦେଶୀୟ ରାଜାମାନେ ପୋଷ୍ୟପୁତ୍ର ଗ୍ରହଣ କରିପାରିବେ ଓ ଜାତିଧର୍ମ ନିର୍ବିଶେଷରେ ଓ ଯୋଗ୍ୟତା ଅନୁସାରେ ଭାରତବାସୀଙ୍କୁ ରାଜକାର୍ଯ୍ୟରେ ନିଯୁକ୍ତ କରାଯିବ (ଖ୍ରୀ: ୧୮୫୮) । ଭାରତୀୟ ସମାଜ ଏ ଘୋଷଣା ଫଳରେ ବହୁ ପରିମାଣରେ ଆଶ୍ୱସ୍ତ ହେଲା । ଭାରତରେ ଶାନ୍ତି ଫେରି ଆସିଲା । ଇତି ମଧ୍ୟରେ ବ୍ରିଟିଶ ସରକାର ପ୍ରତି ଏ ଦେଶରେ ଯେଉଁ ଅଶ୍ରଦ୍ଧା ଜାତହୋଇଥିଲା ତାହା କେତେକ ପରିମାଣରେ ତୁଟିଗଲା । **ଭିକ୍ଟୋରିଆଙ୍କୁ** ଲୋକେ ମାତୃବତ୍ ଜ୍ଞାନ କଲେ । ତାଙ୍କ ଘୋଷଣାପତ୍ରକୁ ଏକ **ମହାସନନ୍ଦ** (Magna Charta) ବୋଲି କୁହାଗଲା । ଭାରତ ଶାସନରେ ଭାରତୀୟମାନଙ୍କର ରୀତିନୀତି, ଆଚାର-ବ୍ୟବହାର ଓ ଧର୍ମବିଶ୍ୱାସ ପ୍ରତି ଯେ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରାଯିବ ଏହା ଘୋଷଣା କରି ଭିକ୍ଟୋରିଆ ଭାରତୀୟମାନଙ୍କର ମୌଳିକ ଅଧିକାର ସ୍ୱୀକାର କରିଥିଲେ ।



ମହାରାଣୀ ଭିକ୍ଟୋରିଆ

**ସ୍ଥାନୀୟ ସ୍ୱାୟତ୍ତଶାସନର ବିକାଶ:**—ସ୍ଥାନୀୟ ସ୍ୱାୟତ୍ତଶାସନ ଭାରତରେ ନୂଆ ନୁହେଁ । ବହୁ ପ୍ରାଚୀନ କାଳରୁ ଏହା ଆମ ଦେଶରେ ଚାଲି ଆସୁଥିଲା । ପୃଥିବୀର ଅନ୍ୟତ୍ର ଏହି ସ୍ୱାୟତ୍ତଶାସନ ନୀତି ଏତେ ପରିମାଣରେ ପ୍ରଚଳିତ ନ ଥିଲା । ଭାରତର ଗ୍ରାମ ଓ

ନଗରଗୁଡ଼ିକ ଗୋଟିଏ ଗୋଟିଏ କ୍ଷୁଦ୍ର ସ୍ୱାୟତ୍ତଶାସିତ ରାଜ୍ୟଂଭଳି ଥିଲା । ଗ୍ରାମବାସୀ ବା ନଗରବାସୀମାନେ ସ୍ୱାସ୍ଥ୍ୟ-ସ୍ୱାସ୍ଥ୍ୟ, ରାସ୍ତା-ଘାଟର ସୁବିଧା, ବିବାଦ-ନିଷ୍ପତ୍ତି ଓ ଶାନ୍ତିରକ୍ଷା ପ୍ରତି ଦୃଷ୍ଟି ଦେଉଥିଲେ । ଖ୍ୟାତନାମା ମୋଗଲ ବାଦଶାହମାନଙ୍କ ରାଜତ୍ୱର ଶେଷ ପର୍ଯ୍ୟନ୍ତ ଭାରତରେ ଏହି ସ୍ୱାୟତ୍ତଶାସନ ପ୍ରତିଷ୍ଠିତ ଥିଲା । ମୋଗଲ ସାମ୍ରାଜ୍ୟ ଭାଙ୍ଗିଗଲା ପରେ ନଗରରୁ ସ୍ୱାୟତ୍ତଶାସନ ଏକାବେଳକେ ଲୋପ ପାଇଲା ଏବଂ ଗ୍ରାମମାନଙ୍କରେ ମଧ୍ୟ ତାହା ନିତାନ୍ତ ଦୁର୍ବଳ ହୋଇ ପଡ଼ିଲା ।

ବ୍ରିଟିଶ୍ ସରକାର ଅମଳରେ ପ୍ରଥମେ ପ୍ରଥମେ କୌଣସି ବିଧିବଦ୍ଧ ନିର୍ଦ୍ଦିଷ୍ଟ ସ୍ୱାୟତ୍ତଶାସନ ବ୍ୟବସ୍ଥା ନ ଥିଲା । କ୍ରମେ କ୍ରମେ ଉକ୍ତ ବ୍ୟବସ୍ଥା ପ୍ରବର୍ତ୍ତିତ ହେଲା । ଇଂରେଜୀଶିକ୍ଷାପ୍ରାପ୍ତ ଭାରତୀୟ-ମାନେ ସ୍ୱାୟତ୍ତଶାସନ ପାଇଁ ଉତ୍ତରୋତ୍ତର ଆଗ୍ରହୀ ହୋଇ ଉଠିଲେ । **ଲର୍ଡ଼ ରିପନଙ୍କ** ଶାସନ କାଳରେ ସ୍ୱାୟତ୍ତଶାସନ ନୀତି ଉପଯୁକ୍ତ ଭାବରେ କାର୍ଯ୍ୟକାରୀ ହେଲା । ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଭାରତବାସୀଙ୍କର ରାଜନୈତିକ ଚେତନା ଜାଗ୍ରତ ହୋଇଥିବାର ଦେଖି ଲର୍ଡ଼ ରିପନ ସେମାନଙ୍କ ଆଶା-ଆକାଙ୍କ୍ଷା ପୂରଣ କରିବାକୁ ଯତ୍ନବାନ ହେଲେ । ରିପନ ୧୮୮୦ ଖ୍ରୀଷ୍ଟାବ୍ଦରୁ ୧୮୮୪ ଖ୍ରୀ: ପର୍ଯ୍ୟନ୍ତ ଭାରତର ବଡ଼ଲାଟ ଥିଲେ ।


ଲର୍ଡ଼ରିପନ୍

ତାଙ୍କ ପୂର୍ବରୁ ସ୍ଥାନୀୟ ସ୍ୱାୟତ୍ତଶାସନ ସାମାନ୍ୟ ପରିମାଣରେ ପ୍ରବର୍ତ୍ତିତ ହୋଇଥିଲା । ସେଥିରେ ଯାହା ଦୋଷ ତ୍ରୁଟି ଥିଲା ତାହା ଦୂର କରି ରିପନ୍ ସ୍ୱାୟତ୍ତଶାସନ ପ୍ରବର୍ତ୍ତନ କଲେ । ନିର୍ବାଚିତ ଜନପ୍ରତିନିଧିଙ୍କ ଦ୍ୱାରା ଲୋକ ସାଧାରଣ ସ୍ଥାନୀୟ ସ୍ୱାୟତ୍ତଶାସନ ଅନୁଷ୍ଠାନ ଚଳାଇବେ, ଏହି ମତର ବଶବର୍ତ୍ତୀ ହୋଇ ସେ କେତେଗୁଡ଼ିଏ ଆଇନ କଲେ । ତଦନୁସାରେ ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ଜିଲ୍ଲାବୋର୍ଡ଼ ଓ ଲୋକାଲ ବୋର୍ଡ଼ମାନ ପ୍ରତିଷ୍ଠିତ ହେଲା ଏବଂ ସେଗୁଡ଼ିକ ଉପରେ ସ୍ଥାନୀୟ ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତାଘାଟ ନିର୍ମାଣ ଓ ତାହାର ରକ୍ଷଣାବେକ୍ଷଣର ଭାର ରହିଲା । ଉକ୍ତ ମତ ଅନୁସାରେ ମଧ୍ୟ ସହରର ମ୍ୟୁନିସିପାଲଟିମାନ ଗଠିତ ହେଲା । ୧୮୮୨ ଖ୍ରୀଷ୍ଟାବ୍ଦରେ ଏହି ନିର୍ବାଚନ ବ୍ୟବସ୍ଥା ଭାରତରେ ପ୍ରବର୍ତ୍ତିତ ହେଲା । ଭାରତୀୟମାନେ ସ୍ୱାୟତ୍ତଶାସନ ଅନୁଷ୍ଠାନମାନଙ୍କ ପରିଚାଳନାରେ ରହି ଶାସନ ବିଷୟରେ ଅଭିଜ୍ଞତା ଅର୍ଜନ କଲେ । ସ୍ୱାୟତ୍ତଶାସନ ଆଇନ-ପ୍ରବର୍ତ୍ତନ ଲର୍ଡ଼ ରିପନଙ୍କର ଶ୍ରେଷ୍ଠ କୀର୍ତ୍ତି ।

**ଭାରତୀୟ ଶିଳ୍ପ:**—ବ୍ରିଟିଶ ଶାସନ ପୂର୍ବରୁ ଭାରତ ଶିଳ୍ପକ୍ଷେତ୍ରରେ ସମୃଦ୍ଧିଶାଳୀ ଥିଲା । କାର୍ପାସ, ରେଶମ ଓ ପଶମ ଶିଳ୍ପର ବିଶେଷ ଉନ୍ନତି ଘଟିଥିଲା । ବଙ୍ଗଳା, ଲକ୍ଷ୍ନୌ, ଆହ୍ଲାବାଦ, ନାଗପୁର, ମଦୁରା ପ୍ରଭୃତି କାର୍ପାସ ଶିଳ୍ପର ପ୍ରସିଦ୍ଧ କେନ୍ଦ୍ର ଥିଲା । ପଞ୍ଜାବ ଓ କାଶ୍ମୀର ଅଞ୍ଚଳରେ ଖୁବ୍ ସୁନ୍ଦର ଶାଲ ତିଆରି ହେଉଥିଲା । ବାରାଣସୀ, ପୁନା, ନାସିକ, ଅହମଦାବାଦ ଏବଂ ଓଡ଼ିଶାର ବିଭିନ୍ନ ସ୍ଥାନରେ ସୁନ୍ଦର କଂସା ଓ ପିତ୍ତଳର ବାସନ ତିଆରି ହେଉଥିଲା । ତା ଛଡ଼ା, ସୁନା ରୁପାର ଅଳଙ୍କାର ତଥା ହାତୀଦାନ୍ତ, ଚନ୍ଦନକାଠ ଓ କାଚର ସାମଗ୍ରୀ ଭାରତରେ ନିର୍ମିତ ହୋଇ ପ୍ରଚୁର ପରିମାଣରେ ବିଦେଶକୁ ରପ୍ତାନି ହେଉଥିଲା । ଅଷ୍ଟାଦଶ ଶତାବ୍ଦୀର ଶେଷବେଳକୁ ଭାରତୀୟ

ଶିଳ୍ପର ଅବନତି ଆରମ୍ଭ ହେଲା । ଏହି ଅବନତି ନାନା କାରଣରୁ ଘଟିଲା । ତନ୍ମଧ୍ୟରୁ ତିନୋଟି କାରଣ ପ୍ରଧାନ । ପ୍ରଥମତଃ, ବ୍ରିଟିଶ ପାର୍ଲାମେଣ୍ଟ ଆଇନ୍ ବଳରେ ଇଂଲଣ୍ଡରେ ଭାରତୀୟ ଶିଳ୍ପ ସାମଗ୍ରୀର ବ୍ୟବହାର ରୋକ ଦେଲା । ଦ୍ୱିତୀୟତଃ, ବିଲାତି କଳକାରଖାନାରେ ପ୍ରସ୍ତୁତ ପଦାର୍ଥମାନ ସୁଲଭ ମୂଲ୍ୟରେ ଏ ଦେଶରେ ଆସି ବିକ୍ରି ହେଲା । ତୃତୀୟତଃ, ଭାରତ ସରକାର ଭାରତୀୟ ଶିଳ୍ପର ସଂରକ୍ଷଣ ଦିଗରେ ନିତାନ୍ତ ଉଦାସୀନ ମତ ଅବଲମ୍ବନ କଲେ । ଭାରତୀୟ ଶିଳ୍ପୀମାନେ କ୍ରମେ କ୍ରମେ ଦୁର୍ଦ୍ଦଶାଗ୍ରସ୍ତ ହୋଇପଡ଼ିଲେ ।

ବ୍ରିଟିଶ ଶାସନ ସମୟରେ ଅଳ୍ପ କେତେ ଜଣ ଭାରତୀୟ ବାହାରି ଏ ଦେଶରେ ଯନ୍ତ୍ରଶିଳ୍ପର ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଥିଲେ । ତନ୍ମଧ୍ୟରୁ ଜାମସେଦଜୀ ନସେରବାନଜୀ ଟାଟାଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ ।

ବଙ୍ଗଳାର ସ୍ୱଦେଶୀ ଆନ୍ଦୋଳନ ସମୟରେ ଓ ତାର ବହୁଦିନ ପରେ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନ ଫଳରେ ଦେଶୀୟ ଶିଳ୍ପର ପୁନରୁଦ୍ଧାର କେତେକ ପରିମାଣରେ ଆରମ୍ଭ ହୋଇଥିଲା । ସ୍ୱାଧୀନତା ପ୍ରାପ୍ତି ପରେ ଜାତୀୟ ସରକାର ଭାରତର ଶିଳ୍ପବିକାଶ ପ୍ରତି ସବିଶେଷ ଦୃଷ୍ଟି ଦେଇଅଛନ୍ତି ଓ ତାହା ଫଳରେ ଭାରତର ବିଭିନ୍ନ ଅଞ୍ଚଳରେ ନାନାଧରଣର ଶିଳ୍ପ ପ୍ରତିଷ୍ଠାନମାନ ସ୍ଥାପିତ ହେବାକୁ ଆରମ୍ଭ କରିଛି ।

**ସାଂସ୍କୃତିକ ଜାଗରଣ:**—ଆଧୁନିକ ଯୁଗର ଭାରତରେ ସାଂସ୍କୃତିକ ବିକାଶ ଏକ ଉଲ୍ଲେଖଯୋଗ୍ୟ ଘଟଣା । ପ୍ରାଚୀନ ଓ ମଧ୍ୟ ଯୁଗର ସଂସ୍କୃତିଠାରୁ ଏହି ନବଯୁଗର ସଂସ୍କୃତି ଅନେକାଂଶରେ ଭିନ୍ନ । ବ୍ରିଟିଶ ଶାସନ ଆରମ୍ଭ ହେବାବେଳକୁ ଭାରତୀୟ ସଂସ୍କୃତି

କେବଳ ସଂସ୍କୃତ, ଆରବୀ ଓ ଫାର୍ସୀ ଭାଷା ଚର୍ଚ୍ଚାରେ ଏବଂ ତତ୍ସଂକ୍ରାନ୍ତ ସାହିତ୍ୟ ଓ ଦର୍ଶନର ଅନୁଶୀଳନରେ ପର୍ଯ୍ୟବସିତ ଥିଲା । ଟୋଲମାନଙ୍କରେ ସଂସ୍କୃତ ଓ ମଦ୍ରାସାମାନଙ୍କରେ ଆରବୀ ଓ ଫାର୍ସୀ ପଢ଼ା ହେଉଥିଲା । କଥିତ ଭାଷା ବା ମାତୃଭାଷାର ଅନୁଶୀଳନ ଅବହେଳିତ ହୋଇ ରହିଥିଲା । ଇତିହାସ, ଗଣିତ, ପ୍ରାକୃତିକ ବିଜ୍ଞାନ, ରାଜନୀତି, ଅର୍ଥନୀତି, ଭୂତତ୍ତ୍ୱ ପ୍ରଭୃତି ବିଷୟମାନ ପାଠ୍ୟ ବହିର୍ଭୂତ ଥିଲା । ସାହିତ୍ୟ, ବ୍ୟାକରଣ, ଦର୍ଶନ, ସ୍ମୃତିଶାସ୍ତ୍ର, ଧର୍ମଶାସ୍ତ୍ର, ନ୍ୟାୟଶାସ୍ତ୍ର— ଏହିଗୁଡ଼ିକ ଶିକ୍ଷାକ୍ଷେତ୍ରରେ ପ୍ରାଧାନ୍ୟ ବିସ୍ତାର କରିଥିଲା ।

ଇଉରୋପରେ ଯେଉଁ ଜ୍ଞାନୋନ୍ମେଷ ଯୁଗର (Renaissance) ଆବିର୍ଭାବ ଘଟିଥିଲା ଓ ଯାହା ଫଳରେ ଅପୂର୍ବ ଜ୍ଞାନବିକାଶ ସାଧିତ ହୋଇଥିଲା, ସେ ବିଷୟରେ ଭାରତୀୟ ସମାଜ ସମ୍ପୂର୍ଣ୍ଣ ଅଜ୍ଞ ଥିଲା । ବ୍ରିଟିଶ୍ ସରକାର ପ୍ରଥମେ ଭାରତର ଶିକ୍ଷା ସଂସ୍କୃତି ବିକାଶ ଦିଗରେ ନିତାନ୍ତ ଉଦାସୀନ ରହିଥିଲେ । ୱାରେନ ହେଷ୍ଟିଙ୍ଗସଙ୍କ ଅମଳରେ ସେ ଦିଗରେ ପ୍ରଥମ ଦୃଷ୍ଟିପାତ ହେଲା, ମାତ୍ର ତାହା ଦ୍ୱାରା ଆଧୁନିକ ସଂସ୍କୃତିର ଆବିର୍ଭାବ ଘଟି ନ ଥିଲା । ୱାରେନ ହେଷ୍ଟିଙ୍ଗସ ୧୭୮୧ ଖ୍ରୀଷ୍ଟାବ୍ଦରେ କଲିକତାଠାରେ ଏକ ମଦ୍ରାସା ସ୍ଥାପନ କରିଥିଲେ । ୧୭୮୪ ଖ୍ରୀଷ୍ଟାବ୍ଦରେ ଉଇଲିୟମ ଜୋନ୍ସ ନାମକ ଏକ ସାହେବ "ଏସିଆଟିକ ସୋସାଇଟି" ନାମକ ଏକ ଅନୁଷ୍ଠାନ ଉକ୍ତ ସହରରେ ପ୍ରତିଷ୍ଠା କରିଥିଲେ । ୧୭୯୨ ଖ୍ରୀଷ୍ଟାବ୍ଦରେ ଜୋନାଥନ ଡନ୍କାନ୍ ନାମକ ଅନ୍ୟ ଏକ ସାହେବ ବନାରସଠାରେ ଏକ ସଂସ୍କୃତ ମହାବିଦ୍ୟାଳୟ (Sanskrit College) ବସାଇଥିଲେ ।

ଇଂରେଜୀ ଶିକ୍ଷା ପାଇଁ ବିଦ୍ୟାଳୟମାନ ସରକାରଙ୍କଦ୍ୱାରା ଭାରତର ବିଭିନ୍ନ ଅଞ୍ଚଳରେ ସ୍ଥାପିତ ହେଉ ବୋଲି ପ୍ରଥମ ପ୍ରସ୍ତାବ ଆଗତ

କରିଥିଲେ ଚାର୍ଲସ ଗ୍ରାଣ୍ଟ ଏବଂ ମେକଲେ ଏ ସମ୍ବନ୍ଧରେ ଯେ ବ୍ରିଟିଶ୍ ପାର୍ଲାମେଣ୍ଟକୁ ପ୍ରବର୍ତ୍ତାଇବା ପାଇଁ ମଧ୍ୟ ଚେଷ୍ଟା କରିଥିଲେ, ମାତ୍ର ତାଙ୍କ ଚେଷ୍ଟା ଫଳବତୀ ହୋଇ ନ ଥିଲା । ଇଂରେଜ ଖ୍ରୀଷ୍ଟଧର୍ମ ପ୍ରଚାରକମାନେ ଏ ଦିଗରେ ଅଧିକ ସଫଳତା ଲାଭ କରିପାରିଥିଲେ । ଉଇଲିୟମ କେରି ଓ ଡେଭିଡ ହେୟାର ସେମାନଙ୍କ ମଧ୍ୟରେ ମୁଖ୍ୟ । ଭାରତୀୟ ନେତାମାନଙ୍କ ମଧ୍ୟରେ ରାଜା **ରାମମୋହନ** ରାୟଙ୍କ ଉଦ୍ୟମ ଏ ଦିଗରେ ବିଶେଷ ଉଲ୍ଲେଖଯୋଗ୍ୟ ।

**ଇଂରେଜୀ ଶିକ୍ଷାର ପ୍ରବର୍ତ୍ତନ ଓ ରାଜା ରାମମୋହନ ରାୟ**—୧୮୧୩ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ ପାର୍ଲାମେଣ୍ଟ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ନୂତନ ସନନ୍ଦ ପ୍ରଦାନ କଲାବେଳେ ନିର୍ଦ୍ଦେଶ ଦେଇଥିଲା ଯେ ପ୍ରତିବର୍ଷ ଅନ୍ୟୂନ ଏକଲକ୍ଷ ଟଙ୍କା ଭାରତୀୟ ସାହିତ୍ୟର ବିକାଶ, ଭାରତୀୟ ପଣ୍ଡିତମାନଙ୍କୁ ଉତ୍ସାହ ପ୍ରଦାନ ଓ ଭାରତରେ ବିଜ୍ଞାନ ଶିକ୍ଷାର ପ୍ରସାର ନିମନ୍ତେ ବ୍ୟୟ କରିବାକୁ ହେବ । ମାତ୍ର ଏ ନିର୍ଦ୍ଦେଶ ଅନୁଯାୟୀ ବିଶେଷ କିଛି କାର୍ଯ୍ୟାନୁଷ୍ଠାନ ଦଶବର୍ଷ ପର୍ଯ୍ୟନ୍ତ କରା ହୋଇ ନ ଥିଲା । ୧୮୨୩ ଖ୍ରୀଷ୍ଟାବ୍ଦରେ ଗୋଟିଏ ଶିକ୍ଷା କମିଟି (Committee of Public Iustruction) ଗଠିତ ହେଲା ଏବଂ କଲିକତାରେ ଗୋଟିଏ ସଂସ୍କୃତ କଲେଜ ପ୍ରତିଷ୍ଠା କରିବା ପାଇଁ ଆୟୋଜନ କରା-



ରାଜା ରାମମୋହନ ରାୟ

ଗଲା । ଏହା ବିରୁଦ୍ଧରେ ରାମମୋହନ ରାୟ ଘୋର ଆପତ୍ତି ଉତ୍ଥାପନ କଲେ । ରାମମୋହନ ତତ୍‌କାଳୀନ ଭାରତୀୟମାନଙ୍କ ମଧ୍ୟରେ ଜଣେ ଶ୍ରେଷ୍ଠ ପ୍ରଗତିଶୀଳ ବ୍ୟକ୍ତି ଥିଲେ । ସମାଜ, ଧର୍ମ, ରାଷ୍ଟ୍ରନୀତି, ଶିକ୍ଷାନୀତି,—ନାନାଦିଗରେ ସେ ସଂସ୍କାରସାଧନ କରିବାକୁ ଆଜୀବନ ଚେଷ୍ଟା କରିଥିଲେ । ବ୍ରାହ୍ମସମାଜର ପ୍ରତିଷ୍ଠାତା ରୂପେ ସେ ବିଖ୍ୟାତ । ହିନ୍ଦୁସମାଜରୁ ସତୀଦାହ ପ୍ରଥାରୂପକ କେତେକ ଜଘନ୍ୟ କୁସଂସ୍କାର ଲୋପ କରିବା ଦିଗରେ ସେ ଇଂରେଜ ସରକାରଙ୍କୁ ଆନ୍ତରିକ ସାହାଯ୍ୟ କରିଥିଲେ । ଭାରତରେ ଇଂରେଜୀ ଶିକ୍ଷା ପ୍ରଚଳନର ସେ ଅତ୍ୟନ୍ତ ପକ୍ଷପାତୀ ଥିଲେ । ସଂସ୍କୃତ କଲେଜ ପରିବର୍ତ୍ତେ ନୂତନ ଧରଣର ଏକ କଲେଜ ପ୍ରତିଷ୍ଠା କରାଯାଇ, ଇଉରୋପରେ ଶିକ୍ଷାଲାଭ କରିଥିବା ପ୍ରତିଭାଶାଳୀ ଜ୍ଞାନୀ ଅଧ୍ୟାପକଙ୍କ ଦ୍ୱାରା ବୈଜ୍ଞାନିକ ବିଷୟମାନ ଶିକ୍ଷା ଦିଆଯାଉ ବୋଲି ସେ ଗଭର୍ଣ୍ଣର ଜେନେରାଲ ଲର୍ଡ଼ ଆମହାର୍ଷ୍ଟଙ୍କଠାରେ ନିବେଦନ କରିଥିଲେ ।


ଲର୍ଡ଼ ମେକଲେ

ରାମମୋହନ ପାଶ୍ଚାତ୍ୟ ଧରଣର ସ୍କୁଲ କଲେଜମାନ ବସାଇବାପାଇଁ ଖ୍ରୀଷ୍ଟୀୟ ମିସନାରୀମାନଙ୍କ ସହିତ ସହଯୋଗ କରିଥିଲେ । ଉକ୍ତ ମିସନାରୀମାନେ ସ୍କୁଲବୁକ୍ ସୋସାଇଟି ନାମକ ଏକ ପୁସ୍ତକ ପ୍ରତିଷ୍ଠାନ ଗଢ଼ି ଇଂରେଜୀଭାଷାର ପୁସ୍ତକମାନ ଭାରତରେ ବିକ୍ରୟ କରିବାର ବ୍ୟବସ୍ଥା କରିଥିଲେ । ଦେଶରେ "ପ୍ରାଚ୍ୟଦଳ" ଓ "ପ୍ରତୀଚ୍ୟ ଦଳ"

(Orientalists and Anglicists) ନାମକ ଦୁଇଟି ଦଳର ଆବିର୍ଭାବ ଘଟିଥିଲା ବୋଲି ପୂର୍ବରୁ କୁହାଯାଇଛି । ରାମମୋହନ, **ଲର୍ଡ଼ ମେକଲେ** ପ୍ରଭୃତି ଏହି ଦଳର ବିଶିଷ୍ଟ ବ୍ୟକ୍ତି ଥିଲେ ଏବଂ ସେମାନଙ୍କ ଚେଷ୍ଟାରେ ଲର୍ଡ଼ ବେଣ୍ଟିଙ୍କଙ୍କ ସମୟରେ ଭାରତରେ ଇଂରେଜୀଶିକ୍ଷା ପ୍ରବର୍ତ୍ତିତ ହୋଇଥିଲା । ଇଂରେଜୀ ସାହିତ୍ୟ ଓ ପାଶ୍ଚାତ୍ୟ ବିଜ୍ଞାନ ଶିକ୍ଷା ଦେବାପାଇଁ ସରକାରୀ ଅର୍ଥ ବ୍ୟୟ କରିବା ସ୍ଥିର ହେଲା । ଇଂରେଜୀଭାଷା ମାଧ୍ୟମରେ ଶିକ୍ଷା ଦିଆଗଲା ।

ପ୍ରଥମ ଲର୍ଡ଼ ହାର୍ଡ଼ିଞ୍ଜଙ୍କ ସମୟରେ ଏକ ନିୟମ ପ୍ରଣୀତ ହେଲା ଯେ, ସରକାରୀ କର୍ମଚାରୀ ନିଯୁକ୍ତି ପାଇଁ ପ୍ରତିଯୋଗିତାମୂଳକ ପରୀକ୍ଷା କରାଯିବ ଏବଂ ସେଥିରେ ଇଂରେଜୀ ଜ୍ଞାନକୁ ପ୍ରାଧାନ୍ୟ ଦିଆଯିବ । ଏହା ଫଳରେ ଇଂରେଜୀ ଶିକ୍ଷା ଭାରତରେ ବିଶେଷ ଭାବରେ ଆଦରଣୀୟ ହେଲା । ୧୮୫୪ ଖ୍ରୀଷ୍ଟାବ୍ଦରେ ସାର ଚାର୍ଲସ୍ ଉଡ଼୍ ନାମକ ଏକ ବ୍ୟକ୍ତି ବ୍ରିଟିଶ ପାର୍ଲାମେଣ୍ଟ ଦ୍ୱାରା ନିଯୁକ୍ତ ହୋଇ ଏକ ଶିକ୍ଷା ଯୋଜନା ପ୍ରସ୍ତୁତ କଲେ । ଏହା 'ଏଜୁକେଶନାଲ ଡେସପାଚ' ( Educational Despatch ) ନାମରେ ବିଦିତ । ଏହା ଭାରତରେ ଏକ ସୁନିୟନ୍ତ୍ରିତ ଶିକ୍ଷାପ୍ରଣାଳୀର ପ୍ରବର୍ତ୍ତନ ବିଷୟରେ ଯଥେଷ୍ଟ ସାହାଯ୍ୟ କଲା । ଲର୍ଡ଼ ଡେଲହାଉସୀଙ୍କ ଅମଳରେ ଉକ୍ତ ଯୋଜନା ଅନୁଯାୟୀ କାର୍ଯ୍ୟ କରାଗଲା । ପ୍ରାଥମିକ, ମାଧ୍ୟମିକ ଓ ଉଚ୍ଚତର ଶିକ୍ଷାର ବ୍ୟବସ୍ଥା ହେଲା । ଅଳ୍ପ କେତେକ ବର୍ଷ ମଧ୍ୟରେ ପ୍ରତି ପ୍ରଦେଶରେ ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠା କରାଗଲା । ୧୯୧୦ ଖ୍ରୀଷ୍ଟାବ୍ଦରେ ଶିକ୍ଷା ବିଭାଗ ନାମକ ଏକ ସ୍ୱତନ୍ତ୍ର ବିଭାଗ ଖୋଲାଗଲା । କ୍ରମଶଃ ଇଂରେଜୀ ଶିକ୍ଷା ଭାରତରେ ପ୍ରସାର ଲାଭ କଲା । ଇଂରେଜୀ ଶିକ୍ଷା ପ୍ରଚଳନ ଫଳରେ ଏ ଦେଶରେ ନବଯୁଗର ଆରମ୍ଭ ହେଲା । ପାଶ୍ଚାତ୍ୟ ଜ୍ଞାନବିଜ୍ଞାନର ଆଲୋକ ଭାରତରେ ପ୍ରବେଶ କଲା ।

ଭାରତର ବିଭିନ୍ନ ଅଞ୍ଚଳବାସୀ ଓ ବିଭିନ୍ନ ଭାଷାଭାଷୀଙ୍କ ମଧ୍ୟରେ ସମ୍ପର୍କ ପ୍ରତିଷ୍ଠା ଇଂରେଜୀ ଶିକ୍ଷା ସାହାଯ୍ୟରେ ସମ୍ଭବପର ହେଲା । ସର୍ବୋପରି ଇଂରେଜୀ ଶିକ୍ଷା ଭାରତରେ ଜାତୀୟ ଜାଗରଣ ଆଣିବାରେ ସାହାଯ୍ୟ କଲା ।

**ସୟଦ ଅହମ୍ମଦ ଖାଁ:**—ଭାରତୀୟମାନଙ୍କ ମଧ୍ୟରେ ହିନ୍ଦୁ ସମ୍ପ୍ରଦାୟ ମୁସଲମାନ ସମ୍ପ୍ରଦାୟ ଅପେକ୍ଷା ଅଧିକ ଆଗ୍ରହ ଓ ଉତ୍ସାହର ସହିତ ପାଶ୍ଚାତ୍ୟ ଶିକ୍ଷାକୁ ବରଣ କରି ନେଇଥିଲେ । ରାମମୋହନ ରାୟ, ରାଜନାରାୟଣ ବୋଷ, ତେଲାଙ୍ଗ, ରାଣାଡ଼େ ପ୍ରଭୃତି ଜନନାୟକମାନଙ୍କଠାରୁ ହିନ୍ଦୁମାନେ ଏ ଦିଗରେ ବିଶେଷ ପ୍ରେରଣା ଲାଭ କରି ଶିକ୍ଷା କ୍ଷେତ୍ରରେ ଅଗ୍ରସର ହୋଇଥିଲେ । ମୁସଲମାନ-ମାନେ ପ୍ରଥମେ ପାଶ୍ଚାତ୍ୟଶିକ୍ଷା ପ୍ରତି ବିମୁଖଥିଲେ । ଇଂରେଜ-ମାନେ ଯେ ସେମାନଙ୍କହାତରୁ ଭାରତର ପ୍ରଭୁତ୍ୱ ଛଡ଼ାଇ ନେଇଥିଲେ ତାହା ସେମାନେ ସହଜରେ ପାସୋରି ପାରି ନ ଥିଲେ । ପ୍ରଥମେ ପ୍ରଥମେ ମୁସଲମାନସମ୍ପ୍ରଦାୟପ୍ରତି ଇଂରେଜମାନଙ୍କର ଗଭୀର ଅଶ୍ରଦ୍ଧା ଥିଲା । ଇଂରେଜମାନେ ଯେପରି ମୁସଲମାନମାନଙ୍କୁ ବିଦ୍ୱେଷ ଦୃଷ୍ଟିରେ ଦେଖୁଥିଲେ, ମୁସଲମାନମାନେ ମଧ୍ୟ ସେହିପରି ଇଂରେଜ ଶାସନକୁ ଘୃଣା କରୁଥିଲେ । ତେଣୁ ମୁସଲମାନ


ସାର୍ ସୟଦ ଅହମ୍ମଦ ଖାଁ

ସମ୍ପ୍ରଦାୟରେ ଇଂରେଜୀ ଶିକ୍ଷା ବାଧା ପାଇଥିଲା । ଆଧୁନିକ ଶିକ୍ଷା-କ୍ଷେତ୍ରରେ ସେମାନେ ଅପେକ୍ଷାକୃତ ଅନୁନ୍ନତ ଅବସ୍ଥାରେ ପଡ଼ି ରହିଥିଲେ । ଏହି ଅବସ୍ଥାର ପ୍ରତିକାର ପାଇଁ ମନପ୍ରାଣ ଦେଇ ଲାଗି ପଡ଼ିଥିଲେ ଜଣେ ବିଶିଷ୍ଟ ମୁସଲମାନ ନେତା ସୟଦ ଅହମ୍ମଦ ଖାଁ । ସୟଦ ଅହମ୍ମଦ ଆଲିଗଡ଼ଠାରେ ୧୮୭୫ ଖ୍ରୀଷ୍ଟାବ୍ଦରେ ଗୋଟିଏ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ତାହା ଶୀଘ୍ର ଏକ କଲେଜରେ ପରିଣତ ହୋଇଥିଲା । ଭାରତର ମୁସଲମାନ ସମ୍ପ୍ରଦାୟ ପାଶ୍ଚାତ୍ୟ ଶିକ୍ଷା ବିଷୟରେ ଏହି କଲେଜଠାରେ ବିଶେଷ ଭାବରେ ଋଣୀ । ୧୮୮୭ ଖ୍ରୀଷ୍ଟାବ୍ଦରେ ସୟଦ ଅହମ୍ମଦ ଶିକ୍ଷା କଂଗ୍ରେସ (Educational Congress) ନାମକ ଏକ ଅନୁଷ୍ଠାନ ଗଠନ କରିଥିଲେ । ତାଙ୍କର ଦୃଢ଼ ଧାରଣା ଥିଲା ଯେ ଶିକ୍ଷାଦ୍ୱାରହିଁ ମୁସଲମାନମାନଙ୍କର ଉନ୍ନତି ସମ୍ଭବପର,ଅନ୍ୟ କୌଣସି ଉପାୟରେ ନୁହେଁ । ଏହି ଧାରଣାର ବଶବର୍ତ୍ତୀ ହୋଇ ଓ କେତେକ ପରିମାଣରେ ବ୍ରିଟିଶ କୂଟନୀତିର କବଳରେ ପଡ଼ି ସେ ଭାରତର ଜାତୀୟ କଂଗ୍ରେସର ବିରୋଧାଚରଣ କରିଥିଲେ । ସୟଦ ଅହମ୍ମଦ୍ ଜଣେ ସ୍ୱଦେଶପ୍ରେମୀ ଲୋକ ଥିଲେ, ଏଥିରେ ସନ୍ଦେହ ନାହିଁ । ସେ ଥରେ ଗୋଟିଏ ସଭାରେ କହିଥିଲେ,—'ଭାରତବର୍ଷ ହିନ୍ଦୁ ଓ ମୁସଲମାନ ଉଭୟଙ୍କର ଦେଶ; ହିନ୍ଦୁ ଓ ମୁସଲମାନ ଏକ ଶରୀରର ଦୁଇ ଚକ୍ଷୁପରି । ଗୋଟିଏ ଚକ୍ଷୁ ଅନ୍ଧ ହେଲେ ଅନ୍ୟ ଚକ୍ଷୁର ଓ ସବୁ ଶରୀରର କ୍ଷତି ହୁଏ । ତେଣୁ ହିନ୍ଦୁ ମୁସଲମାନ ଉଭୟଙ୍କର ଏକ ମନ ଓ ଏକ ପ୍ରାଣରେ କାର୍ଯ୍ୟ କରିବା ଉଚିତ ।' ସେ ଆହୁରି ମଧ୍ୟ କହିଥିଲେ ଯେ, ଶାସକ ସହିତ ସମାନ ହୋଇ ନିଜ ଦେଶର ଶାସନ ବ୍ୟାପାରରେ ଅଂଶ ଗ୍ରହଣ ନ କଲେ କୌଣସି ଜାତି ସମ୍ମାନ ଲାଭ କରି ନ ପାରେ ।

ଏପରି ମତାବଲମ୍ବନ ସତ୍ତ୍ୱେ ସୟଦ ଅହମ୍ମଦ ମୂଳରୁ କଂଗ୍ରେସ ଆନ୍ଦୋଳନର ବିରୋଧୀ ଥିଲେ । ଭାରତରେ ହିନ୍ଦୁସଂଖ୍ୟା ଅଧିକ ଥିବାରୁ ହିନ୍ଦୁ ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲେ ମୁସଲମାନ ସମ୍ପ୍ରଦାୟର ସ୍ୱାର୍ଥରେ ବାଧା ପଡ଼ିବ,—ଏହି ଭୟ ସୟଦ ଅହମ୍ମଦଙ୍କ ଭଳି ଜଣେ ବିଶିଷ୍ଟ ଜାତୀୟତାବାଦୀ ନେତାଙ୍କୁ ସାମ୍ପ୍ରଦାୟିକ ନେତାରେ ପରିଣତ କରିଥିଲା ଏବଂ ମୁସଲମାନ ସମ୍ପ୍ରଦାୟ ମୁଖ୍ୟତଃ ଏହି ମତ ଦ୍ୱାରା ଚାଳିତ ହୋଇ ପରେ ସ୍ୱତନ୍ତ୍ର ନିର୍ବାଚନ ଦାବି କରିଥିଲେ ଓ ପାକିସ୍ଥାନ ପ୍ରତିଷ୍ଠା ପାଇଁ ଆନ୍ଦୋଳନ କରିଥିଲେ । ଅବଶେଷରେ ଏହି ମତ ଜୟଯୁକ୍ତ ହୋଇଥିଲା ଏବଂ ପାକିସ୍ଥାନ ନାମକ ଏକ ସ୍ୱତନ୍ତ୍ର ରାଜ୍ୟ ସୃଷ୍ଟି ହୋଇଥିଲା ।

**ଜାତୀୟ କଂଗ୍ରେସର ପ୍ରତିଷ୍ଠା ଓ ଜାତୀୟ ଆନ୍ଦୋଳନର କ୍ରମବିକାଶ**— ନବ ଭାରତର ଇତିହାସରେ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଜାତୀୟ ଚେତନାର ବୃଦ୍ଧି ଓ ଜାତୀୟ ଆନ୍ଦୋଳନର କ୍ରମବିକାଶ । ଇଂରେଜୀ ଶିକ୍ଷାର ପ୍ରବର୍ତ୍ତନ ଫଳରେ ଇଂରେଜୀଶିକ୍ଷିତ ଭାରତୀୟମାନେ ଜାତୀୟ ଭାବରେ ଉଦ୍‌ବୁଦ୍ଧ ହୋଇ ଉଠିଥିଲେ । ଏହି ସମୟରେ କେତେଗୁଡ଼ିଏ ଘଟଣା ଘଟିଥିଲା, ଯାହା ଫଳରେ ଏହି ଜାତୀୟ ଜାଗରଣ ଦିନକୁ ଦିନ ବୃଦ୍ଧି ଲାଭ କରିଥିଲା । ମହାରାଣୀ ଭିକ୍ଟୋରିଆ ତାଙ୍କ ଘୋଷଣାପତ୍ରରେ ଯେଉଁ ଉଦାରନୀତିର ସୂଚନା ଦେଇଥିଲେ ତାହା ଯଥାଯଥ ଭାବରେ କାର୍ଯ୍ୟରେ ପାଳିତ ହୋଇ ନ ଥିଲା । ଭାରତର ଇଂରେଜ ଶାସକମାନେ ଉଚ୍ଚଶିକ୍ଷିତ ଯୋଗ୍ୟ ଭାରତୀୟମାନଙ୍କୁ ଉଚ୍ଚ ଅଧିକାର ପ୍ରଦାନ କରିବାକୁ କୁଣ୍ଠା ପ୍ରକାଶ କରୁଥିଲେ । ଉଦାହରଣସ୍ୱରୂପ, ବଙ୍ଗଳାର ସୁରେନ୍ଦ୍ରନାଥ ବାନାର୍ଜି ଆଇ. ସି. ଏସ୍. ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିଲେ ସୁଦ୍ଧା ତାଙ୍କ ନାମ ଆଇ. ସି. ଏସ୍. ତାଲିକାରୁ କାଟି

ଦେବାପାଇଁ ଚେଷ୍ଟା କରାହୋଇଥିଲା । ବହୁ କଷ୍ଟରେ ସେ ନିଜକୁ ଉକ୍ତ ପଦରେ ପ୍ରତିଷ୍ଠିତ କରିଥିଲେ, କିନ୍ତୁ କିଛିଦିନ ପରେ ତାଙ୍କୁ ମୂକଦମାରୁ ବାହାର କରି ଦିଆହୋଇଥିଲା ।

ସରକାରର ଏପରି ଅନ୍ୟାୟ ଆଚରଣରେ ଲୋକେ ବିରକ୍ତ ହୋଇ ଉଠିଥିଲେ । ଲର୍ଡ଼ ଲିଟନ୍‌ଙ୍କ ସମୟରେ ଅସ୍ତ୍ର ଆଇନ ଓ ସମ୍ବାଦ ପତ୍ର ଆଇନ ପ୍ରଚଳିତ ହୋଇଥିଲା । ପ୍ରଥମୋକ୍ତ ଆଇନ ଦ୍ୱାରା ଭାରତୀୟମାନଙ୍କୁ ବିନା ଅନୁମତିରେ ଅସ୍ତ୍ର ରଖିବାକୁ ନିଷେଧ କରାଯାଇଥିଲା ଓ ଦ୍ୱିତୀୟ ଆଇନ ବଳରେ ଦେଶୀୟ ଭାଷାରେ ପ୍ରକାଶିତ ସମ୍ବାଦପତ୍ରଗୁଡ଼ିକର ସ୍ୱାଧୀନତା ଖର୍ବ କରା ହୋଇଥିଲା । ଏହିସବୁ କାର୍ଯ୍ୟ ଫଳରେ ଘୋର ଅସନ୍ତୋଷ ଜାତ ହୋଇଥିଲା । ଶିକ୍ଷିତ ଭାରତୀୟମାନେ କ୍ରମଶଃ ବୁଝିପାରିଥିଲେ ଯେ, ନିଜ ହାତକୁ ଶାସନ କର୍ତ୍ତୃତ୍ୱ ନ ଆସିଲେ ଏ ଅବସ୍ଥାର ଉନ୍ନତି ଘଟିବ ନାହିଁ । ଏଥିପାଇଁ ଏକ ସଂଘବଦ୍ଧ ଆନ୍ଦୋଳନର ଆବଶ୍ୟକତା ଅନୁଭୂତ ହେଲା । ଏହି ସମୟରେ **ଆଲାନ୍ ଅକ୍‌ଟାଭିଆନ ହ୍ୟୁମ** (Allan Octavian Hume) ନାମରେ ଜଣେ ଅବସରପ୍ରାପ୍ତ ଉଚ୍ଚ ଇଂରେଜ କର୍ମଚାରୀ ଭାରତୀୟମାନଙ୍କୁ ଏକ ଜାତୀୟ ଅନୁଷ୍ଠାନ ଗଢ଼ି ତାହାଦ୍ୱାରା ଜରିଆରେ ଭାରତୀୟମାନଙ୍କର ଆପତ୍ତି, ଅଭିଯୋଗ ଓ ଦାବି



ହ୍ୟୁମ୍

ସରକାର ଆଗରେ ଉପସ୍ଥାପିତ କରିବାକୁ ଓ ଭାରତୀୟମାନଙ୍କର ମାନସିକ, ନୈତିକ, ସାମାଜିକ ଓ ରାଜନୈତିକ ଉନ୍ନତି ବିଧାନ କରିବାକୁ ଉପଦେଶ ଦେଲେ ।

ହ୍ୟୁମ୍‌ଙ୍କ ଚେଷ୍ଟା ଓ ବିଶିଷ୍ଟ ଭାରତୀୟମାନଙ୍କ ସମର୍ଥନ ଫଳରେ ୧୮୮୫ ଖ୍ରୀଷ୍ଟାବ୍ଦର ଡିସେମ୍ବର ମାସ ୨୭ ତାରିଖରେ "ଭାରତୀୟ ଜାତୀୟ କଂଗ୍ରେସ" ଗଠିତ ହୋଇ ବମ୍ବେଠାରେ ତାର ପ୍ରଥମ ଅଧିବେଶନ ଉମେଶଚନ୍ଦ୍ର ବେନାର୍ଜି ନାମକ ଜଣେ ବାରିଷ୍ଟରଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ସେଥିରେ ୭୦ ଜଣ ପ୍ରତିନିଧି ଯୋଗ ଦେଇଥିଲେ । କ୍ରମେ ଏଥି କଂଗ୍ରେସ ପ୍ରତି ଅଧିକ ଲୋକ ଆକୃଷ୍ଟ ହେଲେ ଏବଂ ଏହା ଏକ ବିଶାଳ ଅନୁଷ୍ଠାନରେ ପରିଣତ ହେଲା । ଦାଦା



ଗୋପାଳକୃଷ୍ଣ ଗୋଖଲେ

ଭାଇ ନାରୋଜୀ, ସୁରେନ୍ଦ୍ରନାଥ ବେନାର୍ଜି, **ଗୋପାଳକୃଷ୍ଣ ଗୋଖଲେ** ପ୍ରଭୃତି ବିଶିଷ୍ଟ ରାଜନୀତିଜ୍ଞମାନେ ଏହାର ନେତୃତ୍ୱ ଗ୍ରହଣ କଲେ । ପ୍ରଥମେ କଂଗ୍ରେସର କାର୍ଯ୍ୟପନ୍ଥା ଥିଲା ଆବେଦନ-ନିବେଦନ ଦ୍ୱାରା ଇଂରେଜ ସରକାର ଆଗରେ ଆପତ୍ତି-ଅଭିଯୋଗ ଉପସ୍ଥାପିତ କରିବା । ଏହାଦ୍ୱାରା ବିଶେଷ ଫଳଲାଭ ନ ହେବାରୁ, କାଳକ୍ରମେ ଅନେକ

ନେତୃସ୍ଥାନୀୟ ଲୋକଙ୍କର ଉକ୍ତ କାର୍ଯ୍ୟପନ୍ଥା ଉପରୁ ଆସ୍ଥା ତୁଟିଗଲା । ମହାରାଷ୍ଟ୍ରୀୟ ନେତା ବାଲଗଙ୍ଗାଧର ତିଳକ ପ୍ରଭୃତି ଏ ନୀତିର ତୀବ୍ର ବିରୋଧ କଲେ । ସେମାନେ ବଳିଷ୍ଠ ନୀତିର ପକ୍ଷପାତୀ ଥିଲେ । ଏହି ସମୟରେ ବଡ଼ଲାଟ **ଲର୍ଡ଼ କର୍ଜନ** ବଙ୍ଗଳାକୁ ଦୁଇ ଭାଗରେ ବିଭକ୍ତ କରିବାରୁ ସେଠାରେ ସ୍ୱଦେଶୀ ଆନ୍ଦୋଳନ ନାମକ ଏକ ପ୍ରବଳ ଆନ୍ଦୋଳନ ଆରମ୍ଭ ହେଲା ( ଖ୍ରୀ: ୧୯୦୫ ) । କଂଗ୍ରେସ ଏହି ଆନ୍ଦୋଳନକୁ ସମର୍ଥନ କଲା । ଗୋଖଲେ, ଦାଦାଭାଇ ନାରୋଜୀ, ତିଳକ, ଲଜପତି ରାୟ ପ୍ରମୁଖ ନେତାମାନେ ବଙ୍ଗବିଭାଗର ତୀବ୍ର ନିନ୍ଦା କଲେ ।



ଲର୍ଡ଼ କର୍ଜନ

କଂଗ୍ରେସ ୧୯୦୬ ଖ୍ରୀଷ୍ଟାବ୍ଦରେ ଦାଦାଭାଇ ନାରୋଜୀଙ୍କ ସଭାପତିତ୍ୱରେ ଔପନିବେଶିକ ଶାସନ ଦାବି କଲା । ଏହା ଫଳରେ କଂଗ୍ରେସ ମଧ୍ୟରେ ଚରମପନ୍ଥୀ ଓ ମୃଦୁପନ୍ଥୀ (Extremists and Moderates) ନାମକ ଦୁଇଟି ବିରୁଦ୍ଧଦଳର ସୃଷ୍ଟିହେଲା । ଇଂରେଜ ସରକାର ଭେଦନୀତି ପ୍ରୟୋଗ କରି ମୁସଲମାନମାନଙ୍କୁ ହାତକଲେ । ଢାକାର ନବାବ ସଲିମୁଲ୍ଲାଙ୍କ ନେତୃତ୍ୱରେ "ମୁସଲିମ ଲିଗ" ନାମକ ଏକ ଅନୁଷ୍ଠାନ ଗଠିତ ହୋଇ ବଙ୍ଗବିଭାଗକୁ ସମର୍ଥନ ଓ ସ୍ୱଦେଶୀ ଆନ୍ଦୋଳନକୁ ନିନ୍ଦା କଲା । ସରକାର ଦମନ ନୀତି ଚଳାଇ ତିଳକ ପ୍ରଭୃତି କେତେକ ନେତାଙ୍କୁ ବନ୍ଦୀ ଓ ଅନ୍ୟ କେତେକଙ୍କୁ ନିର୍ବାସିତ କଲେ । ବଙ୍ଗଳାରେ ସନ୍ତ୍ରାସବାଦୀମାନେ ରାଜନୈତିକ ହତ୍ୟାକାଣ୍ଡ ଆରମ୍ଭ କରିଦେଲେ । ସରକାର କଠୋର ବ୍ୟବସ୍ଥା

ଅବଲମ୍ବନ କରିବା ସଙ୍ଗେ ସଙ୍ଗେ କେତେକ ଶାସନ ସଂସ୍କାର ପ୍ରବର୍ତ୍ତନ କରିବାକୁ ବାଧ୍ୟ ହେଲେ । ତାହା **ମର୍ଲେ-ମିଣ୍ଟୋ ଶାସନ ସଂସ୍କାର** ନାମରେ ପରିଚିତ (ଖ୍ରୀ: ୧୯୦୯) । ଦୁଇବର୍ଷ ପରେ ବଙ୍ଗଭଙ୍ଗ ରହିତ ହେଲା । ମର୍ଲେମିଣ୍ଟୋ ଶାସନ ସଂସ୍କାରରେ ଭାରତୀୟମାନେ ସନ୍ତୁଷ୍ଟ ହେଲେ ନାହିଁ ।

୧୯୧୪ ଖ୍ରୀଷ୍ଟାବ୍ଦରେ ପ୍ରଥମ ବିଶ୍ୱମହାସମର ଆରମ୍ଭ ହେଲା । ଏହି ଯୁଦ୍ଧରେ ଭାରତ ଇଂରେଜ ସରକାରଙ୍କୁ ପ୍ରଚୁର ପରିମାଣରେ ଧନଜନ ସାହାଯ୍ୟ କଲା । ଭାରତୀୟ ନେତାମାନଙ୍କର ଆଶା ଥିଲା ଯେ, ଯୁଦ୍ଧ ପରେ ଭାରତକୁ ଅଧିକ ଶାସନ କ୍ଷମତା ମିଳିବ । ୧୯୧୭ ଖ୍ରୀଷ୍ଟାବ୍ଦରେ ଭାରତମନ୍ତ୍ରୀ ମଣ୍ଟେଗୁ ଭାରତୀୟମାନଙ୍କୁ ଦାୟିତ୍ୱମୂଳକ ଶାସନ ଅଧିକାର ଦିଆଯିବ ବୋଲି ଘୋଷଣା କରିଥିଲେ । ଯୁଦ୍ଧ ପରେ, ୧୯୧୯ ଖ୍ରୀଷ୍ଟାବ୍ଦରେ ନୂତନ ଶାସନ ସଂସ୍କାର ପ୍ରବର୍ତ୍ତିତ ହେଲା । ଏହାର ନାମ ମଣ୍ଟେଗୁ-ଚେମସ୍‌ଫୋର୍ଡ ଶାସନସଂସ୍କାର । ଏହା ଫଳରେ ଅନେକ ପରିବର୍ତ୍ତନ ଘଟିଲା ସତ, ମାତ୍ର ଭାରତୀୟମାନଙ୍କୁ ପ୍ରକୃତ କ୍ଷମତା ମିଳିଲା ନାହିଁ । କଂଗ୍ରେସ ଏହି ଶାସନ ସଂସ୍କାରକୁ ନିତାନ୍ତ ନୈରାଶ୍ୟକର ବୋଲି ମତ ଦେଲା । ମହାତ୍ମା ଗାନ୍ଧି ଏହାର ପ୍ରବଳ ପ୍ରତିବାଦ କରି ଦେଶବ୍ୟାପୀ ତୁମୁଳ ଆନ୍ଦୋଳନ ଆରମ୍ଭ କଲେ ।

**ମହାତ୍ମା ଗାନ୍ଧି ଓ ଅସହଯୋଗ ଆନ୍ଦୋଳନ**—ମୋହନଦାସ କରମଚାନ୍ଦ ଗାନ୍ଧି ଅହିଂସ ଅସହଯୋଗ ଆନ୍ଦୋଳନର ସ୍ରଷ୍ଟା । ଏହି ଆନ୍ଦୋଳନ ପୂର୍ବରୁ ସେ ଦକ୍ଷିଣ ଆଫ୍ରିକା ପ୍ରବାସୀ ଭାରତୀୟମାନଙ୍କର ନେତୃତ୍ୱ ଗ୍ରହଣ କରି ସେଠାରେ ଭାରତୀୟମାନଙ୍କ ପ୍ରତି ହେଉଥିବା ଅତ୍ୟାଚାରର ପ୍ରତିକାର ନିମନ୍ତେ ସତ୍ୟାଗ୍ରହ ଆନ୍ଦୋଳନ ଚଳାଇଥିଲେ । ଉକ୍ତ ଆନ୍ଦୋଳନ ବହୁ ପରିମାଣରେ ଜୟଯୁକ୍ତ

ହୋଇଥିଲା । ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରୁ ଫେରି ଆସି ଭାରତରେ କାର୍ଯ୍ୟାରମ୍ଭ କରିଥିଲେ । ପ୍ରଥମେ ସେ ମଣ୍ଟେଗୁ-ଚେମସ୍‌ଫୋର୍ଡ଼ ଶାସନ ସଂସ୍କାରର ବିରୋଧୀ ନ ଥିଲେ । ତାହା କାର୍ଯ୍ୟକାରୀ କରିବାକୁ ସେ ଇଚ୍ଛା କରୁଥିଲେ । ମାତ୍ର ବର୍ଷେ ନ ପୂରୁଣୁ ତାଙ୍କୁ ମତ ପରିବର୍ତ୍ତନ କରିବାକୁ ପଡ଼ିଥିଲା । ତାଙ୍କଠାରୁ ପ୍ରେରଣା ଲାଭ କରି କଂଗ୍ରେସ ୧୯୨୦ ଖ୍ରୀଷ୍ଟାବ୍ଦରେ ଅସହଯୋଗ ନୀତି ଅବଲମ୍ବନ କରିଥିଲା । ଗାନ୍ଧିଜୀ ଭାରତୀୟମାନଙ୍କୁ ସରକାରୀ ଅନୁଷ୍ଠାନମାନ ବର୍ଜନ କରି ସରକାର ସହିତ ଅସହଯୋଗ କରିବାକୁ ପରାମର୍ଶ ଦେଇଥିଲେ । ଶାନ୍ତିପୂର୍ଣ୍ଣ ଉପାୟରେ ସ୍ୱରାଜ୍ୟ ଲାଭ କରିବା କଂଗ୍ରେସର ଲକ୍ଷ୍ୟ ବୋଲି ଘୋଷିତ ହୋଇଥିଲା । ଗାନ୍ଧିଜୀ କଂଗ୍ରେସ ଆନ୍ଦୋଳନକୁ ବ୍ୟାପକ ଗଣଆନ୍ଦୋଳନରେ ପରିଣତ କରିଥିଲେ । ଇଂରେଜ ସରକାରର ଦମନ ନୀତି ତାଙ୍କୁ ବିଶେଷଭାବରେ ସାହାଯ୍ୟ କରିଥିଲା ।



ମହାତ୍ମା ଗାନ୍ଧି

ଅଳ୍ପ ଦିନ ପୂର୍ବରୁ, ୧୯୧୯ ଖ୍ରୀଷ୍ଟାବ୍ଦରେ, ଭାରତର ଜାତୀୟ ବିପ୍ଲବକୁ ଦବାଇବା ପାଇଁ ଭାରତସରକାର ରାଓଲଟ ଆଇନ ନାମକ ଏକ କଠୋର ଆଇନ ଦେଶରେ ଚଳାଇଥିଲେ । ଉକ୍ତ ଆଇନର ପ୍ରତିବାଦ କରି ପଞ୍ଜାବ ଅନ୍ତର୍ଗତ ଜାଲିୟାନାୱାଲାବାଗ୍ ନାମକ ସ୍ଥାନରେ ବିରାଟ ଜନସଭା ଅନୁଷ୍ଠିତ ହୋଇଥିଲା । ଏହି ଶାନ୍ତିପୂର୍ଣ୍ଣ ଜନତା ଉପରେ ଡାୟାର ନାମକ ଏକ ଇଂରେଜ ସେନାପତି ନିର୍ମମ

ଗୁଳି ଗ୍ଳଳନା କରି ଅନେକ ଲୋକଙ୍କୁ ହତାହତ କରିଥିଲେ । ଏହାକୁ "ଜାଲିୟାନାୱାଲାବାଗ୍ ହତ୍ୟାକାଣ୍ଡ" ବୋଲି କୁହାଯାଏ । ପଞ୍ଜାବ ଅଞ୍ଚଳ ଅନବରତମାୟ ଅତ୍ୟାଚାରର ଲୀଳାଭୂମିରେ ପରିଣତ ହୋଇଥିଲା । ଏହା ଫଳରେ ଦେଶସାରା ଘୋର ଅସନ୍ତୋଷ ବ୍ୟାପି-ଥିଲା । ଏହି ସମୟରେ ମୁସଲମାନ ସମ୍ପ୍ରଦାୟ ମଧ୍ୟ ବ୍ରିଟିଶ ସରକାର ଉପରେ ଅନ୍ୟ ଏକ କାରଣରୁ ବିରକ୍ତ ହୋଇ ଉଠିଥିଲେ । ପ୍ରଥମ ମହାସମର ପରେ ତୁରସ୍କ ପ୍ରତି ଘୋର ଅନ୍ୟାୟ କରାହୋଇଥିଲା । ତୁରସ୍କ ସାମ୍ରାଜ୍ୟକୁ ଖଣ୍ଡବିଖଣ୍ଡିତ କରି ତାକୁ ଏକପ୍ରକାର ଲୋପ କରିଦେବାକୁ ଉଦ୍ୟମ କରାଯାଇଥିଲା । ବ୍ରିଟିଶ ସରକାର ସେଥିରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ତୁରସ୍କର ସୁଲତାନଙ୍କୁ ମୁସଲମାନ-ମାନେ ଖଲିଫା ବା ଧର୍ମଗୁରୁ ବୋଲି ମାନନ୍ତି । ଖଲିଫାଙ୍କ ପ୍ରତି ଅନ୍ୟାୟ ଆଚରଣ କରିବାରୁ ଭାରତୀୟ ମୁସଲମାନମାନେ ଉତ୍ତ୍ୟକ୍ତ ହୋଇ "ଖିଲାଫତ୍ ଆନ୍ଦୋଳନ ଚଳାଇଥିଲେ । ଜାଲିୟାନାୱାଲା-ବାଗ୍ ହତ୍ୟାକାଣ୍ଡ ଓ ଖିଲାଫତ୍ ଆନ୍ଦୋଳନ ଯୋଗୁଁ ଦେଶରେ ଯେଉଁ ତିକ୍ତତାର ଢେଉ ଖେଳୁଥିଲା, ଗାନ୍ଧିଜୀ ତାର ସୁଯୋଗ ନେଇ ହିନ୍ଦୁ ମୁସଲମାନଙ୍କୁ ଏକାଠି କରି ସାରା ଭାରତରେ ବୁଲି ଏକ ପ୍ରବଳ ଆନ୍ଦୋଳନ ଚଳାଇଲେ ।

ଅସହଯୋଗ ଆନ୍ଦୋଳନ ଅହିଂସା ନୀତି ଉପରେ ପ୍ରତିଷ୍ଠିତ ଥିଲା । ଲୋକେ ଆଗ୍ରହ ସହକାରେ ମହାତ୍ମା ଗାନ୍ଧିଙ୍କ ନୀତି ଗ୍ରହଣ କଲେ । ବିଲାତି ପଦାର୍ଥ ବର୍ଜନ କରିବା; ସ୍କୁଲ-କଲେଜ-କଚେରୀ ସହିତ ସମ୍ପର୍କ ତ୍ୟାଗ କରିବା, ସରକାରୀ ଚାକିରୀ ଓ ସରକାର ଦତ୍ତ ଉପାଧି ଛାଡ଼ିବା; ପଞ୍ଚାୟତଦ୍ୱାରା ମକଦ୍ଦମା ନିଷ୍ପତ୍ତି କରିବା; ଦରକାର ପଡ଼ିଲେ ଖଜଣା ବନ୍ଦ କରିବା:—ଏହି ସବୁ ଥିଲା ଅସହଯୋଗର ପନ୍ଥା । ଏହି ପନ୍ଥା ଅବଲମ୍ବନ କରି ଅନେକ ଛାତ୍ରଛାତ୍ରୀ ସ୍କୁଲ

କଲେଜ ଗୁଡ଼ିକରେ, ଅନେକ ଆଇନ ବ୍ୟବସାୟୀ ଆଇନ ବ୍ୟବସାୟ ତ୍ୟାଗ କଲେ, କେତେକ ଲୋକ ସରକାର ଦତ୍ତ ଉପାଧି ଫେରାଇ ଦେଲେ । ମହାତ୍ମାଗାନ୍ଧି ଭାରତୀୟମାନଙ୍କୁ ସୂତା କାଟିବାକୁ ଓ ଖଦଡ଼ ପିନ୍ଧିବାକୁ ଉପଦେଶ ଦେଇଥିଲେ । ତେଣୁ ଖଦଡ଼ର ପ୍ରଚଳନ ହେଲା । ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ଅନେକ ଲୋକ କାରାବରଣ କଲେ । ୧୯୨୧ ଖ୍ରୀଷ୍ଟାବ୍ଦରେ ଡିସେମ୍ବର ମାସରେ ଅହମଦାବାଦଠାରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୋଇ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବାକୁ ମହାତ୍ମା ଗାନ୍ଧିଙ୍କ ଉପରେ ଭାର ଦେଲା । ଗାନ୍ଧିଜୀ ଏହା କ୍ଷୁଦ୍ର ଆକାରରେ ବର୍ଦ୍ଦୋଲୀ ଜିଲାରେ ଆରମ୍ଭ କରିବାକୁ ମନସ୍ଥ କଲେ । ମାତ୍ର ଏହି ସମୟରେ ଉତ୍ତର ପ୍ରଦେଶରେ (ସେତେବେଳେ ଏହାର ନାମ ଥିଲା ଯୁକ୍ତ ପ୍ରଦେଶ) ଚୈାରିଚୌରା ନାମକ ଏକ କ୍ଷୁଦ୍ର ଗ୍ରାମରେ ହିଂସାତ୍ମକ କାଣ୍ଡ ଘଟିବାରୁ ମହାତ୍ମାଗାନ୍ଧି ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖିଲେ । ବିଶିଷ୍ଟ କଂଗ୍ରେସ ନେତା ପଣ୍ଡିତ ମୋତିଲାଲ ନେହେରୁ ଓ ଚିତ୍ତରଞ୍ଜନ ଦାସ କଂଗ୍ରେସ ମଧ୍ୟରେ ସ୍ୱରାଜଦଳ ନାମକ ଏକ ନୂତନ ଦଳ ଗଢ଼ି ବ୍ୟବସ୍ଥାସଭା ନିର୍ବାଚନରେ ଭାଗ ନେଲେ । ବ୍ୟବସ୍ଥାପକ ସଭାମାନଙ୍କରେ ପ୍ରବେଶ କରି ନବପ୍ରବର୍ତ୍ତିତ ଶାସନସଂସ୍କାରକୁ ପଣ୍ଡ କରିବା ସ୍ୱରାଜଦଳର ଉଦ୍ଦେଶ୍ୟ ଥିଲା । କିନ୍ତୁ କାର୍ଯ୍ୟତଃ ସେ ଉଦ୍ଦେଶ୍ୟ ସଫଳ ହୋଇ ପାରିଲା ନାହିଁ ।

ବଡ଼ଲାଟ ଲର୍ଡ଼ ଇରଉଇନଙ୍କ ସମୟରେ (୧୯୨୬-୧୯୩୧) ଶାସନସଂସ୍କାରର ଫଳାଫଳ ବିଚାର କରିବା ପାଇଁ ବ୍ରିଟିଶ ପାର୍ଲାମେଣ୍ଟ ସାଇମନ କମିଶନ ନାମକ ଏକ ପ୍ରତିନିଧିଦଳ ଭାରତକୁ ପଠାଇଲେ । କଂଗ୍ରେସ ଉକ୍ତ କମିଶନକୁ ବର୍ଜନ କଲା । କମିଶନ ଭାରତରେ ତାର କାର୍ଯ୍ୟ ସାରି ପାର୍ଲାମେଣ୍ଟରେ ଏକ ରିପୋର୍ଟ ଦାଖଲ କଲା । ଇତି

ମଧ୍ୟରେ କଂଗ୍ରେସ ଘୋଷଣା କଲା ଯେ, ଭାରତକୁ ଯଦି ୧୯୨୯ ଖ୍ରୀଷ୍ଟାବ୍ଦର ଡିସେମ୍ବର ୩୧ ତାରିଖ ପୂର୍ବରୁ ଔପନିବେଶିକ ସ୍ୱାଧୀନତା (Dominion Status) ଦିଆଯାଏ, ତାହାହେଲେ କଂଗ୍ରେସ ତାହା ଗ୍ରହଣ କରିବ, ନଚେତ୍ ପୁନଶ୍ଚ ଅସହଯୋଗ ଓ ଖଜଣାବନ୍ଦ ଆନ୍ଦୋଳନ ଚଳାଇବ । ଲର୍ଡ଼ ଇରଉଇନ ଏହାର ଉତ୍ତରରେ ୧୯୨୯ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସରେ ପ୍ରକାଶ କଲେ ଯେ, ଭାରତକୁ ଔପନିବେଶିକ ସ୍ୱାଧୀନତା ଦେବାହିଁ ସରକାରର ଲକ୍ଷ୍ୟ । ସେ ଆହୁରି ମଧ୍ୟ ଘୋଷଣା କଲେ ଯେ ସାଇମନ କମିଶନଙ୍କ ସୁପାରିଶଗୁଡ଼ିକୁ ଆଲୋଚନା କରିବା ପାଇଁ ଲଣ୍ଡନଠାରେ ଏକ ସର୍ବଦଳୀୟ ଗୋଲଟେବୁଲ ବୈଠକ ବସିବ । ଏଥିରେ ସନ୍ତୁଷ୍ଟ ନ ହୋଇ ତା'ର ଦାବି ପୂରଣ ନ ହେବାରୁ କଂଗ୍ରେସ ଲାହୋରଠାରେ "ପୂର୍ଣ୍ଣ ସ୍ୱାଧୀନତା" ( Full independence outside the British Empire) ଭାରତର ଲକ୍ଷ୍ୟ ବୋଲି ଘୋଷଣା କଲା ଏବଂ ଗୋଲଟେବୁଲ ବୈଠକରେ ଯୋଗ ନ ଦେବାକୁ ଓ ଆଇନଅମାନ୍ୟ ଆରମ୍ଭ କରିବାକୁ ସ୍ଥିର କଲା । ୧୯୩୦ ଖ୍ରୀଷ୍ଟାବ୍ଦର ଜାନୁଆରି ମାସ ୨୬ ତାରିଖରେ ଭାରତବ୍ୟାପୀ "ସ୍ୱାଧୀନତା ଦିବସ" ପାଳିତ ହେଲା । ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ କଂଗ୍ରେସ ପକ୍ଷରୁ ଆଇନଅମାନ୍ୟ ଆରବ୍ଧ ହେଲା ଏବଂ ଗାନ୍ଧିଜୀ ଲବଣ ଆଇନ ଅମାନ୍ୟ କରି ଗୁଜରାଟର ଦାଣ୍ଡୀ ନାମକ ସ୍ଥାନରେ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ । ଏହା "ଦାଣ୍ଡୀ ଅଭିଯାନ" ନାମରେ ପ୍ରସିଦ୍ଧ (ଅପ୍ରେଲ ୬ ତାରିଖ, ୧୯୩୦) । ଏହି ସମୟରେ କେତେକ ହିଂସାମାର୍ଗାବଲମ୍ବୀ ବିପ୍ଳବୀ ଯୁବକ ଚଟ୍ଟଗ୍ରାମର ସରକାରୀ ଅସ୍ତ୍ରାଗାର ଲୁଣ୍ଠନ କଲେ । ଦେଶର କେତେକ ସ୍ଥାନରେ ଜାତୀୟ ସମାନ୍ତରାଳ ସରକାର ପ୍ରତିଷ୍ଠିତ ହେଲା । ସରକାର କଠୋର ଦମନ

ଚଳାଇଲେ । ନାନାସ୍ଥାନରେ ଲାଠିପ୍ରହାର ଓ ଗୁଳିଗୋଳା ଚାଲିଲା । ଅଳ୍ପ କେତେକ ମାସ ମଧ୍ୟରେ ୬୦ ହଜାର ଲୋକ କାରାରୁଦ୍ଧ ହେଲେ ।

**ଗୋଲଟେବୁଲ ବୈଠକ**—ଦମନ ନୀତି ପ୍ରୟୋଗ ବ୍ୟର୍ଥ ହେବାରୁ, ସରକାର ଅନ୍ୟ ପନ୍ଥା ଅବଲମ୍ବନ କରିବାକୁ ସ୍ଥିର କଲେ । ୧୯୩୦ ଖ୍ରୀଷ୍ଟାବ୍ଦର ନଭେମ୍ବର ମାସରେ ଗୋଲଟେବୁଲ ବୈଠକ ବସିଲା । ଉକ୍ତ ବୈଠକରେ ଯୋଗ ଦେବାପାଇଁ ବହୁ ବ୍ରିଟିଶ ଓ ଭାରତୀୟ ରାଜନୀତିଜ୍ଞଙ୍କୁ ନିମନ୍ତ୍ରଣ କରାଗଲା । କଂଗ୍ରେସ ମଧ୍ୟ ନିମନ୍ତ୍ରିତ ହେଲା । ମାତ୍ର କଂଗ୍ରେସ ଉକ୍ତ ସମ୍ମିଳନୀକୁ ପ୍ରତିନିଧି ପଠାଇବାକୁ ସମ୍ମତ ହେଲା ନାହିଁ । ଅନ୍ୟାନ୍ୟ ଦଳର ଭାରତୀୟ ପ୍ରତିନିଧିମାନେ ଏଥିରେ ଯୋଗ ଦେଲେ । ଶାସନସଂସ୍କାର ସମ୍ବନ୍ଧରେ ବହୁ ଆଲୋଚନା ହେଲା ସତ, କିନ୍ତୁ କଂଗ୍ରେସ ଗୋଲଟେବୁଲ ସମ୍ମିଳନୀ ବର୍ଜନ କରିବାରୁ ସମସ୍ତ ଆଲୋଚନା ବ୍ୟର୍ଥ ହେଲା । ୧୯୩୧ ଖ୍ରୀଷ୍ଟାବ୍ଦର ଜାନୁଆରୀ ଦୁଇ ତାରିଖ ପର୍ଯ୍ୟନ୍ତ ଏହି ବୈଠକ ବସି ବନ୍ଦ ହୋଇଗଲା । ଏହାକୁ ପ୍ରଥମ "ଗୋଲଟେବୁଲ ବୈଠକ" କୁହାଯାଏ । ମାର୍ଚ୍ଚ ଚାରି ତାରିଖରେ ମହାତ୍ମା ଗାନ୍ଧିଙ୍କ ସହିତ ବଡ଼ଲାଟ ଲର୍ଡ ଇରଉଇନଙ୍କର ଏକ ଚୁକ୍ତି ହେଲା । ଏହି ଚୁକ୍ତି ଫଳରେ କଂଗ୍ରେସ ଆଇନଅମାନ୍ୟ ବନ୍ଦ ରଖି ଗୋଲଟେବୁଲ ବୈଠକରେ ଯୋଗ ଦେବାକୁ ସମ୍ମତ ହେଲା ଏବଂ ସରକାର ଦମନ-ଆଇନ ଉଠାଇ ନେଇ ଅଧିକାଂଶ ରାଜନୈତିକ ବନ୍ଦୀଙ୍କୁ ମୁକ୍ତ ଦେଲେ । ବଡ଼ଲାଟ ଲର୍ଡ ଉଇଲିଂଡନଙ୍କ ସମୟରେ ସେପଟେମ୍ବର ୭ ତାରିଖଠାରୁ ଡିସେମ୍ବର ପହିଲା ପର୍ଯ୍ୟନ୍ତ ବିଲାତରେ ଦ୍ୱିତୀୟ ଗୋଲଟେବୁଲ ସମ୍ମିଳନୀ ଅନୁଷ୍ଠିତ ହୋଇ ନାନା ପ୍ରକାର ଆଲୋଚନା ଚାଲିଲା, ମାତ୍ର ସାମ୍ପ୍ରଦାୟିକ ପ୍ରଶ୍ନ ନେଇ ଭାରତୀୟ ନେତାମାନଙ୍କ ମଧ୍ୟରେ କୌଣସି ପ୍ରକାର ସମାଧାନ ହୋଇପାରିଲା ନାହିଁ ।

ମହାତ୍ମା ଗାନ୍ଧି ଭାରତକୁ ଫେରିଆସି ଦେଖିଲେ ଯେ, ସରକାର ତରଫରୁ ଭୟଙ୍କର ଦମନ ପୁଣି ଆରମ୍ଭ ହୋଇଯାଇଛି । ତେଣୁ ସେ ବଡ଼ଲାଟଙ୍କ ସହିତ ସାକ୍ଷାତ୍ କରିବାକୁ ଇଚ୍ଛା ପ୍ରକାଶ କଲେ, କିନ୍ତୁ ସେଥିପାଇଁ ଅନୁମତି ନ ମିଳିବାରୁ ୧୯୩୨ ଖ୍ରୀଷ୍ଟାବ୍ଦର ଜାନୁଆରି ପହିଲାରେ କଂଗ୍ରେସ ପୁନଶ୍ଚ ଆଇନଅମାନ୍ୟ ଓ ବ୍ରିଟିଶ ଦ୍ରବ୍ୟ ବର୍ଜନ ଆନ୍ଦୋଳନ ଆରମ୍ଭ କଲା । ଜାନୁଆରି ୪ ତାରିଖରେ ଗାନ୍ଧିଜୀ ଧୃତ ହେଲେ ଓ କଂଗ୍ରେସ ବେଆଇନ ଅନୁଷ୍ଠାନ ବୋଲି ଘୋଷିତ ହେଲା । ଦେଶରେ ନାନା ଅର୍ଡିନାନ୍ସ ବା ଜରୁରି ଆଇନ ଜାରି ହେଲା । ଲକ୍ଷାଧିକ ଲୋକ ବନ୍ଦୀ ହେଲେ । ଅର୍ଥଦଣ୍ଡ, ବେତ୍ରଦଣ୍ଡ, ଗୁଳିଗୁଳନା, ସମ୍ପତ୍ତିକୋରକ ପ୍ରଭୃତି ନାନା ନିର୍ଯ୍ୟାତନା ଚାଲିଲା । ବିଲାତର ପ୍ରଧାନମନ୍ତ୍ରୀ ରାମ୍‌ସେ ମ୍ୟାକଡୋନାଲ୍ଡ୍ ତାଙ୍କର ସାମ୍ପ୍ରଦାୟିକ ବଣ୍ଟାଆରା ନିଷ୍ପତ୍ତି ପ୍ରକାଶ କଲେ । ଏହାକୁ "କମ୍ୟୁନାଲ ଆଓ୍ୟାର୍ଡ" (Communal Award) କୁହାଯାଏ । ଏହାଦ୍ୱାରା ସାମ୍ପ୍ରଦାୟିକ ନିର୍ବାଚନ ଓ ବ୍ୟବସ୍ଥାପକ ସଭାମାନଙ୍କରେ ମୁସଲମାନ ଓ ନିମ୍ନ ଶ୍ରେଣୀର ହିନ୍ଦୁ ଏବଂ ଉଚ୍ଚ ଶ୍ରେଣୀର ହିନ୍ଦୁଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନ ନିର୍ଦ୍ଦେଶ କରାଗଲା । ଏ ପର୍ଯ୍ୟନ୍ତ ହିନ୍ଦୁମାନଙ୍କୁ ଗୋଟିଏ ସମ୍ପ୍ରଦାୟ ବୋଲି ଧରା ହେଉଥିଲା । ଏବେ ହିନ୍ଦୁ ସମ୍ପ୍ରଦାୟକୁ ଦୁଇଟି ସ୍ୱତନ୍ତ୍ର ସମ୍ପ୍ରଦାୟରେ ବିଭକ୍ତ କରାଯିବାରୁ ମହାତ୍ମା ଗାନ୍ଧି ଏହାର ତୀବ୍ର ପ୍ରତିବାଦ କରି ଜେଲରେ ଆମରଣ ଅନଶନ କରିବାକୁ ସ୍ଥିର କଲେ । ଅବଶେଷରେ ଅସ୍ପୃଶ୍ୟ ଜାତିର ନେତା ଡକ୍ଟର ଆମ୍ବେଦକରଙ୍କ ସହିତ ପୁନାଠାରେ ତାଙ୍କର ଏକ ଚୁକ୍ତି ହେଲା । ଏହି ଚୁକ୍ତିରେ ଉଭୟ ଉଚ୍ଚ ବର୍ଣ୍ଣ ଓ ନିମ୍ନ ଶ୍ରେଣୀର ହିନ୍ଦୁଙ୍କ ମଧ୍ୟରେ ମିଳିତ ନିର୍ବାଚନ ହେବାର ନିଷ୍ପତ୍ତି କରାଗଲା ଏବଂ ସରକାର ଏହାକୁ ଗ୍ରହଣ କରିବାକୁ ବାଧ୍ୟ ହେଲା ।

ଇତି ମଧ୍ୟରେ ବିଲାତରେ ତୃତୀୟ ଗୋଲଟେବୁଲ ବୈଠକ ବସିଥିଲା ଏବଂ ସେଥିରେ ରାମସେ ମ୍ୟାକଡୋନାଲଡଙ୍କ ସାମ୍ପ୍ରଦାୟିକ ବଣ୍ଟନ ଆଉ ନିଷ୍ପତ୍ତି ଗ୍ରହଣ କରାହୋଇଥିଲା । ଉକ୍ତ ବୈଠକରେ କଂଗ୍ରେସ କୌଣସି ଅଂଶ ଗ୍ରହଣ କରି ନ ଥିଲା । ଗୋଲଟେବୁଲର ସିଦ୍ଧାନ୍ତଗୁଡ଼ିକ ଉପରେ ବ୍ରିଟିଶ ସରକାର ୧୯୩୩ ଖ୍ରୀଷ୍ଟାବ୍ଦରେ ଭାରତୀୟ ଶାସନ ସଂସ୍କାର ସମ୍ବନ୍ଧରେ କେତେକ ଘୋଷଣା ଶ୍ୱେତପତ୍ର (White Paper) ନାମରେ ପ୍ରକାଶ କଲେ । ୧୯୩୫ ଖ୍ରୀଷ୍ଟାବ୍ଦରେ ନୂତନ ଭାରତ ଶାସନ ଆଇନ ପାର୍ଲାମେଣ୍ଟରେ ଗୃହୀତ ହେଲା । କଂଗ୍ରେସ ନବ ପ୍ରବର୍ତ୍ତିତ ସଂସ୍କାର ଆଇନ ଅନୁଯାୟୀ ୧୯୩୭ ଖ୍ରୀଷ୍ଟାବ୍ଦର ନିର୍ବାଚନରେ ଯୋଗ ଦେଲା । ମୁସଲମାନ ସମ୍ପ୍ରଦାୟ କଂଗ୍ରେସ ସହିତ ମିଶି ପ୍ରତି ପ୍ରଦେଶରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ଇଚ୍ଛା ପ୍ରକାଶ କଲେ । କଂଗ୍ରେସ ସେଥିରେ ସମ୍ମତ ନ ହେବାରୁ ମୁସଲିମ୍‌ଲିଗ୍ ଓ କଂଗ୍ରେସ ମଧ୍ୟରେ ବିରୋଧ ପୂର୍ବାପେକ୍ଷା ତୀବ୍ରତର ହୋଇଉଠିଲା । ମୁସଲିମ୍ ଲିଗ୍ ସମ୍ପୂର୍ଣ୍ଣ ଭାବରେ ମହମ୍ମଦ ଅଲ୍ଲି ଜିନ୍ନାଙ୍କ ନେତୃତ୍ୱରେ ଶୃଙ୍ଖଳିତ ହେଲା । କଂଗ୍ରେସ ଏଗାରଟି ପ୍ରଦେଶ ମଧ୍ୟରୁ ସାତଟି ପ୍ରଦେଶରେ ମନ୍ତ୍ରୀମଣ୍ଡଳ ଗଠନ କଲା ।

**ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଅଗ୍ରଗତି ଓ ଦ୍ୱିତୀୟ ବିଶ୍ୱମହାସମର**—କଂଗ୍ରେସ ମନ୍ତ୍ରୀମାନେ ସଫଳତାର ସହିତ ଶାସନ ପରିଚାଳନା କଲେ । ଦେଶର ରାଜନୈତିକ ଅବସ୍ଥାରେ କିଛିଦିନ ପାଇଁ ଶାନ୍ତି ଆସିଲା । ୧୯୩୯ ଖ୍ରୀଷ୍ଟାବ୍ଦର ସେପ୍‌ଟେମ୍ବର ପହିଲାରେ ଦ୍ୱିତୀୟ ବିଶ୍ୱମହାସମର ଆରମ୍ଭ ହେଲା । ଇଂରେଜ ସରକାର ଭାରତର ଇଚ୍ଛା ବିରୁଦ୍ଧରେ ଭାରତକୁ ଯୁଦ୍ଧ ଭିତରକୁ ଟାଣି ନେଇଛନ୍ତି ବୋଲି କହି କଂଗ୍ରେସ ଆପତ୍ତି ଉଠାଇଲା । କଂଗ୍ରେସର କାର୍ଯ୍ୟକାରୀ ସଭା ପ୍ରସ୍ତାବ କଲା,—ଯୁଦ୍ଧ ପରେ ଭାରତକୁ

ସ୍ୱାଧୀନତା ଦେବା ଇଂରେଜ ସରକାରର ଲକ୍ଷ୍ୟ ବୋଲି ଶୀଘ୍ର ଘୋଷଣା କରାଯାଉ । ଏ ପ୍ରଶ୍ନର କୌଣସି ସନ୍ତୋଷଜନକ ଉତ୍ତର ନ ମିଳିବାରୁ କଂଗ୍ରେସର ମନ୍ତ୍ରୀମାନେ କଂଗ୍ରେସର ନିର୍ଦ୍ଦେଶରେ ଶାସନଭାର ପରିତ୍ୟାଗ କଲେ ।

୧୯୪୦ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସରେ କଂଗ୍ରେସ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ବ୍ୟକ୍ତିଗତ ଆଇନଅମାନ୍ୟ ଆନ୍ଦୋଳନ ଆରମ୍ଭ କଲେ । ସେହି ବର୍ଷ ଜିନ୍ନା ମଧ୍ୟ ମୁସଲମାନମାନଙ୍କ ପାଇଁ ପାକିସ୍ଥାନ ଦାବି ଆଗତ କଲେ । ୧୯୪୧ ଖ୍ରୀଷ୍ଟାବ୍ଦରେ ଜାପାନ ଜର୍ମାନୀ ପକ୍ଷରେ ଯୁଦ୍ଧରେ ଅବତୀର୍ଣ୍ଣ ହେଲା ଏବଂ ମାଲୟ ଦଖଲ କରି ବ୍ରହ୍ମଦେଶ ଆଡ଼କୁ ମାଡ଼ି ଆସିଲା । ଅଳ୍ପଦିନ ମଧ୍ୟରେ ରେଙ୍ଗୁନର ପତନ ଘଟିଲା । ଏପରି ଦୁଃସମୟରେ ଭାରତୀୟ ସମସ୍ୟାର କୌଣସି ପ୍ରକାର ସମାଧାନ କରିନେବା ଦରକାର ବୋଲି ମନେ କରି ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ଚର୍ଚ୍ଚିଲ ତାଙ୍କ ମନ୍ତ୍ରୀମଣ୍ଡଳର ଜଣେ ସଭ୍ୟ ସାର ଷ୍ଟାଫୋର୍ଡ କ୍ରିପ୍‌ସ୍‌ଙ୍କୁ ଭାରତକୁ ପ୍ରେରଣ କଲେ । କ୍ରିପ୍‌ସ୍ ଯୁଦ୍ଧ ପରେ ଭାରତକୁ ଔପନିବେଶିକ ସ୍ୱାଧୀନତା ଦିଆଯିବାକୁ ସୁପାରିଶ କଲେ । କଂଗ୍ରେସ କିମ୍ବା ଲିଗ୍ କେହି ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । ୧୯୪୨ ଖ୍ରୀଷ୍ଟାବ୍ଦର ଅଗଷ୍ଟ ୮ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟି ବ୍ୟାପକ ସଂଗ୍ରାମ ଚଳାଇବାକୁ ସ୍ଥିର କଲା ।

**"ଭାରତ ଛାଡ଼" ଆନ୍ଦୋଳନ**—ମହାତ୍ମା ଗାନ୍ଧି ଇଂରେଜମାନଙ୍କୁ ଭାରତ ଛାଡ଼ି ଚାଲିଯିବାକୁ କହିଲେ । ୧୯୪୨ ଖ୍ରୀଷ୍ଟାବ୍ଦର ଅଗଷ୍ଟ ମାସରେ ଏହି "ଭାରତ ଛାଡ଼" ପ୍ରସ୍ତାବକୁ କଂଗ୍ରେସ ସମର୍ଥନ କଲା । ଇଂରେଜ ସରକାର କଂଗ୍ରେସ ପ୍ରତିଷ୍ଠାନଗୁଡ଼ିକୁ ଅବୈଧ ଘୋଷଣା କରି ମହାତ୍ମା ଗାନ୍ଧି, ଜବାହାରଲାଲ ନେହେରୁ ପ୍ରଭୃତିଙ୍କୁ ବନ୍ଦୀ କଲେ । ଏଥିରେ ଜନମତ କ୍ଷିପ୍ତ ହୋଇଉଠିଲା । ବ୍ରିଟିଶ

ଶାସନକୁ ଅଚଳ କରିବା ପାଇଁ ଗୁରିଆଡ଼େ ଏକ ବିପ୍ଳବ ଆରମ୍ଭ ହେଲା । ଏହାକୁ "ଅଗଷ୍ଟ ବିପ୍ଳବ" ବୋଲି କୁହାଯାଏ । ବ୍ରିଟିଶ ସରକାର ଏହି ବିପ୍ଳବ ଦମନ କରିବାକୁ ସମସ୍ତ ପ୍ରକାର ଚେଷ୍ଟା କରିଥିଲେ । କେତେକ ଅଞ୍ଚଳରେ ଉଡ଼ାଜାହାଜରୁ ଜନତା ଉପରେ ଗୁଳି ବୃଷ୍ଟି କରାଯାଇଥିଲା । କଠୋର ଦମନ ଫଳରେ ବାହାରକୁ ଟିକିଏ ଶାନ୍ତି ପ୍ରତିଷ୍ଠିତ ହୋଇଥିଲା ସତ, କିନ୍ତୁ ଅନ୍ୟଆଡ଼ୁ ବ୍ରିଟିଶ ସରକାର ଉପରେ ଭୀଷଣ ବିପଦ ମାଡ଼ିଆସିଥିଲା ।



ସୁଭାଷଚନ୍ଦ୍ର ବୋଷ

**ଜାତୀୟ ସୈନ୍ୟ-ବାହିନୀ (I.N.A.):—** ୧୯୪୧ ଖ୍ରୀ:ରେ ଅନ୍ୟତମ ଭାରତୀୟ ନେତା **ସୁଭାଷ ଚନ୍ଦ୍ର ବୋଷ** କୌଶଳ କ୍ରମେ ଭାରତରୁ ଖସି ପଳାଇ ଯାଇଥିଲେ । ମହାତ୍ମାଗାନ୍ଧିଙ୍କ ଅହିଂସା ନୀତିରେ ତାଙ୍କର ପୂର୍ଣ୍ଣ ବିଶ୍ୱାସ ନଥିଲା । ଭାରତର ସ୍ୱାଧୀନତା ପାଇଁ ସଶସ୍ତ୍ର ଆନ୍ଦୋଳନର ଆବଶ୍ୟକତା ସେ ଅନୁଭବ କରିଥିଲେ ଏବଂ ଜର୍ମାନୀ ଓ ଜାପାନ ସହିତ ସମ୍ପର୍କ ପ୍ରତିଷ୍ଠା କରିପାରିଥିଲେ । ଦ୍ୱିତୀୟ ମହାସମରରେ ଜାପାନ ମାଳୟ ଜୟ କଲାବେଳେ ବହୁ ଭାରତୀୟ ସୈନ୍ୟ ଜାପାନୀମାନଙ୍କ ହସ୍ତରେ ବନ୍ଦୀ ହୋଇଥିଲେ । ସୁଭାଷ ସେମାନଙ୍କୁ "ଆଜାଦହିନ୍ଦ୍ ଫୌଜ"ବା

ଭାରତୀୟ ଜାତୀୟ ସୈନ୍ୟବାହିନୀ (Indian National Army) ନାମ ଦେଇ ସଂଗଠିତ କରିଥିଲେ ଏବଂ ସିଙ୍ଗାପୁରରେ "ସ୍ୱାଧୀନ ଭାରତୀୟ ସରକାର" ବୋଲି ଏକ ସରକାର ପ୍ରତିଷ୍ଠା କରିଥିଲେ । ୧୯୪୩ ରେ ଆଜାଦ ହିନ୍ଦ୍ ଫୌଜ ଜାପାନୀ ସୈନ୍ୟଙ୍କ ସହିତ ଭାରତର ସୀମା ପର୍ଯ୍ୟନ୍ତ ମାଡ଼ି ଆସିଥିଲେ । ମାତ୍ର ସୁଭାଷଙ୍କ ଉଦ୍ୟମ ସାଫଲ୍ୟମଣ୍ଡିତ ହୋଇପାରି ନ ଥିଲା । ଯୁଦ୍ଧରେ ଜାପାନର ପରାଜୟ ଘଟିଥିଲା ଓ ଆଜାଦ ହିନ୍ଦ୍ ଫୌଜକୁ ମଧ୍ୟ ଆତ୍ମସମର୍ପଣ କରିବାକୁ ପଡ଼ିଥିଲା । ଏହି ଜାତୀୟ ସୈନ୍ୟବାହିନୀର କାର୍ଯ୍ୟ ଫଳରେ ବ୍ରିଟିଶ ସରକାର ମନରେ ଅଧିକ ଭୀତି ସଞ୍ଚାର ଘଟିଥିଲା । ୧୯୪୬ ଖ୍ରୀଷ୍ଟାବ୍ଦରେ ଭାରତୀୟ ନୌବାହିନୀରେ ବିଦ୍ରୋହ ଦେଖାଦେଇଥିଲା । ଇତିମଧ୍ୟରେ ଇଂଲଣ୍ଡରେ ଶ୍ରମିକ ସରକାର ପ୍ରତିଷ୍ଠିତ ହୋଇ ସାରିଥିଲା । ଶ୍ରମିକ ଦଳର ପ୍ରଧାନ ମନ୍ତ୍ରୀ **ଆଟ୍‌ଲି** ପାର୍ଲାମେଣ୍ଟରେ ଘୋଷଣା କରିଥିଲେ ଯେ, ତାଙ୍କ ମନ୍ତ୍ରୀମଣ୍ଡଳର ତିନିଜଣ ମନ୍ତ୍ରୀ ଭାରତକୁ ଯାଇ ଭାରତୀୟ ନେତାମାନଙ୍କ ସହିତ ଆଶୁ ପୂର୍ଣ୍ଣ ସ୍ୱାଧୀନତା ପ୍ରତିଷ୍ଠା ସମ୍ବନ୍ଧରେ ଆଲୋଚନା କରିବେ । ଏହା "କ୍ୟାବିନେଟ୍ ମିଶନ" ନାମରେ ପ୍ରସିଦ୍ଧ । ଏହି ମନ୍ତ୍ରୀମାନଙ୍କ


ଆଟ୍‌ଲି

ଆଗରେ କଂଗ୍ରେସ ପୂର୍ଣ୍ଣ ସ୍ୱାଧୀନତା ଓ ମୁସ୍‌ଲିମ୍ ଲିଗ୍ ପାକିସ୍ଥାନ ଦାବି ଉପସ୍ଥାପିତ କଲେ । ମେ ମାସ ୧୬ ତାରିଖରେ କ୍ୟାବିନେଟ୍ ମିଶନ ସୁପାରିଶ କଲେ ଯେ ବ୍ରିଟିଶ ଭାରତ ଓ ଦେଶୀୟ ରାଜ୍ୟମାନଙ୍କୁ ନେଇ ଗୋଟିଏ ଯୁକ୍ତରାଷ୍ଟ୍ର ଗଠନ କରାଯାଉ । ଉକ୍ତ ରାଷ୍ଟ୍ରର ଶାସନତନ୍ତ୍ର ରଚନା ପାଇଁ ୨୯୬ ଜଣ ପ୍ରତିନିଧିଙ୍କୁ ନେଇ ଗୋଟିଏ ବିଧାନ୍ସଭା (Constituent Assembly) ଡକାଯାଉ ଏବଂ ନୂତନ ଶାସନବିଧାନ ପ୍ରଚଳିତ ହେବା ପର୍ଯ୍ୟନ୍ତ ଗୋଟିଏ ମଧ୍ୟବର୍ତ୍ତୀକାଳୀନ ସରକାର ପ୍ରତିଷ୍ଠା କରାଯାଉ । ମୁସଲିମ୍ ଲିଗ୍ ପ୍ରଥମେ କ୍ୟାବିନେଟ୍ ମିଶନର ପ୍ରସ୍ତାବ ଗ୍ରହଣ କରି ପରେ ତାହା ଅଗ୍ରାହ୍ୟ କଲା । ବଡ଼ଲାଟ ଲର୍ଡ଼ ଓ୍ୟାଭେଲ କଂଗ୍ରେସ ପ୍ରତିନିଧିଙ୍କୁ ନେଇ ତାଙ୍କର ଶାସନ ପରିଷଦ ବା ଏକ୍‌ଜିକ୍ୟୁଟିଭ୍ କାଉନ-ସିଲର ପୁନର୍ଗଠନ କଲେ । ଏଥିରେ ବିଚଳିତ ହୋଇ ମୁସଲିମ୍ ଲିଗ୍ ଭାରତ ବିଭାଗ କରି "ଭାରତଖଣ୍ଡ଼" ବୋଲି ଦାବି କଲା ଓ ୧୯୪୬ ଖ୍ରୀଷ୍ଟାବ୍ଦର ଅଗଷ୍ଟ ମାସ ୧୬ ତାରିଖରେ "ପ୍ର ତ୍ୟ କ୍ଷ ସଂ ଗ୍ରା ମ" (Direct Action) ଆରମ୍ଭ କରାଯିବ ବୋଲି ଘୋଷଣା କଲା ।


ଜବାହରଲାଲ ନେହେରୁ

ଏହା ଫଳରେ କଲିକତାରେ ମୁସଲମାନ ଓ ହିନ୍ଦୁଙ୍କ ମଧ୍ୟରେ ରକ୍ତପାତ ଘଟିଲା । ସେପ୍ଟେମ୍ବର ମାସ ୨ ତାରିଖରେ ପଣ୍ଡିତ **ଜବାହରଲାଲ** ଏବଂ ତାଙ୍କର ସହକର୍ମୀମାନେ ଶାସନ ପରିଷଦ ବା ଏକଜିକ୍ୟୁଟିଭ କାଉନସିଲରେ ଶପଥ ଗ୍ରହଣ କଲେ । କିଛିଦିନ ପାଇଁ ଶାସନକାର୍ଯ୍ୟ ଶୃଙ୍ଖଳାର ସହିତ ଚାଲିଲା । କିନ୍ତୁ ଲର୍ଡ଼ ଓ୍ୟାଭେଲ ନିଜ କ୍ଷମତା ପ୍ରାୟ ଲୋପ ପାଇଯିବାର ଦେଖି ଲିଗ୍ ପ୍ରତିନିଧିଙ୍କୁ ଶାସନ ପରିଷଦରେ ସ୍ଥାନ ଦେଲେ । ଲିଗ୍ ପ୍ରତିନିଧିମାନେ କଂଗ୍ରେସ ପ୍ରତିନିଧିଙ୍କ ସହିତ ମିଳିମିଶି କାର୍ଯ୍ୟ କଲେ ନାହିଁ । ଲିଗ୍ ମଧ୍ୟ ବିଧାୟକ ସଭା ବା (Constituent Assembly) ରେ ଯୋଗ ଦେଲା ନାହିଁ । ଡିସେମ୍ବର ମାସରେ ଅନ୍ୟ ଦଳର ପ୍ରତି-ନିଧିଙ୍କୁ ନେଇ ଗଣ-ପରିଷଦ ଆରମ୍ଭ ହେଲା । ୧୯୪୭ ଫେବୃଆରି ପର୍ଯ୍ୟନ୍ତ ଦେଶରେ ଉଦ୍‌ବେଗଜନକ ପରିସ୍ଥିତି ଲାଗି ରହିଲା । ସେହି ବର୍ଷ ଫେବୃଆରି ୨୦ ତାରିଖରେ ବ୍ରିଟିଶ ସରକାର ଘୋଷଣା କଲେ ଯେ, ଭାରତକୁ ୧୯୪୮ ଖ୍ରୀଷ୍ଟାବ୍ଦର ଜୁନମାସ ପୂର୍ବରୁ ସ୍ୱାଧୀନତା ଦିଆଯିବ ।



ମାଉଣ୍ଟବାଟେନ୍

**ଭାରତବିଭାଗ:**—ଏହି ଘୋଷଣା ପରେ ସାରା ଭାରତରେ ଆନନ୍ଦର ଢେଉ ଖେଳିଗଲା, କେବଳ ମୁସଲିମ୍ ଲିଗ୍ ଏଥିରେ ପ୍ରମାଦ


ଭାରତବର୍ଷ
ରାଜନୈତିକ
ସ୍କେଲ ୧ : ୨୦ ୦୦୦ ୦୦୦
୫୦୦ କିଲୋମିଟର
ଉ:
ଆଫଗାନସ୍ଥାନ
ପଶ୍ଚିମ ପାକିସ୍ଥାନ
ପଞ୍ଜାବ
ଦିଲ୍ଲୀ
ରାଜସ୍ଥାନ
ଉତ୍ତର ପ୍ରଦେଶ
ଚୀନ
ତିବ୍ବତ
ନେପାଳ
ସିକିମ
ଭୁଟାନ
ଆସାମ
ନାଗାଲାଣ୍ଡ
ମଣିପୁର
ତ୍ରିପୁରା
ପୂର୍ବ ପାକିସ୍ଥାନ
ବିହାର
ପ ବଙ୍ଗ
ମଧ୍ୟପ୍ରଦେଶ
ଗୁଜରାଟ
ଓଡ଼ିଶା
ମହାରାଷ୍ଟ୍ର
ବର୍ମା
ଆରବ ସାଗର
ବଙ୍ଗୋପସାଗର
ଗୋଆ
ଗୋଆ, ଡାମନ, ଡିଉ
ମହୀଶୂର
ଆନ୍ଧ୍ର ପ୍ରଦେଶ
କେରଳ
ମାଡ୍ରାସ
ସିଂହଳ

ହ୍ଲାଲ ନେହ୍ରୁରୁ ଭାରତର ପ୍ରଧାନମନ୍ତ୍ରୀ ରୂପେ ଓ **ସର୍ଦ୍ଦାର ବଲ୍ଲଭଭାଇ** ପଟେଲ ସହକାରୀ ପ୍ରଧାନମନ୍ତ୍ରୀ ରୂପେ ଶାସନ କାର୍ଯ୍ୟ ପରିଚାଳନା କଲେ । ପୂର୍ବୋକ୍ତ କନଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲି ୧୯୪୯ ଖ୍ରୀଷ୍ଟାବ୍ଦର ନଭେମ୍ବର ମାସ ପର୍ଯ୍ୟନ୍ତ ବସି ଏକ ସମ୍ବିଧାନ ପ୍ରସ୍ତୁତ କଲା । ୧୯୫୦ ଖ୍ରୀଷ୍ଟାବ୍ଦର ଜାନୁୟାରୀ ୨୬ ତାରିଖଠାରୁ ଏହା ପ୍ରଚଳିତ ହେଲା । ତଦନୁସାରେ ଭାରତ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର ( Sovereign Democratic Republic ) ରେ ପରିଣତ ହୋଇଅଛି । ରାଷ୍ଟ୍ରପତି ବା ପ୍ରେସିଡେଣ୍ଟ ଏହାର ଶାସନମୁଖ୍ୟ । ସମ୍ବିଧାନର ନିୟମ ମାନି ସେ ମନ୍ତ୍ରୀସଭା ଓ ପାର୍ଲାମେଣ୍ଟ ସାହାଯ୍ୟରେ ଶାସନକାର୍ଯ୍ୟ ପରିଚାଳନା କରନ୍ତି ।

୧୯୪୭ ଖ୍ରୀଷ୍ଟାବ୍ଦର ଅଗଷ୍ଟ ମାସ ୧୫ ତାରିଖ ଆମ ଭାରତ ଇତିହାସର ଏକ ଚିରସ୍ମରଣୀୟ ଦିବସ । ମହାତ୍ମା ଗାନ୍ଧିଙ୍କର ଅପୂର୍ବ ଅହିଂସ ଆନ୍ଦୋଳନ ଫଳରେ ଭାରତର ପରାଧୀନତା-ଶୃଙ୍ଖଳ ସେହି ଦିନ ଛିନ୍ନ ହେଲା । ତେଣୁ ମହାତ୍ମା ଗାନ୍ଧି "ଜାତିର ପିତା" (Father of the Nation) ନାମରେ ପରିଚିତ । ମାତ୍ର ଏହି ଜାତିର ପିତାଙ୍କୁ ଆମ ଭାରତୀୟ ଜାତି ଦୁର୍ଭାଗ୍ୟକ୍ରମେ ସ୍ୱାଧୀନତା-ପ୍ରାପ୍ତିର ପ୍ରଥମ ବର୍ଷରେ ହିଁ ହରାଇ ବସିଲା । ୧୯୪୮ ଖ୍ରୀଷ୍ଟାବ୍ଦର ଜାନୁୟାରୀ ମାସ ୩୦ ତାରିଖରେ ଏକ **ବିପଥଗାମୀ ବିପ୍ଲବୀ** ଆତତାୟୀର ହସ୍ତରେ ତାଙ୍କୁ ପ୍ରାଣ ଦେବାକୁ ପଡ଼ିଲା ।

**ଦେଶୀୟ ରାଜ୍ୟଗୁଡ଼ିକର ସଂମିଶ୍ରଣ:**—ସ୍ୱାଧୀନତାପ୍ରାପ୍ତି ପୂର୍ବରୁ ଭାରତବର୍ଷରେ ଅନେକଗୁଡ଼ିଏ ଦେଶୀୟ ରାଜ୍ୟ ଥିଲା । ସେମାନେ ବ୍ରିଟିଶ ସରକାରର ପ୍ରାଧାନ୍ୟ ମାନି ଚଳୁଥିଲେ । ଭାରତ ସ୍ୱାଧୀନ ହେଲା ପରେ ଉକ୍ତ ଦେଶୀୟ ରାଜ୍ୟଗୁଡ଼ିକ ସ୍ୱାଧୀନ ଭାରତର ସରକାରଙ୍କ ପକ୍ଷରେ ଏକ ଦୁରୂହ ସମସ୍ୟାର ବିଷୟ

ହୋଇପଡ଼ିଲେ । ଭାରତୀୟ ସ୍ୱାଧୀନତା ଆଇନରେ ବ୍ୟବସ୍ଥା ଥିଲା ଯେ ଦେଶୀୟ ରାଜ୍ୟମାନେ ନିଜ ନିଜ ଇଚ୍ଛାନୁସାରେ ଭାରତ କିମ୍ବା ପାକିସ୍ଥାନ ସହିତ ମିଳିତ ହୋଇପାରିବେ । ଲର୍ଡ୍ ମାଉଣ୍ଟବାଟେନ ଓ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଉପଦେଶ ଅନୁସାରେ ଅନେକ ଦେଶୀୟ ରାଜ୍ୟ ୧୯୪୭ ଖ୍ରୀଷ୍ଟାବ୍ଦର ଜୁଲାଇ ମାସ ୨୫ ତାରିଖରେ ଭାରତ ସହିତ ମିଳିତ ହୋଇଥିଲେ । ଛୋଟ ଛୋଟ ରାଜ୍ୟଗୁଡ଼ିକ ପାର୍ଶ୍ୱବର୍ତ୍ତୀ ପ୍ରଦେଶମାନଙ୍କ ସହିତ ମିଶିଯାଇଥିଲେ କିମ୍ବା କେତେଗୁଡ଼ିଏ ମିଶି ଗୋଟିଏ ରାଜ୍ୟଗୋଷ୍ଠୀ ଗଠନ କରିଥିଲେ । ୧୯୪୯ ଖ୍ରୀଷ୍ଟାବ୍ଦର ନଭେମ୍ବର ମାସ ଶେଷ ପୂର୍ବରୁ ଦେଶୀୟ ରାଜ୍ୟଗୁଡ଼ିକର ସମ୍ମିଶ୍ରଣ ପ୍ରାୟ ସମ୍ପୂର୍ଣ୍ଣ ହୋଇଯାଇଥିଲା; କେବଳ ହାଇଦ୍ରାବାଦ ଓ କାଶ୍ମୀର ସମ୍ପର୍କରେ ଗୁରୁତର ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

ହାଇଦ୍ରାବାଦ ଏକ ବଡ଼ ରାଜ୍ୟ । ସେ ରାଜ୍ୟର ଅଧିକାଂଶ ପ୍ରଜା ହିନ୍ଦୁ, କିନ୍ତୁ ତାର ଶାସକ ଥିଲେ ମୁସଲମାନ । ତାଙ୍କୁ ନିଜାମ ବୋଲି କୁହାହେଉଥିଲା । ହାଇଦ୍ରାବାଦ ସ୍ୱାଧୀନ ହୋଇ ରହିବାକୁ ଇଚ୍ଛା କଲା । "ମଜଲିସ୍ ଇତ୍ତେହାଦଉଲ ମୁସଲିମିନ" ନାମକ ଏକ ଅନୁଷ୍ଠାନର ସଭାପତି ସୟଦ କାସିମ ରାଜଭି ମୁସଲିମ୍ ଲିଗ୍‌ର ଇଙ୍ଗିତରେ ତୁମୁଳ ଆନ୍ଦୋଳନ ଆରମ୍ଭ କଲେ । ହାଇଦ୍ରାବାଦରେ ତାଙ୍କ ନେତୃତ୍ୱରେ ପରିଚାଳିତ "ରାଜକର" ଦଳ ନାନା ଅଶାନ୍ତି-ଉପଦ୍ରବ ଆରମ୍ଭ କଲେ । ଭାରତର ଜାତୀୟ ସରକାର ଦେଖିଲେ ଯେ ଦେଶରକ୍ଷା, ଆଭ୍ୟନ୍ତରୀଣ ଶାନ୍ତିଶୃଙ୍ଖଳା ରକ୍ଷା ଓ ଅର୍ଥନୈତିକ ମଙ୍ଗଳ ଦୃଷ୍ଟିରୁ ହାଇଦ୍ରାବାଦର ସ୍ୱାଧୀନତା ଭାରତ ପକ୍ଷରେ ବିପଦ-ଜନକ, ମାତ୍ର ନିଜାମଙ୍କ ସହିତ ସମସ୍ତ ଆଲୋଚନା ବ୍ୟର୍ଥ ହେବାରୁ ଏବଂ ରାଜକର ଦଳର ଧ୍ୱଂସାତ୍ମକ କାର୍ଯ୍ୟକଳାପ ଦିନକୁ ଦିନ

ବୃଦ୍ଧି ପାଇବାରୁ ଭାରତ ସରକାର ବାଧ୍ୟ ହୋଇ ରାଜକରଦଳ ଭାଙ୍ଗିଦେବାକୁ ନିଜାମଙ୍କୁ ଅନୁରୋଧ କଲେ ।

ଇତି ମଧ୍ୟରେ ନିଜାମ ଜାତିସଂଘ ନିକଟରେ ଭାରତ ବିରୁଦ୍ଧରେ ଆପତ୍ତି ଅଭିଯୋଗ ଉପସ୍ଥାପିତ କରିସାରିଥିଲେ । ସେ ଭାରତ-ସରକାରଙ୍କ ପ୍ରସ୍ତାବରେ କର୍ଣ୍ଣପାତ କଲେ ନାହିଁ । ୧୯୪୮ ମସିହା ସେପ୍‌ଟେମ୍ବର ୧୩ ତାରିଖରେ ଭାରତ ହାଇଦ୍ରାବାଦ ବିରୁଦ୍ଧରେ ସୈନ୍ୟପ୍ରେରଣ କରି ପୋଲିସ ଅଭିଯାନ ଆରମ୍ଭକଲା । ହାଇଦ୍ରାବାଦ ରାଜ୍ୟର ସେନାପତି ମେଜର ଜେନେରାଲ ଇଦ୍ରୁସ୍ ସେପ୍‌ଟେମ୍ବର ୧୮ ତାରିଖରେ ନିଜାମଙ୍କ ପକ୍ଷରୁ ଆତ୍ମସମର୍ପଣ କଲେ । କାସିମରାଜଭି ବନ୍ଦୀ ହେଲେ ଓ ରାଜକରଦଳକୁ ଭାଙ୍ଗି ଦିଆଗଲା । ହାଇଦ୍ରାବାଦ ଅବଶେଷରେ ଭାରତର ଅନ୍ତର୍ଭୁକ୍ତ ହେଲା (ଜାନୁଆରି, ୧୯୫୦) ।

ଜାମ୍ମୁ ଓ କାଶ୍ମୀର ରାଜ୍ୟରେ ଏକ ଗୁରୁତର ପରିସ୍ଥିତିର ସୃଷ୍ଟି ହେଲା । ଉକ୍ତ ରାଜ୍ୟର ରାଜା ହିନ୍ଦୁ ଥିଲେ, ମାତ୍ର ପ୍ରଜାମାନଙ୍କ ମଧ୍ୟରୁ ଶତକଡ଼ା ୭୭ ଜଣ ଥିଲେ ମୁସଲମାନ । ସୁତରାଂ ପାକିସ୍ଥାନ ସେଠାରେ ପ୍ରଭାବ ବିସ୍ତାର କରିବାପାଇଁ ଚେଷ୍ଟା କଲା । ପାକିସ୍ଥାନର ସାହାଯ୍ୟ ଓ ପ୍ରେରଣାରେ କେତେକ ପାହାଡ଼ିଆ ଉପଜାତିର ଲୋକ ଜାମ୍ମୁ ଓ କାଶ୍ମୀର ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ଆକ୍ରମଣକାରୀମାନେ କ୍ରମଶଃ ଅଗ୍ରସର ହୋଇ ଶ୍ରୀନଗର ନିକଟବର୍ତ୍ତୀ ହେଲେ । କାଶ୍ମୀର ରାଜ୍ୟର ମହାରାଜା ଅକ୍ଟୋବର ୨୬ ତାରିଖରେ ଭାରତ ସହିତ କାଶ୍ମୀରର ମିଳନ ପାଇଁ ଇଚ୍ଛା ପ୍ରକାଶ କରି ଭାରତ ସରକାରଙ୍କୁ ଲେଖିଲେ ।

ପରେ ଜାମ୍ମୁ ଓ କାଶ୍ମୀରର ଜାତୀୟ ସମ୍ମିଳନୀ ଶେଖ୍ ମହମ୍ମଦ ଅବଦୁଲ୍ଲାଙ୍କ ନେତୃତ୍ୱରେ ଏହି ମିଳନକୁ ସମର୍ଥନ କଲା । ୧୯୪୭

ମସିହା ଅକ୍ଟୋବର ୨୭ ତାରିଖରେ ଭାରତ ଆକାଶପଥରେ କାଶ୍ମୀରକୁ ସୈନ୍ୟ ପ୍ରେରଣ ଆରମ୍ଭ କଲା ।

ଭାରତୀୟ ସୈନ୍ୟମାନେ ସଫଳତାର ସହିତ ଆକ୍ରମଣର ପ୍ରତିରୋଧ କରି ସେମାନଙ୍କୁ କାଶ୍ମୀର ଉପତ୍ୟକାରୁ ତଡ଼ିଦେଲେ । ତଥାପି କାଶ୍ମୀରର ଏକ ବୃହତ୍ ଅଂଶ ଆଜି ପର୍ଯ୍ୟନ୍ତ ଆକ୍ରମଣକାରୀ ମାନଙ୍କ ଅଧିକାରଭୁକ୍ତ ହୋଇ ରହିଅଛି । ସେଠାରେ ଆଜାଦ୍ କାଶ୍ମୀର ସରକାର ନାମକ ଏକ ସରକାର ପାକିସ୍ଥାନର ଇଙ୍ଗିତରେ ପରିଚାଳିତ ହେଉଅଛି ।

୧୯୪୭ ଖ୍ରୀଷ୍ଟାବ୍ଦର ଡିସେମ୍ବର ମାସ ୩୧ ତାରିଖରେ ଭାରତ ସରକାର କାଶ୍ମୀର ସମସ୍ୟା ନେଇ ପାକିସ୍ଥାନ ବିରୁଦ୍ଧରେ ମିଳିତ ଜାତିସଂଘର ନିରାପତ୍ତା କାଉନସିଲରେ ଯେଉଁ ଅଭିଯୋଗ ଉପସ୍ଥାପିତ କରିଥିଲେ, ଅଦ୍ୟାବଧି ଉକ୍ତ ନିରାପତ୍ତା ପରିଷଦରେ ସେହି ଅଭିଯୋଗ ବିଚାରାଧୀନ ରହିଛି । ଆଜାଦ୍ କାଶ୍ମୀର ସରକାରର ଅଧିକୃତ ଅଞ୍ଚଳ ବ୍ୟତୀତ ଜାମ୍ମୁ ଓ କାଶ୍ମୀର ରାଜ୍ୟ ବର୍ତ୍ତମାନ ଭାରତୀୟ ଯୁକ୍ତରାଷ୍ଟ୍ରର ଅନ୍ତର୍ଭୁକ୍ତ ।

## ଅନୁଶୀଳନୀ

୧ । ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟ କିପରି ପ୍ରତିଷ୍ଠିତ ହେଲା, ତାହା ବର୍ଣ୍ଣନା କର ।

୨ । ମୋଗଲ ସାମ୍ରାଜ୍ୟର ପତନ ପରେ ମରହଟ୍ଟାମାନେ କାହିଁକି ସାମ୍ରାଜ୍ୟ ପ୍ରତିଷ୍ଠା କରିବାକୁ ଅସମର୍ଥ ହେଲେ ?

୩ । ବ୍ରିଟିଶ୍ ଭାବଧାରା ଭାରତୀୟ ସମାଜ ଓ ଧର୍ମଜୀବନ ଉପରେ କି ପ୍ରଭାବ ପକାଇଥିଲା ?

୪ । ଚିରସ୍ଥାୟୀ ବନ୍ଦୋବସ୍ତ କଣ ? ଭାରତରେ ତାହା ପ୍ରବର୍ତ୍ତନ କରିଥିଲେ କିଏ ? ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳନ କି ହେତୁ ପ୍ରୟୋଜନୀୟ ବୋଧ ହୋଇଥିଲା ?

୫ । ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳନ ଫଳରେ ଭାରତୀୟ ସମାଜରେ କି ପରିବର୍ତ୍ତନ ଘଟିଥିଲା ?

୬ । ଚିରସ୍ଥାୟୀ ବନ୍ଦୋବସ୍ତର ଦୋଷଗୁଣ ନିର୍ଣ୍ଣୟ କର ?

୭ । ବର୍ତ୍ତମାନ ଯୁଗରେ ଜମିଦାରୀପ୍ରଥା ଲୋପକରାଗଲା କାହିଁକି ?

୮ । ବ୍ରିଟିଶ ଶାସନରେ ଭାରତରେ ସାମାଜିକ ସଂସ୍କାର ଦିଗରେ କି କି ଚେଷ୍ଟା ହୋଇଥିଲା ?

୯ । ଆଧୁନିକ ଭାରତ ଲର୍ଡ଼ ଡେଲହାଉସୀଙ୍କ ନିକଟରେ କି କି ବିଷୟରେ ଋଣୀ ତାହା ବର୍ଣ୍ଣନା କର ।

୧୦ । ଆଧୁନିକ ଶିକ୍ଷାର ବିକାଶ ପାଇଁ ଲର୍ଡ଼ ଉଇଲିୟମ ବେଣ୍ଟିଙ୍କ୍ ଓ ଲର୍ଡ଼ ଡେଲହାଉସୀ କଣ କରିଯାଇଛନ୍ତି ?

୧୧ । ଇଂରେଜ ଇଷ୍ଟଇଣ୍ଡିଆ କମ୍ପାନୀର ଶାସନକାଳରେ ଭାରତର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥା ବର୍ଣ୍ଣନା କର ।

୧୨ । ଭାରତରେ ଇଂରେଜ ଆଧିପତ୍ୟ ପୂର୍ଣ୍ଣପ୍ରତିଷ୍ଠା କରିବାକୁ ଗୌରବ ଡେଲହାଉସୀଙ୍କର ପ୍ରାପ୍ୟ,—ଏ ଉକ୍ତିର ଯଥାର୍ଥତା ବୁଝାଇ ଦିଅ ।

୧୩ । ଭାରତରେ ଜାତୀୟତା (Nationalism) ର ଉଦ୍ରେକ ଓ ବିକାଶ ଘଟିଥିଲା କିପରି ?

୧୪ । ୧୮୫୭ ଖ୍ରୀଷ୍ଟାବ୍ଦରେ ଭାରତରେ କି ଆନ୍ଦୋଳନ ଘଟିଥିଲା ? ତାହାର ସାମାଜିକ କାରଣମାନ ନିର୍ଣ୍ଣୟ କର ।

୧୫ । ସିପାହୀ ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ବୋଲି କାହିଁକି କୁହାଯାଏ ? ତାହାର ସାମାଜିକ ପରିଣାମ କଣ ହୋଇଥିଲା ?

୧୬ । ବନ୍ଧନୀ ଭିତରୁ ଉପଯୁକ୍ତ ଶବ୍ଦ ବାଛି ଶୂନ୍ୟସ୍ଥାନ ପୂରଣ କର—

(କ)— ୧୮୨୮ ଖ୍ରୀଷ୍ଟାବ୍ଦରୁ ୧୮୩୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଭାରତଶାସନ ଦାୟିତ୍ୱରେ ଥିଲେ । (କ୍ଳାଇବ, କର୍ଣ୍ଣୱାଲିସ, ବେଣ୍ଟିଙ୍କ, ଡେଲହାଉସୀ)

(ଖ)—ନାନା ଯୁକ୍ତି ଓ ଶାସ୍ତ୍ରୀୟ ପ୍ରମାଣ ଦେଖାଇ ବିଧବା-ବିବାହ ଶାସ୍ତ୍ରସମ୍ମତ ବୋଲି ପ୍ରମାଣ କରିଥିଲେ । (ରମେଶଚନ୍ଦ୍ର, ଶରତ୍‌ଚନ୍ଦ୍ର, ଈଶ୍ୱରଚନ୍ଦ୍ର)

(ଗ —ଝାନ୍‌ସୀର ରାଣୀ ଥିଲେ । (ଦୁର୍ଗାବାଈ, ରୁକ୍ମିଣୀବାଈ, ଲକ୍ଷ୍ମୀବାଈ, ରମାବାଈ)

(ଘ ଦ୍ୱିତୀୟ ବାଜୀରାଓଙ୍କ ପୋଷ୍ୟପୁତ୍ର — ଡେଲହାଉସୀଙ୍କ ଦ୍ୱାରା ପୈତୃକବୃତ୍ତି ଭୋଗରୁ ବଞ୍ଚିତ ହୋଇଥିଲେ । (ନାନାଫର୍ଣ୍ଣାବିସ, ନାନାସାହେବ, ରାଘୋବା)

୧୭ । ବ୍ରିଟିଶ ଶାସନ ପୂର୍ବରୁ ଭାରତୀୟ ଶିଳ୍ପର ଅବସ୍ଥା ବର୍ଣ୍ଣନା କର ଓ ବ୍ରିଟିଶ ଶାସନ ସମୟରେ ତାର ଅବସ୍ଥା କଣ ହୋଇଥିଲା ଲେଖ ।

୧୮ । "ଆଧୁନିକ ଭାରତୀୟ ସଭ୍ୟତା ଓ ରାଜା ରାମମୋହନ ରାୟ"—ଏହି ଶିରୋନାମା ଦେଇ ଗୋଟିଏ ପ୍ରବନ୍ଧ ଲେଖ ।

୧୯ । ନିମ୍ନଲିଖିତ ଖ୍ରୀଷ୍ଟାବ୍ଦଗୁଡ଼ିକର ଐତିହାସିକ ଗୁରୁତ୍ୱ ନିର୍ଣ୍ଣୟ କର:—୧୭୫୭, ୧୭୬୧, ୧୮୫୮, ୧୯୦୯, ୧୯୧୯, ୧୯୩୫, ୧୯୪୭ ।

୨୦ । ସୟଦ ଅହମଦ ଖାଁଙ୍କ ନିକଟରେ ଭାରତୀୟ ମୁସଲମାନ ସମାଜ କିପରି ଋଣୀ ତାହା ବର୍ଣ୍ଣନା କର ।

୨୧ । ନିମ୍ନଲିଖିତ ବ୍ୟକ୍ତିମାନଙ୍କର ସଂକ୍ଷିପ୍ତ ପରିଚୟ ଦିଅ:— ଆଲ୍ଲନ ଅକ୍‌ଟାଭିଆନ ହ୍ୟୁମ୍, ବାଳଗଙ୍ଗାଧର ତିଳକ, ଗୋପାଳକୃଷ୍ଣ ଗୋଖଲେ, ସୁରେନ୍ଦ୍ରନାଥ ବେନାର୍ଜି, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ।

୫ । ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳନ ଫଳରେ ଭାରତୀୟ ସମାଜରେ କି ପରିବର୍ତ୍ତନ ଘଟିଥିଲା ?

୬ । ଚିରସ୍ଥାୟୀ ବନ୍ଦୋବସ୍ତର ଦୋଷଗୁଣ ନିର୍ଣ୍ଣୟ କର ?

୭ । ବର୍ତ୍ତମାନ ଯୁଗରେ ଜମିଦାରୀପ୍ରଥା ଲୋପକରାଗଲା କାହିଁକି ?

୮ । ବ୍ରିଟିଶ ଶାସନରେ ଭାରତରେ ସାମାଜିକ ସଂସ୍କାର ଦିଗରେ କି କି ଚେଷ୍ଟା ହୋଇଥିଲା ?

୯ । ଆଧୁନିକ ଭାରତ ଲର୍ଡ଼ ଡେଲହାଉସୀଙ୍କ ନିକଟରେ କି କି ବିଷୟରେ ଋଣୀ ତାହା ବର୍ଣ୍ଣନା କର ।

୧୦ । ଆଧୁନିକ ଶିକ୍ଷାର ବିକାଶ ପାଇଁ ଲର୍ଡ଼ ଉଇଲିୟମ ବେଣ୍ଟିଙ୍କ୍ ଓ ଲର୍ଡ଼ ଡେଲହାଉସୀ କଣ କରିଯାଇଛନ୍ତି ?

୧୧ । ଇଂରେଜ ଇଷ୍ଟଇଣ୍ଡିଆ କମ୍ପାନୀର ଶାସନକାଳରେ ଭାରତର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥା ବର୍ଣ୍ଣନା କର ।

୧୨ । ଭାରତରେ ଇଂରେଜ ଆଧିପତ୍ୟ ପୂର୍ଣ୍ଣପ୍ରତିଷ୍ଠା କରିବାକୁ ଗୌରବ ଡେଲହାଉସୀଙ୍କର ପ୍ରାପ୍ୟ,—ଏ ଉକ୍ତିର ଯଥାର୍ଥତା ବୁଝାଇ ଦିଅ ।

୧୩ । ଭାରତରେ ଜାତୀୟତା (Nationalism) ର ଉଦ୍ରେକ ଓ ବିକାଶ ଘଟିଥିଲା କିପରି ?

୧୪ । ୧୮୫୭ ଖ୍ରୀଷ୍ଟାବ୍ଦରେ ଭାରତରେ କି ଆନ୍ଦୋଳନ ଘଟିଥିଲା ? ତାହାର ସାମାଜିକ କାରଣମାନ ନିର୍ଣ୍ଣୟ କର ।

୧୫ । ସିପାହୀ ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ବୋଲି କାହିଁକି କୁହାଯାଏ ? ତାହାର ସାମାଜିକ ପରିଣାମ କଣ ହୋଇଥିଲା ?

୧୬ । ବନ୍ଧନୀ ଭିତରୁ ଉପଯୁକ୍ତ ଶବ୍ଦ ବାଛି ଶୂନ୍ୟସ୍ଥାନ ପୂରଣ କର—

(କ)— ୧୮୨୮ ଖ୍ରୀଷ୍ଟାବ୍ଦରୁ ୧୮୩୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଭାରତଶାସନ ଦାୟିତ୍ୱରେ ଥିଲେ । (କ୍ଲାଇବ, କର୍ଣ୍ଣଓଆଲିସ, ବେଣ୍ଟିଙ୍କ, ଡେଲହାଉସୀ)

(ଖ)—ନାନା ଯୁକ୍ତି ଓ ଶାସ୍ତ୍ରୀୟ ପ୍ରମାଣ ଦେଖାଇ ବିଧବା-ବିବାହ ଶାସ୍ତ୍ରସମ୍ମତ ବୋଲି ପ୍ରମାଣ କରିଥିଲେ । (ରମେଶଚନ୍ଦ୍ର, ଶରତ୍‌ଚନ୍ଦ୍ର, ଈଶ୍ୱରଚନ୍ଦ୍ର)

(ଗ —ଝାନ୍‌ସୀର ରାଣୀ ଥିଲେ । (ଦୁର୍ଗାବାଈ, ରୁକ୍ମଣୀବାଈ, ଲକ୍ଷ୍ମୀବାଈ, ରମାବାଈ)

(ଘ ଦ୍ୱିତୀୟ ବାଜୀରାଓଙ୍କ ପୋଷ୍ୟପୁତ୍ର — ଡେଲହାଉସୀଙ୍କ ଦ୍ୱାରା ପୈତୃକବୃତ୍ତି ଭୋଗରୁ ବଞ୍ଚିତ ହୋଇଥିଲେ । (ନାନାଫର୍ଣ୍ଣାବିସ, ନାନାସାହେବ, ରାଘୋବା)

୧୭ । ବ୍ରିଟିଶ ଶାସନ ପୂର୍ବରୁ ଭାରତୀୟ ଶିଳ୍ପର ଅବସ୍ଥା ବର୍ଣ୍ଣନା କର ଓ ବ୍ରିଟିଶ ଶାସନ ସମୟରେ ତାର ଅବସ୍ଥା କଣ ହୋଇଥିଲା ଲେଖ ।

୧୮ । "ଆଧୁନିକ ଭାରତୀୟ ସଭ୍ୟତା ଓ ରାଜା ରାମମୋହନ ରାୟ"—ଏହି ଶିରୋନାମା ଦେଇ ଗୋଟିଏ ପ୍ରବନ୍ଧ ଲେଖ ।

୧୯ । ନିମ୍ନଲିଖିତ ଖ୍ରୀଷ୍ଟାବ୍ଦଗୁଡ଼ିକର ଐତିହାସିକ ଗୁରୁତ୍ୱ ନିର୍ଣ୍ଣୟ କର:—୧୭୫୭, ୧୭୬୧, ୧୮୫୮, ୧୯୦୯, ୧୯୧୯, ୧୯୩୫, ୧୯୪୭ ।

୨୦ । ସୟଦ ଅହମଦ ଖାଁଙ୍କ ନିକଟରେ ଭାରତୀୟ ମୁସଲମାନ ସମାଜ କପରି ଋଣୀ ତାହା ବର୍ଣ୍ଣନା କର ।

୨୧ । ନିମ୍ନଲିଖିତ ବ୍ୟକ୍ତିମାନଙ୍କର ସଂକ୍ଷିପ୍ତ ପରିଚୟ ଦିଅ:—ଆଲ୍ଲନ ଅକ୍‌ଟାଭିଆନ ହ୍ୟୁମ୍, ବାଳଗଙ୍ଗାଧର ତିଳକ, ଗୋପାଳକୃଷ୍ଣ ଗୋଖଲେ, ସୁରେନ୍ଦ୍ରନାଥ ବେନାର୍ଜି, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ।

୨୨ । ନିମ୍ନଲିଖିତ ବାକ୍ୟଗୁଡ଼ିକ ମଧ୍ୟରୁ ଭ୍ରମପୂର୍ଣ୍ଣ ବାକ୍ୟଗୁଡ଼ିକୁ × ଚିହ୍ନ ଦ୍ୱାରା ଓ ଭ୍ରମଶୂନ୍ୟ ବାକ୍ୟଗୁଡ଼ିକୁ ✓ଚିହ୍ନ ଦ୍ୱାରା ଚିହ୍ନିତ କର:—

(କ) ବମ୍ବେଠାରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ ରମେଶଚନ୍ଦ୍ର ବେନାର୍ଜି ନାମକ ଜଣେ ବ୍ୟକ୍ତିଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା ।

(ଖ) ୧୯୧୪ ଖ୍ରୀ:ରେ ପ୍ରଥମ ବିଶ୍ୱମହାସମର ଆରମ୍ଭ ହେଲା ।

(ଗ) ମୋହନଚାନ୍ଦ କରମଚାନ୍ଦ ଗାନ୍ଧି ଭାରତରେ ଅହିଂସ ଅସହଯୋଗ ଆନ୍ଦୋଳନର ପ୍ରବର୍ତ୍ତକ ।

(ଘ) ଇଂରେଜ ସେନାପତି ଡାୟାର ଜାଲିଆନାଓ୍ୱାଲାବାଗ୍ ନାମକ ସ୍ଥାନରେ ନିରସ୍ତ୍ର ଜନତା ଉପରେ ନିର୍ମମ ଗୁଳିଚାଳନା କରିଥିଲେ ।

(ଙ) ବଡ଼ଲାଟ ଲର୍ଡ଼ ଉଆଭେଲଙ୍କ ସମୟରେ ସାଇମନ କମିଶନ ଭାରତକୁ ଆସିଥିଲା ।

୨୩ । ଭାରତୀୟ ଜାତୀୟ ଆନ୍ଦୋଳନର ଏକ ସଂକ୍ଷିପ୍ତ ବିବରଣୀ ପ୍ରଦାନ କର ।

୨୪ । ନିମ୍ନୋକ୍ତ ବିଷୟଗୁଡ଼ିକ ଉପରେ ସଂକ୍ଷିପ୍ତ ଟିପ୍ପଣୀ ଲେଖ:—ଗୋଲଟେବୁଲ ବୈଠକ, ଭାରତଛାଡ଼ ଆନ୍ଦୋଳନ, ଆଇ. ଏନ୍. ଏ., ଲର୍ଡ଼ ରିପନ, ଲର୍ଡ଼ ମାଉଣ୍ଟବାଟେନ, ମହମ୍ମଦ ଅଲି ଜିନ୍ନା ।

୨୫ । ସ୍ୱାଧୀନ ଭାରତ ସହିତ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ କିପରି ଘଟିଲା ତାହା ବର୍ଣ୍ଣନା କର । କାଶ୍ମୀର ବିବାଦର ସଂକ୍ଷିପ୍ତ ସୂଚନା ଦିଅ ।

---

ମୁଦ୍ରାକର—ଶ୍ରୀ ବିଶ୍ୱଜୀବନ ମିଶ୍ର, ସଂସାର ପ୍ରେସ, କଟକ-୧

